# କହିବାକୁ ଲାଜ

ଡଃ ବୈଷ୍ଣବ ଚରଣ ସାମଲ



# କହିବାକୁ ଲାଜ

ଡଃ ବୈଷ୍ଣବ ଚରଣ ସାମଲ

ପ୍ରକାଶକ :

ବୁକ୍ସ ଏଣ୍ଡ ବୁକ୍ସ

ବିନୋଦବିହାରୀ, କଟକ-୭୫୩୦୦୨

## ମୋର ପଦେ :

'କହିବାକୁ ନାଇଁ' ମୋର ଚତୁର୍ଥ ରମ୍ୟରଚନା ଓ ପ୍ରବନ୍ଧ ସଙ୍କଳନ । ଏହାପୂର୍ବରୁ ମୋର 'ଆଜ ଦେଖିଲିରେ', 'ନାଗର ମୁହଁ', 'ଇନ୍ଦ୍ରଜିତ ଦାସ୍ତିକେ' ରମ୍ୟରଚନା ସଂକଳନ ପ୍ରକାଶ ପାଇ ସୁଧୀପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ମୋର ଏହି ଚତୁର୍ଥ ସଂକଳନ ଅନୁରୂପ ଭାବରେ ପାଠକମାନଙ୍କୁ କିଛିଟା ନୂତନ ପ୍ରେରଣା ଦେବ ବୋଲି ଆଶା ।

ଏହି ସଂକଳନରେ ସଂଯୋଜିତ 'ଗାନ୍ଧିଜୀଙ୍କ ଶିକ୍ଷା ନୀତି ଓ ଆଧୁନିକ ବେକାର ସମସ୍ୟା', 'ଯୁବସମସ୍ୟା', 'ଯୁବ ସମାଜ ଓ ସାମାଜିକ ପରିବର୍ତ୍ତନ', 'ଆଜିର ବିଭ୍ରାନ୍ତି', 'ଗାନ୍ଧିଜୀ କେଉଁଠି' ପ୍ରବନ୍ଧଗୁଡ଼ିକ ୧୯୭୯/୭୦ ମସିହାରେ ପତ୍ରିକା-ମାନଙ୍କରେ ପ୍ରକାଶ ପାଇଥିଲା । ଏଗୁଡ଼ିକୁ ମୁଁ ଉକ୍ତ ସଂକଳନରେ ସଂଯୋଗ କରି ଦେଇଛି । ଅନ୍ୟାନ୍ୟ ସମସ୍ତ ରମ୍ୟରଚନା ବିଭିନ୍ନ ସମୟରେ ପତ୍ରପତ୍ରିକାମାନଙ୍କରେ ପ୍ରକାଶିତ ।

ରମ୍ୟରଚନା ମୋର ଚିନ୍ତା ଓ ଚେତନାର ପରିପ୍ରକାଶ । ସାମ୍ପ୍ରତିକ ରାଜନୀତି, ଶିକ୍ଷା, ସଂସ୍କୃତି, ପ୍ରଶାସନ ଓ ସମାଜ ସମ୍ପର୍କିତ ଯେଉଁସବୁ ପ୍ରତିକ୍ରିୟା ମୋ ଭିତରେ ସୃଷ୍ଟି ହୋଇଛି ସେସବୁକୁ ମୁଁ ବିଭିନ୍ନ ରମ୍ୟରଚନାରେ ପ୍ରକାଶ କରିଅଛି ।

ରମ୍ୟରଚନା ଏକ ସ୍ୱତନ୍ତ୍ର କଳା । ରମ୍ୟତା କେବଳ ଏହାର ଐଶ୍ୱର୍ଯ୍ୟ ନୁହେଁ; ଭାବ ଏହାର ପ୍ରାଣାଧାର ମଧ୍ୟ । ଅନେକ ଭାବ ହୁଏତ ଆସିଯାଇପାରେ ମାତ୍ର ସବୁ ଭାବ ଏକ କେନ୍ଦ୍ର ଭାବକୁ ନେଇ ଗତିକରେ । ଏକ ବିଶେଷ ଦୁର୍ବଳ ସତ୍ତାକୁ ଏହା ଆଘାତ ଦିଏ । ଶାଣିତ ଦୃଷ୍ଟି ଏଥିରେ ପ୍ରକାଶ ପାଏ । ସମାଜ, ସଂସ୍କୃତି, ଧର୍ମ, ରାଜନୀତି, ପ୍ରଶାସନ, କ୍ଷମତାଲୁବ୍ଧ ମଣିଷ ଇତ୍ୟାଦି ସବୁ ଦିଗକୁ ଏହା ଛୁଇଁଯାଏ । ଯେଉଁଠି ଥାଏ ଦୁର୍ବଳତା ସେଇଠି ଏହା ଆଘାତ ଦେଇ ସତ୍ୟକୁ ଆବିଷ୍କାର କରେ । ସତ୍ୟକୁ ଖୋଲାଖୋଲି କହେ ନାହିଁ; ଅଥଚ ସତ୍ୟ ଫୁଟି ଉଠେ । ତେଣୁ ରମ୍ୟରଚନା ଦାୟିତ୍ୱହୀନ ପ୍ରଳାପ ନୁହେଁ; ଅଙ୍ଗୀକାରବଦ୍ଧ ଦାୟିତ୍ୱପୂର୍ଣ୍ଣ କଳାତ୍ମକ ଭାଷ୍ୟ ।

ରମ୍ୟରଚନା ଗୁରୁଗମ୍ଭୀର ଭାଷାର ଅଭିବ୍ୟକ୍ତି ନୁହେଁ; କାନ୍ତି କୋମଳ ସାଧାରଣ ଭାଷାର ରସ-ରୂପାୟନ । ଏଥିରେ ହାସ୍ୟ ଓ ବ୍ୟଙ୍ଗର ଥାଏ ଏକ ମଧୁର କୋଳାକୋଳି ଭାବ । ବେଳେ ବେଳେ ଏସବୁ ନଥାଇ ମଧ୍ୟ ରମ୍ୟରଚନା ହୋଇଯାଏ । ବ୍ୟକ୍ତି-ବୃତ୍ତିରୁ ଭାବଟିଏ ସୃଷ୍ଟି ହୋଇ ତାହା ରମ୍ୟରଚନାର ରୂପ ନିଏ । ତେଣୁ ଏହା ମଧ୍ୟ ହୋଇଯାଏ ବ୍ୟକ୍ତିନିଷ୍ଠ ଶୈଳୀର ମନ୍ମୟ ପରିପ୍ରକାଶ ।

କବିବର ରାଧାନାଥ ରାୟ, ବ୍ୟାସକବି ଫକୀରମୋହନ ସେନାପତି, ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଠାରୁ ଆରମ୍ଭ କରି କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର, ଗୋବିନ୍ଦ ତ୍ରିପାଠୀ, ନିତ୍ୟାନନ୍ଦ ମହାପାତ୍ର, କୃଷ୍ଣପ୍ରସାଦ ବସୁ, ହରେକୃଷ୍ଣ ମହତାବ, ଚିତ୍ତରଞ୍ଜନ ଦାସ, ଚନ୍ଦ୍ରଶେଖର ରଥ, ମହାପାତ୍ର ନୀଳମଣି ସାହୁ, ଚୌଧୁରୀ ହେମକାନ୍ତ ମିଶ୍ର, କୃଷ୍ଣଚରଣ ବେହେରା, ସୁଶୀଲ ମିଶ୍ର, କୁଳମଣି ମହାପାତ୍ର, ବିପିନ ବିହାରୀ ମିଶ୍ର, ଅନାଦି ସାହୁ ପ୍ରମୁଖ ବହୁ କୃତବିଦ୍ୟ ଲେଖକ ରମ୍ୟରଚନା ଲେଖି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଅଛନ୍ତି । ସଂପ୍ରତି ଓଡ଼ିଆ ସାହିତ୍ୟରେ ରମ୍ୟ-ରଚନା ହୋଇଯାଇଛି ଏକ ବଳିଷ୍ଠ ବିଭାଗ । ସେହି ବିଭାଗରେ ମୋର ରମ୍ୟରଚନା ଗୁଡ଼ିକ କେତେଦୂର ସଫଳ ତାହା ପାଠକମାନଙ୍କର ବିଚାର୍ଯ୍ୟ । ତେବେ ମୁଁ ଏକାନ୍ତ ଭାବରେ ତୃପ୍ତ ଯେ ସମକାଳୀନ ନାନାବିଧ ପ୍ରତିକୂଳସ୍ଥିତି ପ୍ରକାଶ କରିବା ପାଇଁ ମୋର ରମ୍ୟରଚନାଗୁଡ଼ିକ ମୋତେ ବହୁ ଭାବରେ ଅନୁପ୍ରେରିତ କରିଅଛି ।

ପ୍ରକାଶକ ବନ୍ଧୁ ବୁକସ ଏଣ୍ଡ ବୁକସର ସତ୍ତ୍ୱାଧିକାରୀ ଶ୍ରୀ କୃଷ୍ଣଚନ୍ଦ୍ର ବେହେରା ଏହି ପୁସ୍ତକକୁ ପ୍ରକାଶ କରିଥିବାରୁ ମୁଁ ତାଙ୍କୁ ଗଭୀର ଶ୍ରଦ୍ଧା ନିବେଦନ କରୁଅଛି ।

ଏହି ପୁସ୍ତକ ସୁଧୀ ପାଠକମାନଙ୍କର ଦୃଷ୍ଟିଆକର୍ଷଣ କରିପାରିଲେ ମୋର ଶ୍ରମ ସାର୍ଥକ ହେବ ।

—ଲେଖକ



# ସୂଚିପତ୍ର

# ଏଥର ଟିକେ ଅନାନ୍ତୁ

ଥରକୁ ଥର ଯେଉଁ ନର୍ବାଚନ-ବୈତରଣୀ ବହିଯାଉଛି, ତାକୁ ଦେଖି ଜଣେ ଜଣେ ଆଗଚଲା ଆଗତକୁହା ମଣିଷ କହିଦେଉଛି ଆମ ଦେଶଟିର ଗଣତନ୍ତ୍ର ପାତାଳଫୁଟା ମହାଦେବ ପରି ହୋଇଗଲା । ବଡ଼ବଡ଼ିଆଏ କହିବାକୁ ଆରମ୍ଭ କଲେଣି ଯେ ଏଇ ଚେରକୁ ଉପାଡ଼ିବା ଆଉ ସହଜ ନୁହେଁ । କିଛିବର୍ଷ ତଳେ ଯେଉଁଟା ଗୋଟାଏ ଗ୍ରେଟିଆ ଗଛ ହୋଇଥିଲା ଏବେ ତାହା ବଢ଼ି ବଢ଼ି କଳ୍ପବଟରେ ପରିଣତ ହୋଇଗଲାଣି । ଆରେ ବାଃ ! ବଢ଼ିଆ କଥା । ଆମର ଆଉ ଭୟ କଣ ? ପ୍ରଳୟ ଯଦି ହୋଇଯାଏ ନା, ଆମେ ସବୁ ଏଇ କଳ୍ପବଟର ଡାଳ ପତ୍ରକୁ ଧରି ଲଟକି ରହିଯିବା । ଆମେ ଆଉ କୁଆଡ଼କୁ ଭାସିଯିବା ନାଇଁ କି ପ୍ରଳୟ ଜଳରେ ଶିଙ୍ଗିବୁଡ଼ା ଦେବାନାଇ । ଆଉ କେହି କେହି କହୁଛନ୍ତି ଯେ ସେମାନେ ଯେତେ ହଜରଖେଇ ଚାହିଁଲେ ମଧ୍ୟ କଳ୍ପବଟକୁ ଦେଖି ପାରୁ ନାହାନ୍ତି । ଅଥଚ ସେମାନେ କିଛି କହିପାରୁ ନାହାନ୍ତି । ଭୟରେ ହେଉ କି ଅଜ୍ଞତାରେ ହେଉ ସଭିଏଁ କହୁଛନ୍ତି ବଢ଼ିଆ·· ବଢ଼ିଆ । ରଜାଙ୍କ ନୂତନ ପୋଷାକ ପରି କଥାଟା ହୋଇ-ଯାଉଛି । ଆହୁରି କେତେକ ଅଛନ୍ତି ଅନ୍ଧମାନଙ୍କ ହାତୀ ଦେଖିବା ପରି କହିଯାଉଛନ୍ତି —ଅଥଚ ସେଇଟା ହାତୀ ନୁହେଁ କି କୁଲା ନୁହେଁ—କଣ କିଛି କହୁଛନ୍ତି ଓ ସେଇ କହିବା ହେତୁ ଗୋଟାଏ ଆତ୍ମପ୍ରଶାନ୍ତି ଲାଭ କରୁଛନ୍ତି । ଏମିତି କଥା ଚାଲିଛି । ଦେଶର ଏ ମୁଣ୍ଡରୁ ସେମୁଣ୍ଡ ପର୍ଯ୍ୟନ୍ତ କଥା ଲମ୍ବି ଲମ୍ବି ଚାଲିଛି । ଇଏ କହୁଛି ତାକୁ । ସିଏ କହୁଛି ଯାକୁ । କେହି କିଛି ହେଜୁ ନାହାନ୍ତି । ଖାଲି ନାଗରା ବାଜୁଛି । କାନ ତାବଦା ହୋଇଯାଉଛି ।

ଆରେ ବାବା ! ତମେ କହୁଚ ଗଣତନ୍ତ୍ର ଟାଣ ହୋଇଗଲା । କେତେ ଟାଣ ହୋଇଗଲା ? ପୂରା ଟାଣ ହୋଇଗଲାଣି ନା ନାହିଁ ? ଆଉ କେତେ ବର୍ଷ ଲାଗିବ ଟାଣ ହେବାକୁ ? କାହିଁକି ଟାଣ ହେଉ ନାହିଁ ? ଏଇସବୁ ପ୍ରଶ୍ନଗୁଡ଼ାକ ଛଟପଟ କରି ଦେଉଚି ମଣିଷକୁ ! ଓଃ ମଣିଷ ! ଏଇ ଶବ୍ଦଟା ଭିତରେ କଣ କମିଆ ଅଛି କେଜାଣି ! ଛୁଇଁ ଛୁଇଁ ଚାଲିଯାଉଛି ସାରା ପୃଥିବୀର ଏମୁଣ୍ଡରୁ ସେମୁଣ୍ଡଯାଏ ସବୁ ମଣିଷର ଚିତ୍ତକୁ । ମଣିଷ କହିଲେ ତ ସିଏ କୁ ଜାତିର ନୁହଁ କି ଧର୍ମର ନୁହଁ କି ଭାଷାର ନୁହଁ କି ଦେଶର ନୁହଁ । ସିଏ ସମଗ୍ର ବିଶ୍ୱର । ସବୁ ସୀମା ସରହଦ ଡେଇଁ ସିଏ କେବଳ ଭ ମଣିଷ । ଏଇ ମଣିଷକୁ କଣ ଆମେ ଖୋଜିଲୁଣି କି ? ଏଇ ମଣିଷକୁ ପାଇଲେ ତ କଥା ସରିଲା । ସବୁ ଦ୍ୱନ୍ଦ୍ୱ, ସବୁ ସଂଘର୍ଷ, ସବୁ ରକ୍ତପାତ ଲୋପ ପାଇଯାଆନ୍ତା ।

ଅଥଚ ଆମେ ଏଇ ମଣିଷକୁ ଗୁଡ଼ି ଜାତିକୁ ଧରୁଛୁ, ଭାଷାକୁ ଧରୁଛୁ, ଧର୍ମକୁ ଧରୁଛୁ । କେଉଁ ଅନ୍ଧାରୁଆ ଗାତ ଭିତରେ ସିଏ ସାପ ପରି ମୋଡ଼ି ମାଡ଼ି ହୋଇ ଶୋଇଛି । ତା' ଲାଙ୍ଗୁଡ଼ ଧରି ତାକୁ ଟାଣି ବାହାର କରୁଛୁ । ସିଏ ବାହାରକୁ ବାହାରି ଫଁ ଫଁ ହେବ ନାଇ ତ ଆଉ କଣ ଚୁମ୍ବନ ଦେବ ? ଆଲିଙ୍ଗନ କରିବ ପ୍ରେମରେ ? ସିଏ ଦଂଶନ କରିବ ହିଁ କରିବ । ତମେ ତା ବିଷ ଜ୍ୱାଳାରେ ନୀଳ ପାଲଟି ଯିବ । ତମ ଦେହରୁ ଜୀବନ ଗୁଡ଼ି ଗୁଡ଼ି ଯିବ । ତମେ ଚାରମୁଗୁର ଲଟେଇ ଜାଣନା କି ଧାଉଁଛ ଯାଉଛ ଜାଣେନା । ତମେ ତ ଭଲକରି ଜାଣ ଯେ କାଳନ୍ଦୀ ହ୍ରଦ ଭିତରେ ପଶିବା ସହଜ ନୁହେଁ । ସିଏ ନାଗ ସିଏ ପଶିଲେ ମରିବ । ଯିଏ କାଳୀୟକୁ ଆୟତ୍ତ କରି ଜାଣିଛି ସେଇ କେବଳ ପଶି ପାରିବ । କୃଷ୍ଣ ପଶିଲେ । କାଳୀୟ ମଥା ଉପରେ ନାଚିଲେ । ତାକୁ ନାକେଦମ୍ କଲେ, ରକ୍ତବାନ୍ତି କରେଇଲେ । ଶେଷକୁ କାଳୀୟ ଶରଣ ପଶିଲା । ତା' ଅହଂକାରକୁ ଗୁଡ଼ିଲେ । ସୁନାପୁଅ ହୋଇଗଲା ସେ ହ୍ରଦ ଉପରୁ ତାର ଏକଚ୍ଛଟିଆ ଅଧିକାର ଗୁଡ଼ିଦେଲା । ବିଷମୁକ୍ତ ହୋଇଗଲା ହ୍ରଦ । ସଭିଏଁ ଗାଧୋଇଲେ, ଫୁଲ ତୋଳିଲେ, ପାଣି ପିଇଲେ । ଅଥଚ ଆମେ ଜାତି, ଧର୍ମ ଓ ଭାଷାରୂପୀ କାଳୀୟକୁ ଟାଣିଆଣିଚୁ କେଉଁ ଅନ୍ଧାରୀ ଇଲାକାରୁ । ସେଇଟା ଆମକୁ ଗୋଡ଼ାଉଛି । ଆମେ ଉଦ୍ଭ୍ରାନ୍ତ ବିକଳ ହୋଇ ଧାଉଁଚୁ । ରକ୍ଷା କରିବାକୁ କେହି ନାହିଁ । ବିଷମନ୍ତ୍ର ନ ଜାଣି ସାପ ଲାଙ୍ଗୁଡ଼ରେ ହାତ ମାରୁଛୁ । ଅଥଚ ଆମେ କହୁଛୁ ଯେ ଆମେ ସବୁ ଜାଣିଛୁ । ଆମକୁ ଯୁଉଠି ଛୁଡ଼ା କରିଦେବ ସେଠି ଆମେ ଅନର୍ଗଳ କହିଯିବୁ—କମା, ପୂର୍ଣ୍ଣଚ୍ଛେଦ ରହିବ ନାଇ । ଗଣତନ୍ତ୍ର କୁହ, ପ୍ରଜା ଶାସନ କୁହ, ବିଶ୍ୱଶାନ୍ତି କଥା କୁହ, ଧର୍ମନିରପେକ୍ଷତା କୁହ; ନ ହେଲେ ଅବା ସବୁଜ ବିପ୍ଳବ, କୃଷି ବିପ୍ଳବ, ମହିଳା ବିପ୍ଳବ କଥାକୁହ କି ହିନ୍ଦୁଧର୍ମ ବା ମୁସଲମାନ ଧର୍ମ କଥା କୁହ ଯାହା କୁହ; ତତ୍‌କ୍ଷଣାତ୍ ଆମେ କହିଚାଲିବୁ···ପାଟିରେ ବାଟ୍‌ଲ ବାଜିବ ନାହିଁ । ଓଃ ତମେ କହୁଛ, ଆମେ ସାହିତ୍ୟ ଜାଣିନୁ···ମିଛ···ତାହା ମିଛ କଥା; ଆମେ ବି ସାହିତ୍ୟ ଜାଣୁ, କଲାକଥା ମଧ୍ୟ ଜାଣୁ । ବିଜ୍ଞାନ, ଧେତ୍ ସେଇଟା ଆମ ବାଁ ହାତର ଖେଳ । ଆସନ୍ତୁ ତ, କିଏ କହିବ ଆମେ ଜାଣିନାହୁଁ ବୋଲି ? ଆମେ ଠିକ୍ ଜାଣିଚୁ, କେହି ଆସିବେ ନାଇଁ·· କାହାରି ଜିଭରେ ହାଡ଼ ନାଇ··· ଆମେ ଯାହା କହୁଚୁ, ସେଇଟା ଠିକ୍ । ଆଉ ସବୁ ଭୁଲ୍···କାପୁରୁଷ । ଆମେ ବି କହୁଚୁ···ଇଏ ସାହିତ୍ୟ ଫାଇତ···କଲାଫଲା···ଏସବୁର ମାନେ କିଛି ନାଇ··· ଅଲ୍ ରବିସ୍···ଇଏ ଆମକୁ ଖାଇବାକୁ ଦେଇ ପାରିବ ନାଇ···ଆମକୁ ଉଠେଇ ପାରିବ ନାଇ । ଆମର ଲୋଡ଼ା ଅର୍ଥ···ପ୍ରଚୁର ଅର୍ଥ । ଏଇ ଅର୍ଥ ହିଁ ଆମର ସବୁ କିଛି । ଅର୍ଥ ହେଲେ ଆମେ କଲକାରଖାନା କରିପାରିବା । ଗରିବୀ ହଟେଇ ପାରିବା । ବେକାରୀ ସମସ୍ୟାର ତଣ୍ଟି ଚପି ଦେଇ ପାରିବା । ଜାତିଆଣ କଥାକୁ ଲେପିଁ

କରିଦେଇପାରିବ । ଆମେ କହୁଚୁ ଧନୀର ଜାତି ନାଇ, ଧର୍ମ ନାଇ…କ୍ଷମତା-ଶାଳୀର ଜାତି ନାଇ, ଧର୍ମ ନାଇ । ସେମାନଙ୍କର ଗୋଟାଏ ଜାତି, ଗୋଟାଏ ଧର୍ମ । ଅର୍ଥ ହିଁ ସେମାନଙ୍କୁ ଏକ କରିଦିଏ । ତେଣୁ ତ ଆମେ କହୁଛୁ, ସମସ୍ତେ ଧନୀ ହୋଇଯାଅ…ଯେମିତି ପାରୁଛ ସେମିତି ଧନୀ ହୋଇଯାଅ । ଥରେ ଧନୀ ହୋଇଗଲେ ଆଉ କେହି ତମର ଅତୀତ ଖୋଜିବେ ନାଇ । ସମସ୍ତେ ତମର ବାହାବା କରିବେ । ତମକୁ ଘେରି ରହିବେ ଦଲେ ସ୍ତୁତିକାର । ତମର ନାନ୍ଦିମୁଖ ଲେଖିବା ପାଇଁ ବାହାରି ଆସିବେ କେତେ ସାହିତ୍ୟିକ, କେତେ କଳାକାର ।

ଏଇ ଅର୍ଥବାଦଟା ଆମକୁ ବାଧ୍ୟ କରିଦେଇଚି । ଆମେ ଧାଉଁଛୁ ତାରି ପଛରେ । ଯିଏ ଅର୍ଥକୁ ଧରିପାରୁଛି, ଉପାୟଟା ଭଲ ହେଉ କି ମନ୍ଦ ହେଉ… ସୁନ୍ଦର ହେଉ କି କୁତ୍ସିତ ହେଉ, ସିଏ ବଡ଼ ହୋଇଯାଉଛି…ସ୍ୱାଭାବିକ ତାର ସମ୍ମାନ ବଢ଼ିଯାଉଛି । ସିଏ ପାଁଚଜଣଙ୍କ ଭିତରେ ଜଣେ ହୋଇଯାଉଛି । ସିଏ ଆଉ କାହାକୁ ବଡ଼ ହେବାକୁ ଦିଏନାହିଁ । ଆଉଜଣେ ବଡ଼ ହେଲେ ହୁଏତ ତାର ସ୍ଥାନ କମି ଯାଇପାରେ । ଗୋଟାଏ ଈର୍ଷା ଆଉ ଅସୂୟା ତାକୁ ଗ୍ରାସ କରିଦେଉଛି । ସେ ହିଂସ୍ର ହୋଇ ଉଠୁଛି । ପ୍ରତିଯୋଗୀକୁ ହତ୍ୟା କରିଦେଉଛି । ଏଇ ହେଉଛି ନୂଆ ବଣିଆ ସଂସ୍କୃତିର କଥା । ଏଥିରେ ମୂଲ୍ୟ ବଡ଼କଥା; ମୂଲ୍ୟବୋଧ ତୁଚ୍ଛ । ମୂଲ୍ୟବୋଧ ଆତ୍ମାର ବାଣୀ, ହୃଦୟର ଆହ୍ୱାନ । ମୂଲ୍ୟ ବୁଦ୍ଧିର କାରସାଦ, ମନର ଚଟକ ସମ୍ଭାର । ମୂଲ୍ୟବୋଧ ନ ଥିବାରୁ ଗୋଟାଏ ଭ୍ରାନ୍ତ 'ମୁଁ' ପଣିଆ ହେଣ୍ଟାଳ ଉଠୁଛି । ସେଇ 'ମୁଁ'ଟି ଚିର ଅତୃପ୍ତ । ସାତ ସମୁଦ୍ର ପାଣି ପିଇଲେ ମଧ୍ୟ ତାର ତୃଷା ମେଣ୍ଟେ ନାଇ । ଏଇ 'ମୁଁ' ଯେତେବେଳେ ଏକୁଟିଆ ସେତେବେଳେ ସଂଘର୍ଷ ନଥାଏ । ଯେତେବେଳେ ଏଇ 'ମୁଁ'ମାନଙ୍କର ଶୋଭାଯାତ୍ରା ଚାଲେ ସେତେବେଳେ ସଂଘର୍ଷ ଦେଖାଦିଏ । ଗଣତନ୍ତ୍ର ଭିତରେ ଏଇ ମୁତ୍‌ଫରକା 'ମୁଁ'ମାନଙ୍କର ସଂଖ୍ୟା ବଢ଼ୁଛନ୍ତି । ଉଗ୍ରସ୍ୱାର୍ଥପର ଏମାନେ ଅସଂଖ୍ୟ…ମରନ୍ତି ପୁଣି ଜନ୍ମନ୍ତି । ଅର୍ଥବାଦକୁ ନେଇ ଏଇ 'ମୁଁ'ମାନଙ୍କର ଉନ୍ମେଷ ଘଟେ । ରାଜନୈତିକ ଦଳ ଭିତରେ ସେମାନଙ୍କର ବିସ୍ତାର ହୁଏ । ବର୍ଷା ଦିନିଆ ଛତୁପରି ରାଜନୈତିକ ଦଳ ବଢ଼ି ଉଠନ୍ତି । ଦଳ ସହିତ ଦଳର ହୁଏ ସଂଘର୍ଷ । ସବୁବେଳେ ଡାକମାରେ କ୍ଷମତାଶୀଳ ଦଳ । ହିଂସାକାଣ୍ଡ ବଢ଼େ । ପ୍ରଶାସନ ହୋଇଯାଏ କ୍ଷମତାଶୀଳ ଦଳର ସଖୀକଣ୍ଢେଇ । ନିଜସ୍ୱ ବିଚାରଧାରା ରହେନାଇ । ସେମାନଙ୍କ ଭିତରେ ମଧ୍ୟ ପ୍ରକାଶ ପାଏ ଗୋଟାଏ 'ମୁଁ' । ସେଇଟା ଭିତରେ ଭିତରେ ଚେର କାଟେ । ତେଣୁ ଏଇ 'ମୁଁ'ଟା ଭାରି ମାରାତ୍ମକ । ସୁଖଭୋଗ ଏହାର ଲକ୍ଷ୍ୟ । ଅର୍ଥବାଦକୁ ସିଏ ବି ଜାବୁଡ଼ି ଧରେ । ଗଣକୁ ଦେଖିଲେ ଦୂର୍ ଦୂର୍ ମାର୍ ମାର୍ କରେ । ଗଣର ଗନ୍ଧ ତା' ନାକ ଭିତରକୁ କାଳେ ପଶିଯିବ ବୋଲି ନାକରେ ଅତରଲଗା ରୁମାଲ୍ ଦିଏ ।

ଏଇ 'ମୁଁ' ଯୋଗୁ ଘରେ ବାହାରେ ହିଂସାର ତାଣ୍ଡବ…ହିଂସାର ଅଖଡ଼ା । ଜାତିଆଣକୁ ନେଇ ହିଂସା ଓ ସଂଘର୍ଷ । ଧର୍ମକୁ ନେଇ ହିଂସା ଓ ରକ୍ତପାତ । ଆଉ କେଉଁଠି ଧର୍ମ ନାଇଁ କି ଜାତି ନାଇ ଅଛି ଗୋଟାଏ ପ୍ରମତ୍ତତା …ଅନ୍ୟକୁ ହତ୍ୟାକରି ଅର୍ଥ ରୋଜଗାର କରିବାର ସହଜ ପନ୍ଥା । ଜାତିକୁ ରାଜନୀତି ମିଶାଇ ଦେଇଛି ବର୍ଣମାଳା । ତେଣୁ ଛୋଟ ଛୋଟ ହୋଇଯାଉଛି ମହାଜାତି । ଅବିଶ୍ୱାସ ବଢ଼ିଯାଉଛି ପରସ୍ପର ଭିତରେ । ଜାତି ତ ଗୋଟାଏ— ମଣିଷ ଜାତି । ଅଥଚ ସେଥିରେ ପୁଣି ଉଚ୍ଚ ଜାତି ଆଉ ନିମ୍ନ ଜାତି କିଏ । ଛୁଆଁ ଆଉ ଅଛୁଆଁ କିଏ ? ଏଇ କଥାକୁ ନେଇ ଏତେ ପାଲା କାହିଁକି ? ତଳେଇ କରି ଦେଖିଲେ ସବୁକାଳେ ସୁବିଧାବାଦୀମାନେ ହିଁ ଇମିତି ଗୋଟାଏ ବାଡ଼ ପକେଇ ଦେଇଥା'ନ୍ତି । ଏକା ନାହକ ଦି'ଖଣ୍ଡ କରିଦେଇଥାନ୍ତି । ଏବେ ଆମେ ଜାତି ସହିତ ଜାତିକୁ ଯୋଡ଼ିବାକୁ ଯାଇ ଦଳକୁ ପକାଉଛୁ ତ ଆଉ ଦଳକୁ ଉଠଉଛୁ । ସଂହତି ଆସୁନାହିଁ । ସଂଘର୍ଷ ବଢ଼ୁଛି । ଜାତିଅଣ୍ଟାକୁ ନୂଆ କୁଣିଆ କରି ଫୁଲଚନ୍ଦନ ଦେଉଛୁ । ଏଇଆ ନହେଲେ ରାଜନୀତି ଡଙ୍ଗା ଚାଲିବ କେମିତି ? ସେଇଟା ହୋଇ ଯାଇଛି ନିର୍ବାଚନ ଚକ୍ର ବୈତରଣୀ ପାରହେବାର ଉପାୟ । ଆମେ ଯେତିକି ଦିନ ପର୍ଯ୍ୟନ୍ତ ଜାତିକୁ ନେଇ ଢେଙ୍ଗୁରା ପିଟୁଥିବା ସେତିକି ଦିନ ପର୍ଯ୍ୟନ୍ତ ଆମ ସିଂହାସନ ଠାଣ ରହିଥିବ । ଲୋକେ ଲଙ୍ଗୁଆ ହୋଇ ନିଜ ନିଜ ଭିତରେ ପିଟାପିଟି ହେଉଥିବେ । ଆମେ ସିଆଣିଆଯାକ ମଜା ଦେଖୁଥିବା । ଲୁହ ଗଡ଼ଉଥିବା । ସେଇ ଲୁହରେ ଭୁଲୁଥିବେ ଲୋକେ । ଆମରି ଜୟଜୟକାର ପଡ଼ୁଥିବ । ଖାଲି ଜାତି ନୁହେଁ; ଧର୍ମ କଥାଟା ବି ଏଇମିତି । ସଂଖ୍ୟାଲଘୁ ଓ ସଂଖ୍ୟାଗୁରୁ ଭେଦ ସୃଷ୍ଟି କରିଦେଇ ଗୁରୁ ଆଉ ଲଘୁଙ୍କ ଭିତରେ ଲଢ଼େଇ ଲଗେଇ ଦେଲେ ଆମ କାମ ସରେ । ଲଘୁଙ୍କ ଉପରେ ସହାନୁଭୂତି ଓଜାଡ଼ି ଦେଲେ ସେମାନେ ଆମରି ଉପରେ ବର୍ଷିବେ । ଏଇଥିଯୋଗୁ ଜାତି ସହିତ ଜାତିକୁ, ଧର୍ମ ସହିତ ଧର୍ମକୁ ଲଢ଼େଇ ଦେଉଁ । ହିଂସା ଭିତରକୁ ଠେଲିଦେଇ ପାଟିକରୁ ହିଂସା ହୋଇଗଲା । ହିଂସାକୁ ଆମେ ସାବାଡ଼୍ କରିଦେବାକୁ ଚାହୁଁ । ହିଂସା କିନ୍ତୁ ଯାଏ ନାହିଁ । ସେଇଟା ରହିଛି ଆଉ ରହିଥିବ । ତମେ ରାଜତନ୍ତ୍ର କୁହ କି ଗଣତନ୍ତ୍ର କୁହ କିମ୍ବା ସାମ୍ୟବାଦ କୁହ; ସବୁଠି ହିଂସାର ଅଛି ଅପ୍ରତିହତ ରାଜତ୍ୱ । ଅହିଂସା ସବୁବେଳେ ପୋଥିବାଇଗଣ । ମାନବିକତା କଳ୍ପଲୋକର କଥା । ସତ୍ୟ, ଅହିଂସା ପ୍ରେମ ଓ ମାନବିକତା କଥା କହି ଆମେ ସିଆଣିଆଯାକ ଲୋକଙ୍କୁ ଭୁଆଁ ବୁଲଉ ।

ଏବକା ରାଜନୀତି ଆମକୁ ଶିଖାଇଦେଇଛି ହିଂସାର ଚମତ୍କାର କୌଶଳ । ଆମଠାରୁ ଭଲପାଇବା ହରେଇ ନେଇଛି । ଆମକୁ ମାଟି ଭିତରୁ ଉପାଡ଼ି ଆଣି କୁଣ୍ଡରେ ଲଗେଇ ଦେଇଛି । ଆମେ ଭୁଇଁଛଡ଼ା ହୋଇଯାଇଛୁ । ଆମକୁ ଉପରୁ

ଚୋପିଏ ଚୋପିଏ ପାଣି ମିଳୁଛି । ସେଇଥିରେ ଆମେ ବଞ୍ଚୁଛୁ । କୁଣ୍ଡ ଶୁଖିଗଲେ ଆମ କଥା ସରିଲା । ରାଜନୀତି ପୁଣି ଆମକୁ ଶିଖେଇଛି ଜାଣେ ଜାଣେ — କ୍ଷମତା ହାସଲ କରିବାକୁ ହେଲେ ବାଟକୁ ସଫା କରିବାକୁ ହେବ । ରାଜନୀତିରେ ନୀତି ହେଉଛି ଏକମାତ୍ର କ୍ଷମତା ଲାଭ । କ୍ଷମତା ପାଇ ଗଲେ ସବୁ ଅନୀତି ନୀତି ହୋଇଯାଏ, ସବୁ ଦୁର୍ନୀତି ସୁନୀତି ହୋଇଯାଏ । ତେଣୁ ବାଟରୁ ସବୁ କଣ୍ଟାକୁ କାଢ଼ିଦେବାକୁ ହୁଏ । ନହେଲେ ପାଦରେ କଣ୍ଟା ଫୁଟିଯିବ, ଯନ୍ତ୍ରଣା ହେବ । ତେଣୁ ବେଳହୁଁ ସାବଧାନ ହେବ । ଯିଏ ତମ ବାଟରେ ମୁଣ୍ଡ ଟେକିବ ତାକୁ ହତ୍ୟା କରିବାକୁ ହେବ । 'ମୂଳୁ ମାଇଲେ ଯିବ ସର/ଦେବଙ୍କ ସଙ୍ଗେ ଜମା କଲ ।' ରାଜନୀତିରେ ଏଇ ଆଦର୍ଶ ସମାଜର ସବୁ ଅଡ଼କୁ ବ୍ୟାପିଯାଇଛି । ଉଚ୍ଚସ୍ତରରୁ ତଳ ସ୍ତର ପର୍ଯ୍ୟନ୍ତ ଗାଁରୁ ସହର ପର୍ଯ୍ୟନ୍ତ ସବୁଆଡ଼େ ଏଇ ହିଂସା ଆଉ ସଂଘର୍ଷ । ସର୍ବତ୍ର ଗୋଟାଏ ସନ୍ତ୍ରସ୍ତ ଭାବ । କିଏ ଲୁଚି ଲୁଚି ହତ୍ୟା କରୁଛି । କିଏ ପୁଣି ଖୋଲାଖୋଲି ହତ୍ୟା କରୁଛି । ପୋଷା ହୋଇଥିବା ଚାଣୂର ଆଉ ମୁଷ୍ଟିକମାନେ ବାହାରି ଆସୁଛନ୍ତି ଜଙ୍ଘରେ ତାଳ ମାରି । ଏମାନଙ୍କୁ ହତ୍ୟା କରିବ କିଏ ? କୃଷ୍ଣ ଆଉ ବଳରାମ କାହାନ୍ତି ଯେ ଏମାନଙ୍କୁ ହତ୍ୟା କରିବେ ? ଏମାନଙ୍କ ସଂଖ୍ୟା ବଢ଼ିବଢ଼ି ଚାଲିଛି । ଖେଳେଇ ହୋଇଯାଇଛନ୍ତି ଦେଶସାରା । ଏମାନେ ଚାଲିଗଲେ ଭୁଇଁ ଦୋହଲି ଉଠୁଛି । ଭୟରେ ସମସ୍ତେ ଥରି ଉଠୁଛନ୍ତି । ଏମାନଙ୍କ ପାଇଁ ଆଇନ ନାହିଁ କି ଅଦାଲତ ନାହିଁ, ବାଧା ନାହିଁ କି ବନ୍ଧନ ନାହିଁ । ଏମାନେ ଯାହା ପାରନ୍ତି ତାହା କରନ୍ତି । ସିଂହାସନୀ ମଣିଷର ଆଶୀର୍ବାଦ ଏଇମାନଙ୍କ ଉପରେ । ହବ ନାଇ କେମିତି ଯେ ! ଏମାନେ ତ ଦେହରକ୍ଷୀ । ଏଇମାନେ ପୁଣି ଆଗୁଆ ବାହିନୀ । ଏମାନେ କଣ କରନ୍ତି କିଛି ବୁଝନ୍ତି ନାହିଁ । ବୁଝିବାକୁ ମଧ୍ୟ ବେଳ ନଥାଏ, ଦରକାର ନଥାଏ । ଏମାନଙ୍କର କେବଳ ଦରକାର ଉପଭୋଗ ପାଇଁ ଅର୍ଥ । ଏମାନେ କାହୁଁ ବୁଝିବେ ଯେ ଗୋଟାଏ ଅସହାୟା ଯୁବତୀର ଲଜ୍ଜାର ମର୍ଯ୍ୟାଦା କ'ଣ ? ଗୋଟାଏ ଶିଶୁର ଆକୁଳତାର ଅର୍ଥ କଣ ? ଏମାନେ ବୁଝନ୍ତି ନାହିଁ; ବୁଝନ୍ତି ନାହିଁ ମଧ୍ୟ ସିଂହାସନୀ ମଣିଷ, କ୍ଷମତା ପାଗଳ ମଣିଷ । ଉପଭୋଗ ଯେଉଁ ମଣିଷର ଜୀବନ-ବେଦ, ସିଏ କାହିଁକି ବୁଝିବ ମଣିଷ ହୃଦୟର ଆକୁଳ ବିଳାପର ଅର୍ଥ ? ସଇତାନ ବୁଝେ ନାହିଁ । ବୁଝି ନଥିଲା ରାବଣ । ବୁଝି ନଥିଲା କଂସ ଆଉ ଦୁର୍ଯ୍ୟୋଧନ । ଯିଏ ବୁଝିବ ସିଏ ବିତାଡ଼ିତ ହେବ ବିଭୀଷଣ ପରି, ଅବହେଳିତ ହେବ ବିଦୁର ପରି । ନହେଲେ ଶୋଇଯିବ ଶରଶଯ୍ୟାରେ ପିତାମହ ଭୀଷ୍ମଙ୍କ ପରି ।

କ୍ଷମତାରେ ମଣିଷ ମୋହାସକ୍ତ । କ୍ଷମତାରେ ମଣିଷ ଅନ୍ଧ । ସକଳ ପାପର ଏକ ଜୀବନ୍ତ ବିଗ୍ରହ ହୋଇଥିଲେ ହେଁ ତାକୁ ପୂଜା କରାଯାଏ । ଚାଟୁକାର ବୈତାଳିକଗଣ ପ୍ରତିଯୋଗିତା ଲଗେଇ ଦିଅନ୍ତି ନିଜ ନିଜ ଭିତରେ । ଯିଏ

ସିଂହାସନରେ ବସନ୍ତି ଚାଟୁକାରମାନେ ତାର ହୋଇଯାଆନ୍ତି । ସେମାନେ ଆଦର୍ଶର ନୁହନ୍ତି; ସେମାନେ କ୍ଷମତାର, ସିଂହାସନର । ସିଂହାସନ ଏମାନଙ୍କ କଥାରେ ବିଶ୍ୱାସ କରେ, କୃତ୍ୟ କୃତ୍ୟ ହୁଏ । ମଣିଷଙ୍କ ପାଖରୁ ସିଂହାସନର ଦୂରତା ବଢ଼ିଯାଏ । ଏଇ ଦୂରତା ଭୌତିକ ଦୂରତା (Physical distance) ଓ ମାନସିକ ଦୂରତା (Mental distance) । ଏବେ ଏଇ ଭୌତିକ ଦୂରତା ଏତେ ବେଶୀ ନୁହେଁ । ଅଥଚ ମାନସିକ ଦୂରତା ବହୁତ ବେଶୀ । ଯୋଜନ ଯୋଜନ ବ୍ୟାପୀ ଏଇ ଦୂରତା ବଢ଼ିଚାଲିଛି । ଜଣେ ଯେତିକି ନେତାଙ୍କର ନିକଟବର୍ତ୍ତୀ ବୋଲି ଭାବୁଛି, ଯେତିକି ସିଂହାସନର ପାଖ ମଣିଷ ବୋଲି ମନେ-କରୁଛି; ସେତିକି ସେ ହୋଇଯାଉଛି ବହୁଦୂରର । ଏଇ ଦୂରତା ଜଣକୁ କରିଛି ଅଶାନ୍ତ ଓ ବିକ୍ଷୁବ୍ଧ । ଜଣ ସବୁ କାଳରେ ସିଂହାସନଠାରୁ ଦୂରରେ । ଅତୀତରେ ଥିଲା । ଅଥଚ ସେ ଗୋଟାଏ କ୍ଷମା-ସୁନ୍ଦର ଦୃଷ୍ଟିରେ ଗୃହୀତ ହଉଥିଲା । ଏବେମଧ୍ୟ ଜଣ ସିଂହାସନଠାରୁ ଦୂରରେ । ଅବଶ୍ୟ ସିଏ ଭୋଟ ଦେଇ ନେତା ଉଦୟ କରୁଛି । ନେତା ନିର୍ବାଚିତ ହୋଇ ସିଂହାସନକୁ ଚାଲିଗଲା ପରେ ତାଙ୍କର ଆଉ ଜଣ କଥା ମନେ ରହୁନାହିଁ । କ୍ଷମତା ଓ ଅର୍ଥର ସେ ଦାସ ବନିଯାଉଛି । ଲକ୍ଷ୍ୟ ହୋଇଯାଉଛି ଉପଭୋଗ ଓ ବିଳାସ । ଅବଶ୍ୟ ଏଇଟା ଅନ୍ତର୍ନିହିତ । ବାହାରକୁ ସେ ଗୋଟାପୂର୍ଣି ଜଣର । ଏଇ ଅବସ୍ଥା ହେତୁ ଜଣ ଆଉ ନେତା, ଜଣ ଆଉ ପ୍ରଶାସନ ମଧ୍ୟରେ ବିଶ୍ୱାସ ରହୁନାହିଁ । ବିଶ୍ୱାସ ତୁଟିଯିବାରୁ ହିଂସା ମୁଣ୍ଡଟେକି ଉଠୁଛି, ସ୍ୱାର୍ଥ ପ୍ରାଧାନ୍ୟ ଲାଭ କରୁଛି । ପରାର୍ଥ ଭାବନା ଲୋପ ପାଇଯାଉଛି । ଅତୀତରେ ବଳବାଦ ଥିଲା ମାତ୍ର ସେଥିରେ ଥିଲା ଐଶ୍ୱର୍ଯ୍ୟବୋଧ ଓ ଧର୍ମବୋଧ । ତେଣୁ ସଭ୍ରମତା ପ୍ରକାଶ ପାଉଥିଲା । ଦରକାର ହେଲେ ବଳବାନ୍ ସମସ୍ତ ବଳକୁ ଛାଡ଼ିଦେଇ ଚାଲିଯାଉଥିଲା, ଦାନ କରିଦେଉଥିଲା । ତା ଭିତରେ ପ୍ରକାଶ ପାଉଥିଲା ଗୋଟାଏ ଆଧ୍ୟାତ୍ମିକ ଜିଜ୍ଞାସା । ଏବେ କିନ୍ତୁ ବଳବାଦର ସେଇ ଐଶ୍ୱର୍ଯ୍ୟ ନାହିଁ, ଆଧ୍ୟାତ୍ମିକ ମନୋଭାବ ନାହିଁ; ଅଛି ଶୋଷଣ ଓ ଦୁର୍ନୀତି; ଅଛି ମଧ୍ୟ ଅନ୍ୟକୁ ହତ୍ୟା ଓ ଲୁଣ୍ଠନ କରି ନିଜେ ବଳବାନ ହେବାର ପ୍ରବଳ ମୋହ । ଧର୍ମ ହୋଇଗଲାପରେ ରାଜନୀତି ଓ ପ୍ରଶାସନକୁ ଅର୍ଥର ଫୁଲ ଶୁଙ୍ଘାଇ ନିଜର ସୁବିଧା ଓ ନିରାପତ୍ତା ହାସଲ କରିନେବାର ଅଛି ଅବିରାମ ପ୍ରଚେଷ୍ଟା ।

ଆଜିର ନିର୍ବାଚନସ୍ଥ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ବିଜ୍ଞାପନସ୍ଥ ହୋଇଯାଇଛି । ଯେତେବେଳେ ଭିତରର ମୂଲ୍ୟବୋଧ ହ୍ରାସ ପାଇଯାଏ ସେତେବେଳେ ମଣିଷ ନିଜକୁ ଦେଖେଇ ହୁଏ ବେଶୀ । ନିଜେ ଯାହା ନୁହେଁ, ତା'ଠାରୁ ବେଶିକରି ପ୍ରଚାର କରେ । ଚାଟୁକାରମାନଙ୍କୁ ସଜେଇ କରି ରଖିଦିଏ । କ୍ଷମତା ଓ ଅର୍ଥ କୈନ୍ଦ୍ରିକ ରାଜନୀତି ସେଇଆ ହୋଇଯାଇଛି । ସ୍ୱାର୍ଥୀମାନେ ଘୂରି ବୁଲୁଛନ୍ତି । ଏଇ ଅର୍ଥ ଓ କ୍ଷମତା ମଣିଷକୁ ପଶୁ କରି ଦେଇଛି । ଏଥିରୁ ଲୋପ ପାଇଯାଉଛି ଶ୍ରଦ୍ଧା ଓ ପ୍ରେମ । ଉଦ୍ରେକ

ହେଉଛି ଈର୍ଷା ଓ ଘୃଣା—ତାହା ପୁଣି ପାଲଟି ଯାଉଛି ହିଂସା । ଏଇ ହିଂସାର ଖେଳ ଦେଶସାରା । କାର୍ଯ୍ୟର ଧାରା ନେଇ ହିଂସ୍ରମାନଙ୍କର ପୁଣି ନାମାନ୍ତର—କିଏ ଗ୍ରେଉ ଉଦାସ୍ତ, କିଏ ସନ୍ତ୍ରାସବାଦୀ । ନିର୍ବାଚନବେଳେ ଯେଉଁ ହିଂସା ହୁଏ ସେଇଟା ଭିନ୍ନ ହୋଇଯାଏ । କ୍ଷମତାସୀନ ଦଳ ହିଂସା କଲେ ତାହା ହୁଏ ଆତ୍ମରକ୍ଷା । କ୍ଷମତାବିହୀନ ଦଳ ହିଂସା କଲେ ତାହା ହୁଏ ଆକ୍ରମଣ । ଏଇ କଥାଟା ସଂଖ୍ୟାଗୁରୁ ଓ ସଂଖ୍ୟାଲଘୁ, ଉଚ୍ଚଜାତି ଓ ନିମ୍ନଜାତି ପାଇଁ ମଧ୍ୟ ପ୍ରଯୁଜ୍ୟ । ଏସବୁର ମୂଳ ହେଉ ଭୋଟ-କୋକୁଆ । ସେଇଟା ଯେ ଯଦୁବଂଶୀଙ୍କ ପ୍ରତି ଜାଲ ହେବ; ଏକଥା କେହି ଭାବୁ ନାହିଁ । ଏହାହିଁ ଦେଶର ଦୁର୍ଗତି—ଜାତିର ଦୁର୍ଗତି । ହିଂସାକୁ ଆଉ ରୋକ ହେଉ ନାହିଁ; ହେବ ନାହିଁ ମଧ୍ୟ ସହଜରେ । ଯେଉଁଠି ହିଂସା ବ୍ୟକ୍ତି-ସ୍ୱାର୍ଥ ପାଇଁ ଉଦ୍ଦିଷ୍ଟ ନହୋଇ ସମୂହ କଲ୍ୟାଣପାଇଁ ଉଦ୍ଦିଷ୍ଟ ହୁଏ ସେଠି ଆଉ ହିଂସା ହିଂସା ହୋଇ ରହେ ନାହିଁ । ତାହା ହୋଇଯାଏ ମହତ୍ତ୍ୱମୟ । ଯେଉଁଠି କେବଳ ବ୍ୟକ୍ତିସ୍ୱାର୍ଥ, ଦଳୀୟ ସ୍ୱାର୍ଥ ପ୍ରାଧାନ୍ୟ ଲାଭ କରେ ତାହା ହୁଏ ହିଂସା, ତେଣୁ ଘୃଣ୍ୟ । ଆଜି ଆଉ ସମୂହ ସ୍ୱାର୍ଥ ନାହିଁ, ଅଛି ବ୍ୟକ୍ତି-ସ୍ୱାର୍ଥ । ଦଳ ବ୍ୟକ୍ତିର ମର୍ଜିକୁ ନେଇ ଗତିଶୀଳ । ସ୍ୱାଧୀନତା ସ୍ୱେଚ୍ଛାଚାରରେ ହୋଇଯାଉଛି ପରିଣତ । ତେଣୁ ଦେଖା ଦେଉଛି ହିଂସା, ଲୁଣ୍ଠନ, ଅତ୍ୟାଚାର, ଧର୍ଷଣ, ଦୁର୍ନୀତି ଓ ଯାବତୀୟ ପାପାଚାର । ଯିଏ ଏସବୁ ଗୁଣର ଅଧିକାରୀ ସିଏ ଗଣତାନ୍ତ୍ରିକ ପଦ୍ଧତି ଭିତରେ ଶାସନ ଦଣ୍ଡ ଧରୁଛି । ସିଏ ଦେଉଛି ଉପଦେଶ । ଫଳରେ ପ୍ରଭାବ ପଡ଼ୁନାହିଁ ସମାଜ-ମଣିଷମାନଙ୍କ ଉପରେ । ମଦ୍ୟପ ମଦ୍ୟ ନିବାରଣ ଉପରେ ଭାଷଣ ଦେଲେ, ଦୁର୍ନୀତିଗ୍ରସ୍ତ ବ୍ୟକ୍ତି ଦୁର୍ନୀତି ବିଲୋପ ପାଇଁ ଆହ୍ୱାନ ଦେଲେ, ଅର୍ଥବଳରେ କ୍ଷମତା ହାସଲ କରିଥିବା ମଣିଷ ଅର୍ଥବାଦ ବିରୋଧରେ ସ୍ୱର ଉତ୍ତୋଳନ କଲେ, ନୀତିହୀନ ବ୍ୟକ୍ତି ନୀତି ଓ ଧର୍ମର ବଖାଣ କଲେ, ଲାଞ୍ଚଖୋର ପୁଞ୍ଜିପତି ଗରିବଙ୍କ ପାଇଁ କାନ୍ଦିଲେ, ଯୌନପ୍ରମତ୍ତ ବ୍ୟକ୍ତି ନାରୀ-ଅତ୍ୟାଚାର ବିପକ୍ଷରେ କହିଲେ, ଚରମ ଉପଭୋଗୀ ମଣିଷ ଧର୍ମର ବାଣୀ ଶୁଣାଇଲେ କଣ କିଛି ପ୍ରଭାବ ପଡ଼େ ? ଇଏ ସବୁ ଧର୍ମକୁ ଆଖିଠାର ।

ଗଣତନ୍ତ୍ର ମାନବ ଚିନ୍ତାର ସର୍ବୋତ୍ତମ ଅଭିବ୍ୟକ୍ତି । ଅଥଚ ଏହାର ମୂଲ୍ୟବୋଧ ବିଡ଼ମ୍ବିତ ହୋଇଯାଉଛି । କ୍ଷମତାର ନାଗଫାଶ ଭିତରେ ବନ୍ଦୀ ହୋଇଯାଇଛି । ସବୁଆଡ଼େ କେବଳ ବିଷ, କେବଳ ଜ୍ୱାଳା । କ୍ଷମତା-ନିଶା ନ ଗଲେ, ଉପଭୋଗ-ତୃଷ୍ଣା ନ ଗଲେ, ଜଣେ ହୁଏତ ସିଂହାସନ ପାଇପାରେ; ଜନତାର ସେବକ ହୋଇପାରେ ନାହିଁ । ବରଂ ତାର ନୀତି, ତାର ଗତି କ୍ରମେ ସମାଜରେ ସଂକ୍ରାମକ ବ୍ୟାଧିପରି ମାଡ଼ିଯାଏ । ଏଇଆ ହୋଇଛି ଦେଶରେ । ଅର୍ଥବାଦର ମୋହିନୀ ମାୟା ଭୁଲେଇ ଦେଇଛି ସମସ୍ତଙ୍କୁ । ହିଂସାର ଚାଲିଛି ତାଣ୍ଡବ ନୃତ୍ୟ । କେହି କୁଆଡ଼େ ନାଇ ବିରୋଧ କରିବାକୁ । ରାଜନୀତି ହସୁଛି—ରହସ୍ୟ ବିଜଡ଼ିତ ହସ । ହିଂସାକୁ ଉସ୍କେଉଛି । ପୁଣି ପାଟି କରୁଛି ହିଂସା ହୋଇଗଲା ।

ସାଧୁ ସାବଧାନ ! ହିଂସା ସବୁବେଳେ ହିଂସା । ତାର ଦୟା ମାୟା ନାହିଁ । ଯିଏ ହିଂସାକୁ ଡେକିବ ଯିଏ ବି ଦିନେ ତାରି କବଳରେ ପଡ଼ିବ । କେହି ରକ୍ଷା ପାଇବେ ନାହିଁ । ରକ୍ତ ନଦୀ ବହିଯିବ । ତେଣୁ ତ କହୁଛୁ ଗଣକୁ ଧର, ଗଣକୁ ଭଲପାଅ, ଗଣକୁ ଆପଣାର କର, ଗଣ ଭିତରେ ଭେଦ ସୃଷ୍ଟି କରନା । ଗଣ ଠିକ୍ ହୋଇଗଲେ, ଗଣକୁ ଠିକ୍ ଜାଣିଗଲେ, ଗଣର ଉଦ୍‌ବୋଧନ ହୋଇଗଲେ ତନ୍ତ୍ର ଠିକ୍ ହୋଇଯିବ । ଗଣକୁ ନେଇ ତନ୍ତ୍ର, ତନ୍ତ୍ରକୁ ନେଇ ନୁହେଁ । ତନ୍ତ୍ର ଗୋଟାଏ ପଦ୍ଧତି, ଗୋଟାଏ ପ୍ରକ୍ରିୟା, ଗୋଟାଏ ଶୃଙ୍ଖଳା । ଗଣ ଭିତରେ ସଦ୍ଭାବ ଆସିଗଲେ ଶୃଙ୍ଖଳା ଆସିଯିବ ଆପେ ଆପେ । ଗଣ ହିଁ ଗଣ । ଯିଏ ହିନ୍ଦୁ ନୁହେଁ କି ମୁସଲମାନ ନୁହେଁ, ବୌଦ୍ଧ ନୁହେଁ କି ଖ୍ରୀଷ୍ଟିୟାନ ନୁହେଁ । ଯିଏ କେବଳଇ ଗଣ, କେବଳଇ ମଣିଷ । ନାରୀ ହେଉ କି ପୁରୁଷ ହେଉ ସେଇ ଗଣ । ଏଇ ଗଣ ଭିତରେ ଏତେ ଫାଟ କାହିଁକି ? ଗଣ ନିଜ ଭିତରେ ଫାଟ କରେ ନାହିଁ । ସୁବିଧାବାଦୀ ଲୋକେ ଏଇ ଫାଟ କରିଦିଅନ୍ତି । ଗଣ ଆଗରେ ଅର୍ଥର ସୁନା ମିରଗ ନଚାନ୍ତି । ନିଜକୁ ସୁହାଇଲା ଭଳିଆ କଥା କହନ୍ତି । ମାତ୍ର ଯାଆନ୍ତି କିଛି ଲୋକ ସେଇ କଥାରେ । ଯଦୁବଂଶୀଆଙ୍କ ଭଳି ନିଜ ନିଜ ଭିତରେ ହଣାକଟା ହୋଇଯାଆନ୍ତି । ରେ ରେ କାର ଧ୍ୱନିରେ ଗଗନ ପବନ କମ୍ପେଇ ଦିଅନ୍ତି । ଗଣ ବୁଝିଲାବେଳକୁ ନେଡ଼ିଗୁଡ଼ କହୁଣିକୁ ବୋହି ଯାଇଥାଏ । ଏଥର ଆସନ୍ତୁ ନା—ନୂଆକରି ଗଣତନ୍ତ୍ରକୁ ଦେଖିବା—ମୂଲ୍ୟବୋଧ ଉପରେ ଗୁରୁତ୍ୱ ଦେବା—ଭାରତର ଆତ୍ମାକୁ ଖୋଜିବା—ମଣିଷକୁ ମଣିଷ ଭାବରେ ଦେଖିବା । ବାହାରକୁ ଅନେଇ ଆଖିରୁ ପାଣି ଗଡ଼େଇବା କାହିଁକି ? ଅର୍ଥର ଟ୍ରଙ୍କ ଧରି ଗଣପାଖକୁ ଯିବା ନାହିଁ; ହୃଦୟକୁ ମୁକ୍ତ କରି ଯିବା । ସିଂହାସନ ପାଇବା ପାଇଁ ଯିବା ନାହିଁ; ସିଂହାସନର ମୁକ୍ତିପାଇଁ ଯିବା । ଉପଭୋଗୀ ମନୋଭାବକୁ ସଗୁପ୍ତ ରଖି ଛଳନାର ମୁଖା ପିନ୍ଧିଯିବା ନାହିଁ; ମୁଖା ଖୋଲି ଦେଇ ଯିବା, ବସ୍ତୁବାଦର ଭେଳିକି ଦେଖେଇ ଯିବା ନାହିଁ; ଆଧ୍ୟାତ୍ମିକ ପ୍ରସନ୍ନତା ନେଇଯିବା । କିଏ ଆମର ଶତ୍ରୁ ? କେହି ନୁହେଁ । ବସୁଧୈବ କୁଟୁମ୍ବକମ୍ । ଶତ୍ରୁ ଅଛି ଭିତରେ । ଆମେ ନିଜେଇ ନିଜର ଶତ୍ରୁ । ଭୟ ଆମରି ଭିତରେ ଛପି ରହିଛି । ଏଇଥିପାଇଁ ହିଂସା । ସମଗ୍ର ପ୍ରଶାସନ କଳକୁ ନିଜ ହାତ ମୁଠାରେ ରଖି ଅନ୍ୟକୁ କାବୁ କରିଦେଲେ, ହତ୍ୟା କରିଦେଲେ ଆମେ ଭୟଶୂନ୍ୟ ହୋଇ ପାରିବା ନାହିଁ । ସେଇ ଭୟ କାଳ ହୋଇ ଗୋଡ଼େଇବ । କଂସପରି ଗଡ଼ପଡ଼ିବ ମଞ୍ଚାରୁ ।

ଅନେକ ତ ହୋଇଗଲେଣି । ଏଥର ଚେତନା ଫେରୁ । ମହାମାନ୍ୟ ମାନେ ଚୁଙ୍ଗକୋଠରୀରୁ ବାହାର ଆସି ଗଣକୁ ଟିକେ ଅନାନ୍ତୁ । କଣ ଅନାଇବେ ନାହିଁ ? ହଉ ନ ଅନାନ୍ତୁ ।

# ଝୁଡ଼ିଗଲା ଗୋଡ଼ ତଳକୁ ତଳକୁ

ମଣିଷ ଗୋଟାଏ ଇମିତିକା ଜୀବ ଯେ ନାକରେ କାନରେ ପାଟିରେ ପାଣି ପଶିଗଲେ ବି ନିଜର ମୁହଁ ଭୁରୁଙ୍ଗି ଛାଡ଼େ ନାହିଁ । ଫୁଟାଣି ନାହିଁ କଣ ଗୋଟାଏ କରିବାକୁ ଜମର ଭଣ୍ଡ ବାହାଣପଡ଼େ । କଥା କଥାକେ ଫଁ । ଏଇ ଫଁ ଦେଖାଇ ସେ ସବୁ କିଛି ଅତ୍ୟାଚାର କରିବାକୁ ଚାହେଁ । ଭଲକଥା ତା ମନକୁ ପାଏ ନାହିଁ । ସେ ଗୁଡ଼ାକ ତାକୁ ପିତା ଲାଗେ, ଅରୁଚ ଲାଗେ । ଯେତେ ତାକୁ ଆଖିରେ ଆଙ୍ଗୁଠି ଗେଞ୍ଜି ଦେଖାଇ ଦେଲେ ମଧ୍ୟ ସେ ଦେଖେ ନାଇ । ନିଜ ଭୁଲକୁ ସେ ମାନେ ନାଇ । ଅନ୍ୟର ଭୁଲ ଦେଖାଇବାକୁ ଛଟପଟ ହୁଏ । ସେ ଯାହା ଦେଖିଥାଏ ବୋଲି କହେ, ମୋଟେ ନ ଦେଖିଥାଉ ପଛେ, ସେଇଟା ଉପରେ ଜୋର ଦିଏ । ଇମିତିକା ଅବସ୍ଥା ସେତିକବେଳେ ହୁଏ ଯେତେବେଳେ ସବୁ ମୂଲ୍ୟବୋଧ ଭୁଷୁଡ଼ି ପଡ଼ିଥାଏ । ଧର୍ମ ଜ୍ଞାନ ରହେ ନାଇ । ମାନ୍ୟ ଧର୍ମ ରହେ ନାଇ । ସତ୍ୟ ଶାନ୍ତି ଦୟା କ୍ଷମା ସବୁ ହୋଇଯାଏ ପୋଥିବାଇଗଣ । ଗୋଟାଏ ପ୍ରମତ୍ତ ଉପଭୋଗ ଲାଳସା ଆବୃତ କରେ । ଯେମିତି ହେଉ ପଛେ କୁଆଡ଼ୁ କେମିତି ଲୁଣ୍ଠେଇ ପୁଣ୍ଠେଇ ଆଣି ନିଜ ଘର ଭିତରେ ପୂରେଇ ଦେଲେ ହେଲା । ନିଜ ଘରକୁ ଚହଟ ଚକ୍‌କଣ କରି ସଜେଇ ଦେଲେ ହେଲା । କାହାର ତଣ୍ଟି କାଟିଦେଲେ ବି କିଛି ଯାଏଆସେ ନାଇ । ସାରା ଦେଶଟା ଉଜୁଡ଼ିଗଲେ ବି ଚିନ୍ତାଦିକ ନାଇ । ନିଜକୁ ନିରାପଦ ରଖିବାପାଇଁ ଯାବତ ଆଣ୍ଟ ସଜେଇବାକୁ ହୁଏ । କାହା ହାତରେ ବାଡ଼ି ଠେଙ୍ଗା ଛୁରୀ ତରବାରୀ ବନ୍ଧୁକ ଧରେଇ ଦେବାକୁ ହୁଏ । ଆଉ କାହାକୁ ଲଗେଇ ଦେବାକୁ ହୁଏ ସଂସାର-ଯାକର ମିଛକୁ ଆଣି ପ୍ରଚାର କରିଦେବାପାଇଁ । ଏମାନଙ୍କୁ ଫୁଲଚନ୍ଦନ ଦେଇ ପୋଷିବାକୁ ହୁଏ, ପାଳିବାକୁ ହୁଏ । ଯାହାକିଛି ଏମାନଙ୍କର ଲୋଡ଼ା ଯୋଗେଇ ଦେବାକୁ ହୁଏ । ତେଣିକି ଏମାନେ ଯାହା କିଛି ଘଟଣ ଅଘଟଣ କରିବେ ସବୁପାଇଁ ଆଖିବୁଜି ଦେବାକୁ ହୁଏ । କିଛି ଆଉ କହିହୁଏ ନାଇ । କିଏ କହିବ ? କାହାର ସାହସ ଅଛି ? କାହା ଜିଭରେ ହାଡ଼ ଅଛି ? ଆରେ ବାପ୍, ଜାଣୁ ଜାଣୁ କିଏ କାହିଁକି ମାଗୁନାଟାରେ ତାର ପୈତୃକ ପ୍ରାଣଟାକୁ ହରେଇ ବସିବ ? ଏମାନଙ୍କର କୋଉ ନଘା ଅଛି ନା ପଘା ଅଛି । କୋଉ ଆଇନ ଅଦାଲତ ଅଛି ନା ପୋଲିସ-ବାହିନୀ ଅଛି ଯେ ଏମାନଙ୍କୁ ଶାସ୍ତି ଦେଇ ପାରିବ ! ପୋଲିସ ଜାଣେ ଯେ ଏମାନେ ଶିବଙ୍କ ସାପ, ନାରାୟଣଙ୍କ ଗରୁଡ଼ । ଏମାନଙ୍କ ସହିତ ଲାଗିଲେ ନିଜର ଦଫା

ଝକଲ୍ ଯିବ । ଓଃଲଟି ଆ କଲା ମୋଟେ ବନ୍ଧ୍ । ଏମାନଙ୍କର ବିନାଶ ନାହିଁ । ଉତ୍ତରୋତ୍ତର ଏମାନଙ୍କ ସଂଖ୍ୟା ବଢ଼ି ଚାଲିଛି । ସହର ବଜାରରୁ ମଫସଲ ପର୍ଯ୍ୟନ୍ତ ଏମାନଙ୍କର ଅଖଣ୍ଡ ରାଜୁତି । ଏମାନଙ୍କୁ ନ ଧରିଲେ ନେତାମାନଙ୍କର ଗତି ନାହିଁ କି ମୁକ୍ତି ନାହିଁ । ନିର୍ବାଚନ ବୈତରଣୀ ପାରି ହେବାକୁ ହେଲେ ଏଇମାନେ ହିଁ ନୌକା । ଏଇମାନେ ଆଗରେ ପଛରେ, ବାଁରେ ଡାହାଣରେ, ଉପରେ ତଳେ । ଆହାଃ ! ଗଣତନ୍ତ୍ରର ଏଇମାନେ ଅଗ୍ରଦୂତ—ଚାମୁଆ ବାହିନୀ । ଏମାନଙ୍କୁ ଛାଡ଼ି କିଏ ଗଣତନ୍ତ୍ରକୁ ଆଗେଇ ନେବ ?

ଆମ ଦେଶରେ ଆଉ ଯାହା ହେଉ ବା ନ ହେଉ ନେତାଙ୍କ ସଂଖ୍ୟା ହୁ ହୁ ହୋଇ ବଢ଼ି ଚାଲିଛି । ସେମାନଙ୍କ ଚାମୁଆ ବାହିନୀ ସଂଖ୍ୟା ମଧ୍ୟ ଆହୁରି ବେଗରେ ବଢ଼ି ଚାଲିଛି । କେତେ କିସମର ନେତା । କିଏ ତାର ହିସାବ ରଖିଛି । କିଏ ଛାତ୍ରନେତା ତ କିଏ ଯୁବନେତା । କିଏ କୋଉ ଦଳର ନେତା ତ କିଏ ଧର୍ମର ନେତା । କିଏ କୋଉ ସମ୍ପ୍ରଦାୟର ନେତା ତ କିଏ କୋଉ ସଂଗଠନର ନେତା । କିଏ କୃଷକ ନେତା ତ କିଏ ଶ୍ରମିକ ନେତା । କେତେ କିସମର, କେତେ ଢଙ୍ଗର, କେତେ ରଙ୍ଗର ଖାଲି ନେତା । ନେତାମୟ ଆମ ଦେଶ । ଆଗେ ଯିନା ନେତାଙ୍କ ସଂଖ୍ୟା ଆଙ୍ଗୁଠି ଅଗରେ ଗଣି ହୋଇଯାଉଥିଲା, ଏବେ ତ ଆଉ ଗଣି ହେବ ନାହିଁ । କେଜାଣି କାଳେ କମ୍ପ୍ୟୁଟର ମେସିନ ଗଣିଦେଇ ପାରିବ । ଯେତେ ନେତା ସେତେ ଝଗଡ଼ା, ସେତେ ଫାଟ । ନେତା ତ ଆଉ ସେବକ ହୋଇ ନାହାନ୍ତି ଯେ ଝଗଡ଼ା କରିବେ ନାହିଁ । ସେମାନଙ୍କର ଭୋଟଟା ଲକ୍ଷ୍ୟ ହୋଇଥିବାରୁ ଝଗଡ଼ାଟା ଆଗ ହୋଇଯାଉଛି । ଯେଉଁ ନେତାଙ୍କର ଚାମୁଆ ବାହିନୀ ଯେତେ ବେଶୀ ସିଏ ସେତେ ଟାଣ । ତାର ବଢ଼ତି ବେଶି । ଯାର ଚାମୁଆବାହିନୀ ନାହିଁ ତାର ଖାଲି ଝୁଲା ଧରି ବୁଲିବା ସାର । ନେତା ଯେ କେତେ ବଡ଼, କେତେ କରିତ୍‌କର୍ମା; ସହଜରେ କିଏ ଜାଣିପାରିବ ? ତାଙ୍କ କୁହାଟରେ ସ୍ୱର୍ଗ ମର୍ତ୍ତ୍ୟ ପାତାଳ କମ୍ପି-ଯାଇପାରେ । ତାଙ୍କ ଇଙ୍ଗିତରେ ସ୍ୱର୍ଗର ନନ୍ଦନକାନନ ଲୁଟପାଟ ହୋଇଯାଇ-ପାରେ । ସବୁ ଅସମ୍ଭବ ସମ୍ଭବ ହୋଇଯାଇପାରେ । ସେଥିରେ ପୁଣି ସିଂହାସନ୍ନ ନେତାଙ୍କ ଅକଳନ କରାମତି । ସମସ୍ତେ ସେଠି ଯୋଡ଼ହସ୍ତ । ସେମାନେ ସାକ୍ଷାତ ଦେବତା—ମହଣା ଦେବତା ହେଁପା ନରରୂପେଣ ତିଷ୍ଠତି ।

ଓହୋ, ତମେ କେଇଜଣ ଖାଲି ବକର ବକର ହୁଅଚ ଘର ଭିତରେ କବାଟ କିଳି—କଣ ନା ଦେଶ ଖସିଗଲା, ଧର୍ମ ନଷ୍ଟ ହୋଇଗଲା, ମଣିଷ ବିଗିଡ଼ି ଗଲା, ମୂଲ୍ୟବୋଧ ଉଜୁଡ଼ିଗଲା । ଧେତ୍, ତମେ ସବୁ ସେଇମିତି ଭୁକୁଥାଅ । କିଏ ତମ କଥା ଶୁଣୁଚି ହୋ, କାହାର ବେଳ ଅଛି ତମ କଥା ଶୁଣିବାକୁ । ତମେ

ସେଇମିତି ଜବାହରଲାଲ ବୈଠକ କରୁଥିବ, ପାର୍ଟି କରୁଥିବ, ଖବରକାଗଜରେ ଝବରଣୀ ଛାପୁଥିବ—ଏଣେ ଦେଶ ତା ବାଟରେ ଚାଲୁଥିବ, ଗଣତନ୍ତ୍ରର ଡଙ୍ଗା ଭାସୁଥିବ । ବଡ଼ପଣ୍ଡାମାନେ କହୁଥିବେ—ଆମ ଦେଶ ଘିଅମହୁରେ ଭାସୁଚି, ସମାଜବାଦ ମଜଭୁତ ହୋଇଯା'ଉଛି, ଗଣତନ୍ତ୍ର ଟାଣ ହେଉଛି, ଆମକୁ ସହିପାରୁ ନଥିବା କେତେକଜଣ ଦେଶଦ୍ରୋହୀ ମାଖୁନାଟାରେ ପାର୍ଟି କରୁଛନ୍ତି । ଆମ ଦେଶର ଶାନ୍ତିପ୍ରିୟ ଲୋକମାନଙ୍କୁ ଭୁଲବାଟରେ ନିବାକୁ ଚାହୁଁଛନ୍ତି । ତମର ଯଦି ଆଖି ଅଛି ତେବେ ଦେଖ – କେତେ କେତେ କୋଠାବାଡ଼ି ହୋଇଗଲାଣି, କେତେ ନାଇ କେତେ ମନ୍ଦିର, ମସ୍‌ଜିଦ୍‌, ଗୀର୍ଜା ତିଆରି ହୋଇଗଲାଣି, କାହିଁରେ କେତେ କଳ-କାରଖାନା ବସିଗଲାଣି, ସବୁଆଡ଼େ ଧର୍ମର ଘୋଷଣି; କୋଉଠି ଅଧର୍ମ ନାଇ, ମିଛ ନାଇ, ହିଂସା ନାଇ, ଖତ କହିବା ନାଇ, ଠକାମି ନାଇ, ଦୁର୍ନୀତି କୁଆଡ଼େ ଛୁଟି ପଳାଇଲାଣି—ଆହା ! ଇମିତିକା ରାଇଜ କେବେ ଥିଲା ? ଇମିତିକା ରାଜା କେବେ ଥିଲେ ? ଏଇଟା ନୂଆ ରାଇଜ । ନେତାମାନେ ନୂଆ ନୂଆ ରାଜା । କେତେ ବଢ଼ିଆ ନୁହଁ ଏଇ ରାଜାମାନେ ! ଚାଲିଗଲେ ଲକ୍ଷେ ପଦ୍ମ ଫୁଟୁଛି । କେତେ ଜୟ ଜୟକାର, କେତେ ଘୋଷଣା, କେତେ ବାଇଦ, କେତେ ବାଣ, କେତେ ଲୋକଙ୍କର ଶୋଭାଯାତ୍ରା । ଥରଥର ହୋଇଯାଉଚି ମେଦିନୀ, କମ୍ପି ଉଠୁଛି ଗଛଲତା ଗିରିବନ ନଦନଦୀ । ଇମିତିକ ଥରେ କମ୍ପୁଥିଲା ରାବଣ ଚାଲିଗଲାବେଳେ, ଦୁର୍ଯ୍ୟୋଧନ ପାଦ ପକେଇଲାବେଳେ, ମହିଷାସୁର ଗର୍ଜନ କରୁଥିଲାବେଳେ । ଆଉ ଏଇ କେଇବର୍ଷ ତଳେ ଥରି ଉଠୁଥିଲା ପୃଥ୍ୱୀ ମୁସୋଲିନ୍‌ ଏବଂ ହିଟ୍‌ଲରଙ୍କ ଚାଲିରେ । ଅଥଚ କଣ ହେଲା ସେମାନଙ୍କ ପରିଣତି । ଇମିତି ଯିଏ ଚାଲେ ସେ ଏଣିକି ତେଣିକି ଅନାଏ । କେଉଁଠି ଭଲ ଚକଟି ଦେଖିଲେ ସେଇଠି ତାର ଆଖି ଲାଗିଯାଏ । ତାକୁ ନେଇଯିବାକୁ ମନକରେ । ଏଇ ଯେମିତି ଦୁର୍ଗାଙ୍କ ମୋହିନୀ ରୂପକୁ ଦେଖି ଶୁମ୍ଭ ନିଶୁମ୍ଭ ମନ କଲେ, ମହିଷାସୁର ବି ମନକଲା । ଦୁର୍ଯ୍ୟୋଧନ ମଧ୍ୟ ଡାକିଲା ଦ୍ରୌପଦୀକୁ ତା' ଜଙ୍ଘ ଉପରେ ବସିବା ପାଇଁ । ଶେଷକୁ ତା' ଚୁଟିକୁ ଧରି ଘୋଷାରିଲା ଦୁଃଶାସନ । ରାଜସଭାଟାରେ ତାକୁ ଲଙ୍ଗଳା କଲା । ଶୁମ୍ଭ ନିଶୁମ୍ଭ ମହିଷାସୁର ଦୁର୍ଯ୍ୟୋଧନ ଦୁଃଶାସନ ସମସ୍ତେ ଡହଳ ବିକଳ ହୋଇ ମଲେ । କାହାରି ଫଟାଣି ରହିଲା ନାଇ । ଏଗୁଡ଼ାକୁ ଯେତେ ବୁଝାଇଲେ ବି ବୁଝନ୍ତି ନାଇ ଜମା । ଏଗୁଡ଼ାଙ୍କ ଘୋଡ଼ ତଳକୁ ତଳକୁ । ପାଣି ପିଇଯାଉଥିବେ । ଶିଙ୍ଗିବୁଡ଼ା ଦେଉଥିବେ । ବୁଡ଼ିଯାଉଥିବେ । ତଥାପି ଏ ଗୁଡ଼ାଙ୍କର ଚେତନା ଫେରେ ନାଇ ।

କଏ ବୁଝିବ ? କାହାକୁ କଏ ବୁଝାଇବ ? ବୁଝିବାବାଲା ନାହାନ୍ତି କି ବୁଝାଇବାବାଲା ମଧ୍ୟ ନାହାନ୍ତି । ସଭିଏଁ ଏକା ନାଉର ମଞ୍ଜି । ଯେମିତି ହେଲେ ସିଂହାସନଟା ଲକ୍ଷ୍ୟ । ସିଂହାସନ ପାଇଗଲେ ତେଣିକି ତ ତମର ସବୁ ରୋଡ଼ାଣିଆ

ହୋଇଯିବେ । କଏ କହିବ ସିଂହାସନ ଉପରେ ? ସିଂହାସନରେ ଯିଏ ବସିଯିବ ତାର ଗୁଣଗୁଣ ମାଫ୍ । ଯିଏ ଯାହା କଲେ କି କହିଲେ ସେଇଟା ହୋଇଯିବ ଅନ୍ୟମାନଙ୍କର ଆଦର୍ଶ । ସିଂହାସନ ମଣିଷ କିଛି ବୁଝେନାହିଁ । ସବୁ ବୁଝିଛି ବୋଲି ଅଭିନୟ କରେ । ଏଇ ଅଭିନୟଟା ଆଜି ଫେସନ ହୋଇଯାଇଛି । ଯିଏ ଯେତେ ଅଭିନୟ କରିପାରିବ ସିଏ ସେତେ ମାତବର ହୋଇଯିବ । ଯାବତ ଦୁର୍ନୀତି କର କି ବ୍ୟଭିଚାର କର—ସେଥିରେ କିଛି ଯାଏ ଆସେ ନାହିଁ । ସେଇଟା ତମର ଗୁଣ ହୋଇଯିବ । ସେଇ ଗୁଣକୁ ଲୋକେ ଗୁଣି ହେବେ । ତମର ବାହାବା କରିବେ । କାହିଁକି ନା ଲୋକଙ୍କୁ ସେଇ କରିବାପାଇଁ ମଉକା ମିଳିବ । ଲୋକେ କିଛି ବୁଝନ୍ତି ନାହିଁ । ଭଲୁଆ ପରି ତମ ମୁହଁକୁ ଚାହିଁ ରହନ୍ତି । ତମେ ଯାହା କହୁଥିବ ତାକୁ ଖାଲି ଗିଳି ଯାଉଥିବେ । ହାତ ଟେକି ନାଚୁଥିବେ ଚୈତନ୍ୟ ମୁଦ୍ରାରେ । ସତେ ଯେମିତି ସେମାନେ ଗୋଟିଏ କାଠର କଣ୍ଢେଇ । ତମେ ଅଦୃଶ୍ୟ ରଜ୍ଜୁ ଧରି ନଚାଉଥିବ । ଯେମିତି ନଚେଇବ ସେମିତି ନାଚିବେ । ସେମାନଙ୍କୁ ସଜେଇ ବଡ଼ ବଡ଼ ଆସରରେ ନଚେଇବେ, ବାହାବା କରିବେ ବଡ଼ବଡ଼ିଆଏ । ତମେସବୁ କୁଆଡ଼େ ଆମ ଦେଶର ସଂସ୍କୃତିର ବାହକ ଆଉ ଧାରକ । ତମକୁ ଦେଖି ବଡ଼ ବଡ଼ମାନେ ହସୁଥିବେ, କୌତୁକ କରୁଥିବେ । ବାହାରର ବଡ଼ ପଣ୍ଡାମାନେ ତମକୁ ଦେଖି ଭାବୁଥିବେ ତମର କିଛି ଦୁଃଖ ନାହିଁ । ହସି ହସି ନାଚି ନାଚି ଜୀବନକୁ ଉପଭୋଗ କରୁଛ । ଭିତରଟା ଯେ ତମର ପୋଡ଼ି ପାଉଁଶ ହୋଇଯାଇଛି, ସେକଥା କେହି ବୁଝନ୍ତି ନାହିଁ ।

ସବୁଆଡ଼େ ଭେଜାଲ । ସବୁଆଡ଼େ ଗୃହିଁ ଜଳକା । ଏବେ ଧର୍ମକୁ ନେଇ ଚାଲିଛି ଭେଜାଲ । କଏ କହୁଛି ଧର୍ମକୁ ରାଜନୀତିରେ ପୂରାଇବା ମନା । ଧର୍ମଟା ନିହାତି ଖତରନାକ ଜିନିଷ; ନିହାତି ଫାଲ୍ତୁ ଚିଜ । ଏଇଟାକୁ ଯୁଆଡ଼େ ପୁରାଇବ ସିଆଡ଼େ ଲାଗିବ ପାଲି । ଏଇଟା ହନୁମାନ ଲାଙ୍ଗୁଡ଼ରେ ନିଆଁ ପରି । ବାଡ଼େଇ ବାଡ଼େଇ ଏଇଟାକୁ ନିକାଲି ଦେବା ଭଲ । ଆଉ କଏ କହୁଛି ଏଗୁଡ଼ାକ ଯିଏ କହୁଛି ସିଏ ଧର୍ମଛଡ଼ା । ଏଇମାନଙ୍କର ନୀତି ନାହିଁ କି ଆଦର୍ଶ ନାହିଁ । ଏମାନେ ସମୁଦ୍ରକୁ ଶୋଷି ଦେଇପାରନ୍ତି । ଶ୍ୟାମଳ ଧରିତ୍ରୀକୁ ମରୁଭୂମି କରିଦେଇ ପାରନ୍ତି । ଅଶୋକବନରେ ସୀତାଙ୍କ ପରି ଧର୍ମ କାନ୍ଦୁଛି । କଏ ତାକୁ ଉଦ୍ଧାର କରିବ ? କଏ ତା ଆଖିରୁ ପୋଛି ଦେବ ଲୁହ ? ଧର୍ମ ସମ୍ପ୍ରଦାୟ ନୁହେଁ କି ଗୋଡ଼ିମାଟି ନୁହେଁ । ଧର୍ମକୁ ନ ବୁଝି ରାଜନୀତିକୁ ବୁଝୁଥିବାରୁ (ଠିକ୍ ବୁଝୁଛି କି ନାହିଁ କଏ ଜାଣେ), ଦଳକୁ ମାରି ଦଳକୁ ତାରୁଥିବାରୁ, ମିଛରେ ମିଛରେ ଆଖିରୁ ଲୁହ ଗଡ଼େଇ ତୋଳା କୋଳା ହେଉଥିବାରୁ, କାଳନେମୀ ପରି ଛଳ-ବାବାଜୀ ସାଜୁଥିବାରୁ ଯାବତ ଅନର୍ଥ ହେଉଛି । ଧର୍ମନିରପେକ୍ଷତା କଥା କହୁଛ । ଅଥଚ ବୁଝି ହେଉନାହିଁ ସେଇଟା କଣ । କାନକୁ ମଧୁରିଆ ଶୁଭୁଛି । ଭିତରଟା କଳା କି ଧଳା ଜାଣିହେଉ ନାହିଁ ।

ତୁରନ୍ତ ତୁଷ୍ଟି ହୋଇଯାଉଚି ଜୀବନର ବେଦ । ଏଇଥିପାଇଁ ଧର୍ମ ଧର୍ମ ଭିତରେ ଯୁଦ୍ଧ । କିଏ ହୋଇଯାଉଚି ଗୁରୁ, କିଏ ପୁଣି ହେଉଚି ଲଘୁ । କିଏ ମୁକ୍ତ, କିଏ ସଂରକ୍ଷିତ । ଗୁରୁ ଆଉ ଲଘୁ, ଆଉ ସଂରକ୍ଷିତ ଭିତରେ ଛକାପଞ୍ଝା ଖେଳ । ଆରେ ବାବା ପ୍ରଥମେ ତ ଆମେ ସମସ୍ତେ ମଣିଷ । ଟିକିଏ ତଳେଇ କରି ବିଚାର କର । ମଣିଷପଣିଆ ଠିକ୍ ହୋଇଗଲେ ଇଏ ଛକାପଞ୍ଝା କଣ ରହିବ କି ? ଏଇ ମଣିଷ-ପଣିଆ ତ ଲୋପ ପାଇଯାଉଚି । ସବୁ କଥାରେ ଲାଭ—କେବଳ କାରସାଦି । ଏଇଟାକୁ ତମେ କହୁଚ କୂଟନୀତି । କଣ ଲୋଡ଼ା ଏଇ କୂଟନୀତିରୁ ? ଇଏ ତ ଖାଲି ଜଣକୁ ମାରି ଆଉ ଜଣକୁ ତାରିବା, ଦଳକୁ ପକେଇ ଆଉ ଦଳକୁ ଉଠେଇବା । ଯାହାର କିଛି ନଥାଉ, ତାକୁ ଉଠେଇବା ହେଲା କୂଟନୀତିର ଗୋଟାଏ ବଡ଼ିଆ ଗୁଣ । ଏଇ ଗୁଣଟା କେଇଦିନ ? କଣ କିଏ ନେଇଯିବ ଏଇ ସଂସାରରୁ । କେବଳ ଯାହା ଅଡ଼େଇଦିନ ପାଇଁ ମନଫୁଲାଣିଆ । ଚତୁର ଲୋକେ ତମକୁ ତୋଷାମଦ କରିବେ । ତମର ବାହାବା କହିବେ । ତମେ ବେଲୁନ ପରି ଫୁଲି ଉଠିବ । ହୁସିଆର୍, ବେଶୀ ଫୁଲିବ ନାଇଁଟି । ଫୁଟିଯିବା ସାର ହେବ ।

କିଏ କେତେ ଫୁଲୁଚ ଫୁଲ । ତାହାକୁ କିଛି କହିବାର ନାଇ । କେହି କାହା କଥା ଶୁଣୁନାଇ କି ହେଜୁନାଇ । ମଉକା ପଡ଼ିଚି । ବାଗ ଉଣ୍ଡି ମାରିନେଇ ଗଲେ ହେଲା । ଯିଏ ମାରିପାରୁ ନାଇ ସିଏ ଖାଲି ପାଟି କରୁଚି । ତାର କଣ ଇଚ୍ଛା ନାଇ କି ? ହେଲେ ସୁଯୋଗ ପଉଟୁ ନାଇ । ଯିଏ ସୁଯୋଗ ପାଉଚି, ସିଏ ରାଜା ବନିଯାଉଚି । ତାକୁ ସବୁର ଗୁରିଆଙ୍ଗୁଳି ଦେଖାଯାଉଚି । ଏକାଥରେ ଚଉଦ କାଉ-କଂସାରେ ହାତ ଭର୍ତ୍ତି କରିଦେଉଚି । ତେଣିକି ହାତ ଫୁଟୁକା ହେଉ କି ନ ହେଉ । ଏଇଆ ସବୁଆଡ଼େ ଚାଲିଚି । ଦେଶ ସେବା, ଲୋକ ସେବା ଗୋଟାଏ ନାଁ । ଆତ୍ମସେବା ମୁଖ୍ୟ । ଆରେ ବାବା ଦେଶସେବା କରିବା ପାଇଁ, ଜନତା ଜନାର୍ଦ୍ଦନଙ୍କ ସେବା କରିବା ପାଇଁ ଯଦି ତମ ମନ ସକ ସକ ହେଉଛି; କରୁନା । କେତେ କିସମର ବାଟ ପଡ଼ିଚି । ଗୋଟାଏ ହେଲେ ବାଛିନିଅ । ଗାଦି ପାଇବାକୁ ଏତେ ବିକଳ କାହିଁକି ? ଗାଦି ପାଇଗଲେ କଣ ଦେଶସେବାଟା ହୋଇଯିବ କି ? ଗାଦି ହୋଇଗଲେ ଗଦି ଦରକାର, ଗଦି ହୋଇଗଲେ ଆରାମ ଦରକାର—ତା'ପରେ ତ ଇନ୍ଦ୍ରସଭା, ଅପ୍ସରା, ଗନ୍ଧର୍ବ, ସୋମରସ, କେତେ କେତେ ଷଣ୍ଢଙ୍କର ସମାବେଶ । ତମ ତୂଣୀର ଭିତରୁ ବଡ଼ିଆ ବଡ଼ିଆ ବାଣ ବାହାର କରିବ । ସାଏଁ ସାଏଁ କରି ଛୁଟିଦେବ । ଦେଶର ଏମୁଣ୍ଡରୁ ସେମୁଣ୍ଡ ଯାଏ ବୁଲିଆସିବ । ସେଇ ବାଣ ପାଖରେ ସମସ୍ତେ ନତମସ୍ତକ ହୋଇଯିବେ । ତମେ ମଣ୍ଡଳ ବାଣ ମାର କି ମନ୍ଦିର-ମସ୍‌ଜିଦ ବାଣ ମାର । ସବୁ ସେଇ ଗୋଟିଏ କଥା । ଏଇଟା ଦେଶର କିଛି ମଙ୍ଗଳ କରୁନାଇ । ତମର କଲ୍ୟାଣ କରୁଚି, ମଙ୍ଗଳ କରୁଚି । ତମ କାରସାଦି

ଭିତରକୁ କିଏ ପଶିପାରିବ ? ତମର ଦ୍ରୋଣାଚାର୍ଯ୍ୟ ବ୍ୟୂହ ଭିତରକୁ କିଏ ଯାଇ-ପାରିବ ? ଅଭିମନ୍ୟୁ ପରି ଧସେଇ ପଶିଗଲେ ତମେ ସପ୍ତରଥୀ ମିଳି ମାରିଦେବ । ତମେ ଇତିହାସକୁ ବଦଳାଇ ଦେଇପାର, ନୂଆ ଇତିହାସ ଲେଖେଇପାର । ତମେ କାହାକୁ ଆକମଣକାରୀ କହିପାର, ନ କହିପାର । ତମକୁ ସୁହାଇଲା ଭଳିଆ ମଧୁରିଆ କଥା କହିପାର । ତମକୁ ହେମତ ଦେବାକୁ ବୁଦ୍ଧିଜୀବୀଏ ଅଛନ୍ତି । ସେମାନଙ୍କର କଣ କିଛି ଯାଏ ଆସେ ! ବୁଦ୍ଧିକୁ ପୁଞ୍ଜିକରି ସେମାନେ ଖେଳ ଲଗେଇ ଦିଅନ୍ତି । ସିଂହାସନକୁ ଆରେଇଲା ଭଳିଆ କଥା କହନ୍ତି । ଚେତଣିକ ତ ସେମାନଙ୍କର ପୁଷମାସ । ଗୋଟିଏ କଥା ସତ ହୋଇଯାଉଚି ଯେ ମିଛ ସପକ୍ଷରେ ଯେତେ କହିବ ସେତେ ଭଲ । ମିଛ ନ କହିପାରିବ ତ ନେତା ହୋଇପାରିବ ନାହିଁ । ପାଦେ ହେଲେ ବାଟ ଚାଲିପାରିବ ନାହିଁ । ମିଛଟା କେତେ ଉପକାରିଆ ବନ୍ଧୁ ନୁହେଁ କହିଲେ ? ତମେ ଗରିବଙ୍କ ଉନ୍ନତି ଚାହୁଁଛ, ସବୁ ଜାତିଙ୍କୁ ସମାନ ବରୁଛ, ସବୁ ଧର୍ମକୁ ସମାନ ଗୁରୁତ୍ୱ ଦେଉଛ—ଏଇଟା କଣ ସତ୍ୟ ? ନା ତାହା ମିଛ ତମେ ଅବା ଜାଣିଥିବ । ଆମେ ଭକୁଆଯାକ କିଛି ନ ବୁଝି ନ ଶୁଝି ହଣାହଣି ହେଉଛୁ । ତମେ ସବୁ ପାଟି କରୁଛ—ଆଉ ଆଉ, ସେତିକ ଆଉ; ବହୁତ ହୋଇଗଲାଣି । ଖତ ଖତ କରିଦେଲେ, ସାନବଡ଼ କରିଦେଲେ, ଜାତି ଅଜାତି ଭେଦ ସୃଷ୍ଟି କରିଦେଲେ, ଲଘୁ ଗୁରୁ କରିଦେଲେ ଫାଟ ଯୋଡ଼ି ହୋଇଯାଏ ନାହିଁ । ଭିତରେ ଭିତରେ ଗୋଟାଏ ଭୟଙ୍କର ବାରୁଦସ୍ତୂପ ଜମାଟ ବାନ୍ଧିଯାଏ । କେତେବେଳେ ଯେ ସେଥିରେ ନିଆଁ ଧରିବ କିଏ ଜାଣେ ?

ରାଷ୍ଟ୍ର ତାର ରାଷ୍ଟ୍ର ବାଟରେ ଯାଉ । ତମେ ରାଷ୍ଟ୍ରକୁ ନେଇ ଯାହା କରୁଚ କର । ସବୁକଥାକୁ ରାଷ୍ଟ୍ରର ଆଯୁତ୍ତ କରିଦିଅନା । ଏବେ ସମାଜକୁ, ମଣିଷକୁ, ଧର୍ମକୁ ଟୋଟାପଣ ରାଷ୍ଟ୍ର ଗିଳିବାକୁ ବସିଛି । ଏଇଟା ଶୁଭ ସୂଚନା ନୁହେଁ । ଅଥଚ ଆମେ ପିଅଣିଆଯାକ ସ୍ୱପ୍ନ-ମଣିଷ ସାଜିଛୁ । ମଣିଷକୁ ମାଡ଼ିବସୁଛି ରାଷ୍ଟ୍ର ପଥର ପରି । ସେଥିରୁ ଆଉ ରକ୍ଷା ବାହାରୁ ନାହିଁ । ତାର ଭିତରେ ମୋଡ଼ିମାଡ଼ି ହୋଇ ରହି-ଯାଉଚି । ଆଉ ରାଷ୍ଟ୍ର ଶକ୍ତିକୁ ଯିଏ ହାତମୁଠାରେ ରଖୁଛି ସିଏ ସବୁଠାରୁ ସୁବିଧାରେ ରହିଯାଉଛି । ହାୟ ହାୟ, ଇମିତିକା ଅବସ୍ଥା ଆଉ କେତେକାଳ ଚାଲିବ ? ସବୁଠି ତ ଲଢ଼େଇ । ଜମିରେ ବାଡ଼ିରେ ଲଢ଼େଇ । ଘରେ ବାହାରେ ଲଢ଼େଇ । ରାଜନୀତିରେ ଲଢ଼େଇ, ଧର୍ମରେ ଧର୍ମରେ ଲଢ଼େଇ, କଳା ଆଉ ସାହିତ୍ୟରେ ଲଢ଼େଇ, ଗୋଲମରିଚରେ ଲଢ଼େଇ । ଏଇ ଲଢ଼େଇ ଭିତରେ ଗୋଟାଏ କଳାମୁହାଁ 'ମୁଁ' ଚକ୍କର ଖାଉଛି । ସବୁଆଡ଼କୁ ଧସେଇ ପଶି ଯାଉଛି । ମଣିଷ-ଗୁଡ଼ାକୁ ପାଗଳ କରିଦେଉଛି । ସମସ୍ତେ ହୋଇଯାଉଛନ୍ତି ଯଦୁବଂଶିଆଙ୍କ ପରି । କୋକୁଆକୁ ଗୋଡ଼େଇ ଗୋଡ଼େଇ କସ୍ତାନ୍ତି । ମୂନେ ମୂନେ ପିଇଦେଇ ସମସ୍ତେ

ମସ୍‌ଗୁଲ । ତାପରେ ତ ଶାଳ୍ ମାଳ ମାଳ ଶବ । ତମକୁ କିଏ ଆଉ ରକ୍ଷା କରିବ ? ରକ୍ଷାକାରୀଏ ତମର ଏ ଅବସ୍ଥା ଦେଖୁଥିବେ ଲୁଚି ଲୁଚି, ଶିଆଳି ଲତାରେ ଶୋଇ ଶୋଇ । ସିଏ ଏବେ କୋଉ ରକ୍ଷା ପାଇଯିବେ କି ? ପଛେ ପଛେ ତ ଘୂରିବୁଲୁଚି ତାଙ୍କ ଶବର ।

ଏଥର ଟିକେ ହେଜ । ଭଲକରି ହେଜ । ତମେ ବେକକ ପାଣିରୁ ଯାଇ ମୁଣ୍ଡକ ପାଣିରେ ପଶିଗଲଣି । ତମ ପାଟି, କାନ, ନାକ ଦେଇ ପାଣି ପଶି ଗଲଣି । ତମେ ଆଉ ନିଃଶ୍ୱାସ ନେଇପାରୁନ । ତମେ ବୁଡ଼ି ଯାଉଛ । ତମ ଗୋଡ଼ ତଳକୁ ତଳକୁ ଖସିଯାଉଛି । ତମ ମୁଣ୍ଡ ଉପରେ ପାଣି ଚଢ଼ିଯାଉଛି । ତମକୁ ବୁଡ଼େଇ ଦେବାପାଇଁ ବାହାରେ ସମସ୍ତେ ଛକି ବସିଛନ୍ତି । ତମେ ପଛେ ବୁଡ଼ୁଛ ବୁଡ଼, ସାରା ଦେଶଟାକୁ ବୁଡ଼ାଇ ଦିଅନା । ଏତିକି ହେଲେ ମନ ଭିତରେ ପଶ । ହଉ, ବହୁତ ହୋଇଗଲଣି । ଆଜି ଏତିକି ଥାଉ ।



# କହିବାକୁ ଲାଜ (୧)

ସବୁ କଥା କହି ହୁଏ ନାଇ । ସବୁ କଥା ଦେଖେଇ ହୁଏ ନାଇ । କହି ଦେଲେ କଥା ସରିଲା । ପେଟ ଭିତରେ ଅଇ ଉଠେଇଲେ, ବାନ୍ତି କରିବାକୁ ହେବ । ବାନ୍ତି ନ କଲାଯାଏ ଭଲ ଲାଗିବ ନାଇ ଜମା । କଳାହାଣ୍ଡିଆ ମେଘ ଥମ୍ ଥମ୍ ହୋଇ ଉଠେଇ ଆସିଲେ ଗର୍ଜନ ଘୁଡ଼ୁଡ଼ି । ଘୁଡ଼ି ଚମକେଇ ଦିଏ । ଲମ୍ବ ଲମ୍ବ ନାଲିଆ ଜିଭରେ ଚାଟି ଦେଇଯାଏ ଆକାଶର ଦେହକୁ । ବର୍ଷିଗଲେ ମନ ସ୍ୱାଦ ମେଣ୍ଟିଯାଏ । ଆକାଶ ନିର୍ମଳ ହୋଇଯାଏ । ସେଇମିତି ଏଇ କଥା । ନ କହିଲେ ଭିତରଟା ଆଉଟୁ ପାଉଟୁ ହେଉଥାଏ । କୌଣସି କାମରେ ମନ ଲାଗେ ନାଇ । କହିବ କହିବ ହେଉଥାଏ ମଣିଷ । କହିପାରେ ନାଇ । କାଳେ ବେଠଉରିଆ ହୋଇଯିବ । ତେଣିକି ଆଉ ରକ୍ଷା ମିଳିବ ନାଇ । ତିନିପୁରେ ଠାବ ମିଳିବ ନାଇ । ଯେଉଁଠି ଥିଲେ ବି ଖୋଜି ବାହାର କରି ଆଣିବେ । ଦେବଲୋକର ଶର ଘୂରି ବୁଲିବ । ସିନ୍ଦୂର ଲଗେଇ ଦେଇଯିବ ସଭିଙ୍କ ମଥାରେ । ଦାଗ ଦେଇଯିବ କିଏ କଣ ? ସତ୍ୟକୁ ବାହାର କରିଦେବ । ନଖ କୋଣରେ ଲୁଚିଥିଲେ ବି ବାହାର କରି ଆଣିବ ।

କହିବାକୁ ହେବ କଥା । ମଣିଷ କହିବ ନାଇ ତ ଆଉ କିଏ କହିବ ? କହିଆସିଛି ମଣିଷ ଅନାଦି କାଳରୁ । ଇମିତି କହୁଥିବ । ମଣିଷଜାତି ଥିଲା ପର୍ଯ୍ୟନ୍ତ । ମଣିଷର ଧାର ଛିଡ଼େ ନାଇ । କଥାର ଧାର ମଧ୍ୟ ଛିଣ୍ଡେ ନାଇ । କଥା ଚାଲେ ଏ କାଳରୁ ସେ କାଳକୁ । ମୋଡ଼ ଦେଖିଲେ ବଙ୍କେଇଯାଏ । ନୂଆ ଧାରଟିଏ ସୃଷ୍ଟି ହୋଇଯାଏ । ଗୋଟିଏ ଧାରରୁ କେଜାଣି କେତେ ଧାରା-ଉପଧାରା-ଶାଖା ଧାରା । ମାଜିଦେଲେ ସୂତା ସରୁ ହୋଇଯାଏ । ମୋଟ ହୋଇଯାଏ କଥା । କଅଁଳ ଯାଏ କେତେ ନାଇ କେତେ ପତର । ଖୋଜିଲାବେଳକୁ ମୂଳ କଥା କୁଆଡ଼େ ମିଳେଇ ଯାଇଥାଏ । ଯାହାକୁ ପଚାରିଲେ ମୂଳ କଥାଟି କଅଣ, କେହି କହି ପାରନ୍ତି ନାଇ । ଭକୁଆ ହୋଇ ଏଣିକି ତେଣିକି ଚାହାଁନ୍ତି । ଧୋବାର ଶଚୀ ନାମକ ଗଧଟିଏ ମରିଗଲା । ସେ କାନ୍ଦି କାନ୍ଦି ଲଣ୍ଡା ହୋଇପଡ଼ିଲା । ଗଧକଥା କେହି ପଚାରିଲେ ନାଇ । କେବଳ ଶଚୀ ନାଁଟା ମନେ ରହିଗଲା । କାରଣ କେହି ଖୋଜିଲେ ନାଇ । ରାଇଜ ସାରା ସମସ୍ତେ ଲଣ୍ଡା ହୋଇଗଲେ । ଶେଷକୁ ରଜା ବି ଲଣ୍ଡା ହୋଇ ପଡ଼ିଲେ । ସ୍ୱୟଂ ଦେବରାଜଙ୍କ ପତ୍ନୀ ମରିଗଲେ—ସିଏ ଲଣ୍ଡା ନ ହେବ କେମିତି ?

ଲିଷ୍ଟା ନ ହେଲେ ତାଙ୍କୁ ଲୋକେ କଣ କହିବେ ? ଛି ଛାକର କରିବେ । ତାଙ୍କ ବାକ୍‌ସଟା ଖାଲି ପଡ଼ିଯିବ ।

ଏଇମିତ ସବୁ କଥା । କାରଣ କିଏ ଖୋଜିବ ? ଏତେ କଷ୍ଟ କରିବ କାହିଁକି ? କାରଣ ଖୋଜୁ ଖୋଜୁ ଘୁଞ୍ଚୁ ଘୁଞ୍ଚୁ ଯାଇଁ ମଙ୍ଗଳପୁର ଧରିଥିବ । କାରଣ ଖୋଜିଲେ କାର୍ଯ୍ୟକୁ ଧରିବାକୁ ହେବ । କାର୍ଯ୍ୟକାରଣ ସମ୍ପର୍କ ବୁଝିବାକୁ ହେଲେ କାଳକ୍ରମେ ବିବରଣୀ ଜାଣିବାକୁ ହେବ । ଏତେ କଥା କରି କୋଉ ସବୁକାଳିଆ ସିଦ୍ଧାନ୍ତଟିଏ ଆସିଯିବ ଯେ ! ସିଦ୍ଧାନ୍ତ ପରି ମନେ ହେଉଥିବ, ପୁଣି ମନେ ହେଉ ନ ଥିବ । ସମସ୍ତ ବଦଳି ବଦଳି ଯାଉଥିବ । ସିଦ୍ଧାନ୍ତ ଭିତରୁ ଆଉ ଗୋଟାଏ ସିଦ୍ଧାନ୍ତ ବାହାରୁଥିବ । ସାପ କାତି ଛାଡ଼ୁଥିବ । ପୁଣି ନୂଆ କାତି ବାହାରୁଥିବ । ସିଦ୍ଧାନ୍ତ ବଦଳି ଯାଉଥିବ । ନୂଆ ନୂଆ ଜ୍ଞାନ ଉଦ୍ଭବ ହଉଥିବ । ପୁରୁଣା ଆଉ ଭଲ ଲାଗୁ ନଥିବ । ନୂଆ ପ୍ରତି ଆଗ୍ରହ ସୃଷ୍ଟି ହେଉଥିବ । ଯେତେ ସବୁ ପୁରୁଣା ସବୁ ମନେହେଉଥିବ ବାଜେ । ହସ ଲାଗୁଥିବ ପୁରୁଣାକୁ ଦେଖିଲେ । ବୁଢ଼ାବାପା ଆଣ୍ଠୁ ନ ଛୁଆଁ ଲୁଗା ଖଣ୍ଡେ ପିନ୍ଧି, ପିଠିରେ ବୁଜୁଲି ପକେଇ ଆସିଲେ ହସ ଲାଗୁଥିବ, ଲାଜ ଲାଗୁଥିବ, ପାଞ୍ଚ ଜଣଙ୍କ ପାଖରେ ଛିଡ଼ା ହେବାକୁ ସରମ ମାଡ଼ି ପଡ଼ୁଥିବ । ନୂଆ ଇମିତିଭାବେ ପୁରୁଣାକୁ ଦେଖିଲେ । ତଳ ବରଡ଼ା ଖସିଯାଏ । ଉପର ବରଡ଼ା ହସିଉଠେ । ମଝି ବରଡ଼ା କହେ ତା' ଦିନକାଳ ପାଖେଇ ଆସୁଚି । ଏଇ ନୂଆଟା ଯେ ପୁରୁଣା ହୋଇଯିବ, ତାକୁ ଲୋକେ ଛି ଛାକର କରିବେ —ଏକଥାଟା କମା ଧ୍ୟାନ ଭିତରକୁ ଆସେ ନାଇ ନୂଆ କାରେ ଯାବତ ଚେଲିକ— ଆଖି ଝଲସା ଚେଲିକ ।

ଆରେ ବାବା ଏଇ ଚେଲିକରୁ କଣ ମିଳିବ ? ଚେଲିକ ଛାଡ଼ । ଜାତିକୁ ଛାଡ଼, ଧର୍ମକୁ ଛାଡ଼, ବଂଶକୁ ଛାଡ଼ । ମଣିଷକୁ ଧର । ମଣିଷକୁ ଭଲ ପାଅ । ଅନ୍ତରରୁ ପରିଷ୍କାର କରିଦେଇ ମଣିଷକୁ ଆପଣେଇ ନିଅ । ଜାତି ଗୋଟାଏ କଣ ? ମଣିଷ ଯେତେବେଳେ ସୃଷ୍ଟି ହେଲା ସିଏ କଣ ଜାତି ନେଇ ଜନ୍ମ ହୋଇଥିଲା କି ? ମଣିଷର ବୃହତ୍‌ସ୍ୱାଦ ଖୋଜି ଖୋଜି ଗଲାବେଳକୁ ଆମ ପୁରାଣରେ ସ୍ୱାୟମ୍ଭୁବ ମନୁ ଆଉ ଶତରୂପାଙ୍କ ପାଖରେ ପହଞ୍ଚି ଯାଉ । ଆମେ ସବୁ ତାଙ୍କଠାରୁ ଜନ୍ମି ଆସିଛୁ । ତାହାହେଲେ ତ ଆମେ ଗୋଟିଏ ଜାତି—ମଣିଷ ଜାତି । ଗୁଣ କର୍ମକୁ ନେଇ ଆମେ ଅଲଗ ଅଲଗ ହୋଇଯାଉଛୁ । ସମସ୍ତେ ତ ସବୁ କାମ କରିବେ ନାଇ । ଭିନ୍ନ ଭିନ୍ନ କାମ ଭିନ୍ନ ଭିନ୍ନ ଲୋକେ କରିବେ । ସିଏ ଯେଉଁ କାମକୁ ଦକ୍ଷ ସେଇ କାମ ସେ କରିବ । ସବୁ କାମ ମିଳିଗଲେ ହୋଇଯାଏ ସମାଜର କାମ—ସୃଷ୍ଟିର କାମ । କୌଣସି କାମ ହେୟ ନୁହେଁ, ତୁଚ୍ଛ ନୁହେଁ । କାମକୁ

ନେଇ ମଣିଷ ଶ୍ରେଷ୍ଠ ହୋଇଯାଏ ନାଇ । ଶ୍ରେଷ୍ଠ ହୋଇଯାଏ ତାର ଗୌଣ ମନୋଭାବକୁ ନେଇ, ତାର ଅମଣିଷପଣିଆକୁ ନେଇ । ତେବେ ଏଇଟା ସତ୍ୟ ଯେ ମଣିଷର କାମର ପାହ୍ୟା ନେଇ ମଣିଷ ଜାତକୁ ବଡ଼ ବା ସାନ ମନେ କରେ । ଏଇ ଯେମିତି ରାଜା ମନ୍ତ୍ରୀ ସେନାପତି-କଟୁଆଳ । ଏବକୁ ରାଷ୍ଟ୍ରପତି-ପ୍ରଧାନମନ୍ତ୍ରୀ-ମନ୍ତ୍ରୀ ଉପମନ୍ତ୍ରୀ-ସଚିବ ତା'ତଳକୁ-ତା ତଳକୁ-ଥାକ ଥାକ ପାହାଚ ପାହାଚ । ଏଇ ପାହାଚ ଅନୁସାରେ ବଡ଼ ସାନ ବାରି ହୋଇ ପଡ଼ନ୍ତି । ଏଇଟା ନୂଆ ଜାତି । ରାଜନୀତି, ଚାକିରି ଓ ବ୍ୟବସାୟକୁ ନେଇ ନୂଆ ନୂଆ ଜାତି ସୃଷ୍ଟି ହୋଇଚାଲିଛି । କେଉଁଥିରେ ବଡ଼ ସାନ ନେଇ ଭେଦ ବି ଲାଗିରହିଛି । ଯାହାର ନେତାପଣିଆ ଯେତିକି ଟାଣ ସେତିକି ସେ ବଡ଼ ହୋଇଯାଉଛି । ଯାର ଚାକିରିଟା ଯେତିକି ମାଲ୍‌ଦାର ସେତିକି ସେ ଉଚ୍ଚ ହୋଇଯାଉଛି । ସେମିତି ଯାହାର ବ୍ୟବସାୟ ଟାଣ ସିଏ ବି ଟାଣ ହୋଇଯାଉଛି । ଆଉ ଯେଉଁମାନେ ଏଇ ଉଚ୍ଚ ସ୍ତରକୁ ଯାଇପାରୁ ନାହାନ୍ତି ସେଇମାନେ ଜାତି ଭିତରେ ବନ୍ଧ ବାଡ଼ାଯିଟା ହେଉଛନ୍ତି, ଖଣ୍ଡିଆ ଖାବଡ଼ା ହେଉଛନ୍ତି । ଏଇମାନଙ୍କ ସଂଖ୍ୟା ବେଶି । ଏମାନେ ମାଧିଆ ବାଇକ ଯୋଗିଆ ବାଇ । ଏଇମାନଙ୍କ ଭିତରେ ଫାଟ କରିଦେଇ ଉପରବାଲା ମଜା ଦେଖୁଛନ୍ତି । ବାହାରକୁ ସହାନୁଭୂତି ଓଜାଡ଼ି ପକାଉଛନ୍ତି । ଆଖିରୁ ଲୁହ ଗଡ଼େଇ ଦେଉଛନ୍ତି । ଉପରବାଲାଙ୍କର ଜାତି ନାଇ । ସେମାନେ ଗୋଟାଏ ଜାତି । ତଳବାଲା ଜାତି କୂପକ ପଙ୍କ ଭିତରେ ଲଟପଟ ହେଉଛନ୍ତି ।

ଏଇମାନଙ୍କୁ କୁହାଯାଉଛି—ତମ ଭିତରେ ଯିଏ ସାନଜାତି ଅଛ ଉପରକୁ ଉଠିଆସ । ବଡ଼ ଜାତିଙ୍କ କାନ୍ଧ ଉପରେ ଗୋଡ଼ ଦେଇ ଚଢ଼ିଆସ । ତମ ପାଇଁ ସ୍ୱତନ୍ତ୍ର ସୁବିଧା କରି ଦିଆଯାଉଚି । ତମ ପଛରେ ଆମେ ଅଛୁ । ଆମ ପଛରେ ତମେ ରୁହ । ତମେ ଥିଲେ ଆମେ ଟାଣ ହୋଇ ରହିବୁ । ହାତ ଆମ ଉପରେ ସୁନା କଳସ ଢାଳିବ । ଜାତିକି ଧର । ମନାକରୁ ନାଇ କେହି । ଫାଟ ସୃଷ୍ଟି ହଉନା ଜାତି ଭିତରେ । ନିର୍ଦ୍ଦିଷ୍ଟ ଜାତିକୁ ସ୍ୱତନ୍ତ୍ର ସୁବିଧା ଦେଇ ଅନ୍ୟ ଜାତି ଭିତରେ ଶତ୍ରୁ ବଢ଼ାନା । ଏଇ ଶତ୍ରୁ ଜାତି ଜାତି ଭିତରେ ଫାଟ ସୃଷ୍ଟି କରି-ଦେବ । ଯେତେ ତାଳି ପକେଇଲେ ଯୋଡ଼ିହେବ ନାଇ ଜମା । ସେତେବେଳକୁ ନେଡ଼ିଗୁଡ଼ କହୁଣିକୁ ବହି ଯାଇଥିବ । ବୁଦ୍ଧି ପଇଟିବ ନାଇ । ସେଇମିତି ଧର୍ମକୁ ନେଇ, ସମ୍ପ୍ରଦାୟକୁ ନେଇ ଭେଦ ସୃଷ୍ଟି କରିଦେଲେ ବଡ଼ ବଡ଼ ଫାଟ ହୋଇ-ଯିବ । ମଣିଷପଣିଆ ସୀତା ପଶିଯିବ ଫାଟ ଭିତରେ । ରାମଚନ୍ଦ୍ର ପରି ମୁଣ୍ଡ ବାଡ଼େଇ ହବ । କାରଣ ନଥାଇ ଅନନ୍ତ ଭୁଇଁକମ୍ପ ହୋଇଯିବ । ମାଟିତଳୁ ବାହାରି ଆସିବ ନାହିଁ । ସମ୍ଭାଳି ହବ ନାଇ ।

କଥା କହାନ୍ତି ହବ—ନୂଆଁ ନାହିଁକି ଜନ୍ମ—ଭୁଲିଯାଅ ନାହିଁକି ହେଉ । ଏଣେ ତା' ମୁଣ୍ଡରେ ଅଠା ବୋଳିବ । ସିଏ ଯା' ମୁଣ୍ଡରେ ଅଠା ବୋଳିବ । କେହୁ କାହାକୁ ଛାଡ଼ିବେ ନାହିଁ । କେହୁ ମଧ୍ୟ କାହାକୁ ଚପି ଯାଇପାରିବେ ନାହିଁ । କିଏ କଣ୍ଠୁ ଫଟେଇ ଗର୍ଜନ କରି କହୁବ ହଜାର ହଜାର ବରଷ ଧରି ଯେଉଁମାନଙ୍କୁ ଶୋଷଣ କରାଯାଇ ଆସିଛି ସେଇମାନଙ୍କୁ ଏବେ ସାମାଜିକ ନ୍ୟାୟ ଦିଆଯିବା ଉଚିତ୍, ସେମାନଙ୍କୁ ସ୍ୱତନ୍ତ୍ର ସୁବିଧା ଦେବା ଏକାନ୍ତ ଆବଶ୍ୟକ । ସେଇମାନେ ଅର୍ଥନୀତିକୁ ଚାବୁଡ଼ି ଉପରକୁ ଉଠି ଆସିଲେ ସାମାଜିକ ନ୍ୟାୟ ପ୍ରତିଷ୍ଠା ଲାଭ କରିଯିବ, ସମାନତା ଆସିଯିବ । ଭଲ କଥା । ଖୁବ୍ ଭଲ କଥା । ଭଲ ସ୍ଲୋଗାନଟିଏ ହୋଇଯିବ । ଭୁଲେଇ ଦେଇ ହେବ ସହଜରେ ତଳ ପାହାଚର ମଣିଷମାନଙ୍କୁ । ତେବେ କେଉଁ କାଳେ କିଏ ଶୋଷଣ କରୁଥିଲେ ବୋଲି ସେଇ ଦାୟିକା ଦେଇ ଏବର ଲୋକଙ୍କୁ ତଳକୁ ପକେଇ ଦେବ ନାହିଁକି ? ଏବର ଲୋକ କି ଦୋଷ କଲେ ଯେ ପୂର୍ବପୁରୁଷଙ୍କ ପାପକୁ ଭୋଗ କରିବେ ? ଆଗେ ତ ଥିଲା ରାଜତନ୍ତ୍ର । ଏବେ ତ ଗଣତନ୍ତ୍ର—ସମାଜବାଦ । ଏବେ ଆମେ ଅତୀତର ରାଜତନ୍ତ୍ରକୁ ଉଖାରିବା କାହିଁକି ? ଗଣତନ୍ତ୍ରରେ ତ ସଭିଏଁ ସମାନ । ସେଥିରେ କାହିଁକି ଗୋଟାଏ ଗୋଟାଏ ଜାତିକୁ ସ୍ୱାତନ୍ତ୍ର୍ୟ ଦିଆଯିବ । ସେଇମାନେ ବଡ଼ ଜାତିଙ୍କ ପରି ଅର୍ଥନୀତିର ତୁଙ୍ଗ ପାହାଚକୁ ଯାଇ ଅନ୍ୟମାନଙ୍କୁ ଶୋଷଣ କରିବେ ନାହିଁକି ? ବଡ଼ ଜାତିରେ ଜନମ ହୋଇଥିବା ମଣିଷର ଅପରାଧ କେଉଁଠି ? ସେମାନେ କଣ ଜାଣି ଜାଣି ସେଇ ଜାତିରେ ଜନମ ହେଲେ ? ବଡ଼ ଜାତିରେ ଜନମ ହୋଇଥିବା ସବୁ ମଣିଷଗୁଡ଼ାକ କଣ ଧନୀ ? ସେମାନଙ୍କ ଭିତରୁ କଣ କେହୁ ଦାରିଦ୍ର୍ୟର ସୀମାରେଖାର ବହୁ ନିମ୍ନରେ ନାହାନ୍ତି ? ସାନ ଜାତି ବୋଲି ଯେଉଁମାନଙ୍କୁ ବୁଝାଯାଉଛି ସେମାନଙ୍କ ଭିତରୁ କେହୁ କଣ କୁବେର ନାହାନ୍ତି ? ଉଚ୍ଚଜାତି ଭିତରୁ ଯେଉଁମାନେ ଖୁବ୍ ଉପରକୁ ଚାଲିଗଲେଣି ସେଇମାନେ କହୁଛନ୍ତି ଉଚ୍ଚଜାତିର ମଣିଷମାନେ କିଛି ସୁବିଧା ପାଇବା ଉଚିତ ନୁହେଁ । ସାନ ଜାତି ଭିତରୁ ଯେଉଁମାନେ ଉଚ୍ଚ ପାହାଚକୁ ଗଲେଣି ସେଇମାନେ କହୁଛନ୍ତି ସାନଜାତି କେବଳ ସବୁ ସୁଯୋଗ ପାଇବା ଉଚିତ୍ । ତଳେଇ କରି ଦେଖିଲେ ସେଇମାନେ ହିଁ ସୁବିଧା ପାଇବେ । ଉଚ୍ଚଜାତି, ବା ନିମ୍ନ ଜାତିର ମାସ୍ କିଛି ଉପକୃତ ହେଉ ନାହିଁ ।

ଉଚ୍ଚ ଜାତିକୁ ସବୁଥିରୁ ବଞ୍ଚିତ୍ କରିଦେଲେ ଶେଷକୁ ସେମାନେ ସର୍ବହରା ସ୍ଥାନକୁ ଓହ୍ଲାଇ ଯାଇଥିବେ । ଏଣେ ସାନ ଜାତି ଉପରକୁ ଉଠି ଯାଇଥିବେ । ଅର୍ଥନୀତିରେ ଦେଖାଦେବ ବିରାଟ ବୈଷମ୍ୟ । ଜାତି ଲୋପ ପାଇଯିବ ନାହିଁ । ମୁଣ୍ଡ ଟେକି ଉଠିବ ଜାତିଗତ ସଂଘର୍ଷ । ଏହୁ ସଂଘର୍ଷ ହେବ ବଞ୍ଚିବା ପାଇଁ ।

କେହି କେହି ପୁରାଣ ଶାସ୍ତ୍ରରୁ ଉଦାହରଣ ଦେଇ କହନ୍ତି ଯେ ଅତୀତରେ ଶୂଦ୍ରମାନଙ୍କ ଉପରେ ଅତ୍ୟାଚାର ହେଉଥିଲା । ରାମାୟଣର ସମ୍ବୁକ, ମହାଭାରତର ଏକଲବ୍ୟ—ଇମିତି କେତେ ଜଣ ଅତ୍ୟାଚାରିତଙ୍କ ଦୃଷ୍ଟାନ୍ତ ଦିଆଯାଇଥାଏ । ଅଥଚ ଏଇ ଅତ୍ୟାଚାରିତମାନେ ପୁରାଣ ପୃଷ୍ଠାରେ ଶୀର୍ଷ ସ୍ଥାନକୁ ଚାଲିଯାଇଛନ୍ତି । ପୁରାଣରେ ଜାତି ଅଛନ୍ତି; ଜାତି ଭେଦ ନାଇ । ରାଜା ହରିଶ୍ଚନ୍ଦ୍ର ଚଣ୍ଡାଳ ଘରେ ଖାଇଛନ୍ତି, ଚଣ୍ଡାଳର ସେବା କରିଛନ୍ତି । ବଶିଷ୍ଠ କୈବର୍ତ୍ତୀ କନ୍ୟା ଅରୁନ୍ଧତୀଙ୍କୁ ବାହା ହୋଇଛନ୍ତି । ଆମ ସାରଳା ଦାସ ତ ଅରୁନ୍ଧତୀଙ୍କୁ ଅମ୍ବିକା ଚଣ୍ଡାଳର କନ୍ୟା କରିଦେଇଛନ୍ତି । ରାମଚନ୍ଦ୍ର ମିତ୍ରତା ସ୍ଥାପନ କରିଛନ୍ତି ଶବର ସହିତ । ତା' ଘରେ ମଧ୍ୟ ସସ୍ତ୍ରୀକ ରହି ଆତିଥ୍ୟ ଲାଭ କରିଛନ୍ତି । ସେ ପୁଣି ଶବରୁଣୀର ଅଇଁଠା ଖାଇଛନ୍ତି । ଏଥିରୁ ଏତିକି ଜଣାଯାଏ ଯେ ଜାତି ଜାତି ଭିତରେ ଭେଦ ନଥିଲା । ବଡ଼ ଜାତିର ମଣିଷ ସାନ ଜାତି ଘରେ ବାହା ହେଉଥିଲା । ସବୁ ଜାତି ଭିତରେ ଥିଲା ମୈତ୍ରୀ ଓ ପ୍ରୀତି । ଆମ ସଂସ୍କୃତି ଓ ଆମ ବୁନିୟାଦ ଯେବେଠାରୁ ଭୁଷୁଡ଼ି ପଡ଼ିଲା ସେବେଠାରୁ ଆମେ ଜାତିକୁ ନେଇ ବାହାଦୁରୀ କାଢ଼ିଲୁ । ଆମ ଭିତରେ ସୃଷ୍ଟି ହୋଇଗଲା ଭେଦ । ମୋଗଲ ସମୟରୁ ଆମେ ରାଜାଙ୍କୁ ସ୍ତୁତି କରିବା ଆରମ୍ଭ କରିଦେଲୁ । ତୋଷାମୋଦ ଗୋଟିଏ କଳାରେ ପରିଣତ ହୋଇଗଲା । ରାଜାଙ୍କୁ ସନ୍ତୁଷ୍ଟ କରି ଆମେ ହାସଲ କଲୁ ସ୍ୱତନ୍ତ୍ର ସୁବିଧା । ଅର୍ଥହିଁ ହୋଇଗଲା ଆମର ନୂତନ ବୁନିୟାଦ । ଏଇ ଅର୍ଥ ହିଁ ଆମକୁ ଉଚ୍ଚ ଜାତି ଓ ନୀଚ ଜାତିରେ ଭାଗ ଭାଗ କରିଦେଲା । ଇଂରେଜ ଶାସନ କାଳକୁ ଏଇ ଜାତିପ୍ରଥାଟା ହୋଇଗଲା ଆହୁରି ଉତ୍କଟ । ସେକାଳର ରାଜାରାଜୁଡ଼ାମାନେ ଏଇ ପ୍ରଥାଟାକୁ ଆହୁରି କଡ଼ାକଡ଼ି କରିଦେଲେ । ଯିଏ ଚାକିରିବାକିରି କଲା ଦି'ପଇସା ହାତ ଚକ୍କଣ କଲା । ପଇସା ସଞ୍ଚି ଜମିବାଡ଼ି କଲା, ଗାଡ଼ିଘୋଡ଼ା କଲା । ତାର ଅର୍ଥ କୌଳିନ୍ୟ ପ୍ରକାଶ ପାଇଲା । କେହି କେହି ଜମିଦାର ହେଲେ । ଅର୍ଥ ଯୋଗୁ ସେଇମାନେ ହୋଇଗଲେ ବଡ଼ । ଯେଉଁମାନେ ଚାକିରି ପାଇଲେ ନାହିଁ, ବଣିଜ କରିପାରିଲେ ନାହିଁ, ସେମାନେ ଅର୍ଥନୀତି ଦୃଷ୍ଟିରୁ ତଳକୁ ଖସିଗଲେ । ତେଣୁ ବଡ଼ ଜାତି କହିଲେ ସମସ୍ତେ ମିଳି ସାନ ଜାତିଙ୍କୁ ଶୋଷଣ କରୁ ନ ଥିଲେ । ସୁବିଧାବାଦୀ ଉପଶ୍ରେଣୀ ଏଇଆ କରେ । ଏଇଟା ଜାତିର ଦୋଷ ନୁହେଁ; ମଣିଷର । ଏଇ ମଣିଷ ଗୋଟାଏ ଭିନ୍ନ ଉପାଦାନରେ ଗଢ଼ା । ଅର୍ଥ ବ୍ୟତୀତ ଦୁନିଆରେ ଆଉ କିଛି ସେ ଜାଣେ ନା ।

ଏଇ ଦେଖନ୍ତୁ—ବଡ଼ ଜାତିମାନେ କଣ ସୁବିଧା ପାଇଯାଉଛନ୍ତି କି ? ସାନ ଜାତିମାନେ କଣ ଉପରକୁ ଉଠିଯାଉଛନ୍ତି କି ? ଇଏ ସବୁ ସେଇ ସୁବିଧାବାଦୀ ଉପଶ୍ରେଣୀ ମଣିଷର ହାତ ସଫେଇ । ଉଭୟ ଜାତିରେ ଏଇ ମଣିଷମାନେ ଅଛନ୍ତି । ଯିଏ ସୁବିଧା ଚାହେଁ ସିଏ ଭାନୁମତୀ ପେଡ଼ି ଧରି କମିଆ ଦେଖାଏ ।

ଜମିଛି ଗୋଟାଏ ହାଦେଲୀ ବାଣ ମାରିଦିଏ ଯେ ଆକାଶ ହାଉଳ ହୋଇଯାଏ । ସଭିଏଁ ତଟସ୍ଥ ହୋଇ ଚାହିଁ ରହନ୍ତି ଆକାଶକୁ । ଯିଏ କମିଆ କରିଥାଏ ସିଏ ଭାବେ ତା' ଡରଙ୍ଗରେ ସବୁ ଡରିଗଲେ । ଏଣିକି ତାର ଜତାପଟ । ହଁ; ଜତାପଟ ହବ । ସିଂହାସନ ମଜଭୁତ ହୋଇଯିବ । ତେବେ ଏହା କେତେ କାଳ ? ସବୁଦିନେ ନୁହଁ କ୍ଷଣସ୍ଥ । ନୂଆ ବଂଶଧରମାନେ ପୁଣି ଉଠିବେ । ସ୍ୱାତନ୍ତ୍ର୍ୟ ଦିଅ ବୋଲି କହିବେ । କେତେ କାହାକୁ ଦେବ ? ଇମିତି କଲେ ଫାଟ ଯିବ ନାଇ । ଫାଟ ବଢ଼ିଯିବ । ଅସନ୍ତୋଷ ବୁଦ୍‌ବୁଦ ଉଠୁଥିବ । କେତେବେଳେ ହୁତ୍ କରି ଜଳି ଉଠିବ ।

ଜାତିକୁ ଗୁଡ଼ିଦିଅ ଭାଇ ଜାତିକୁ ଗୁଡ଼ିଦିଅ । ମଣିଷକୁ ଦେଖ । ମଣିଷକୁ ଭଲ ପାଅ । ନିଜେ ସୁବିଧାରେ ରହ, ନିଜ ବନ୍ଧୁବାନ୍ଧବଙ୍କୁ ସୁବିଧାରେ ରଖି, ଅନ୍ୟକୁ ଭଲପାଉଚ ବୋଲି ଅଭିନୟ କରନା । ଅନ୍ୟର ଦୁଃଖରେ କୁମ୍ଭୀର କାନ୍ଦଣା କାନ୍ଦନା । ନିଜର ଖାଲି ଲୋକେ ଯାହା କହିଲେ ତାକୁ ବେଦର ଗାର ମନେକରି ଅନ୍ୟର ଗୁଡ଼ି ଉପରେ ପଥର ଲଦି ଦିଅନା, ଅନ୍ୟର ତଣ୍ଟି କାଟନା । ଖଣ୍ଡେ ଆଧ କୁଆଡ଼େଇଙ୍କୁ ଧରି ଆଦର୍ଶ କଥା କୁହନା । ହୁଏତ କେହି କେହି ଶୁଣିବେ ତମ କଥା ସିଂହାସନକୁ ଉଦ୍ଧକରି । କହିବେ ନାଇ ମୁହଁରେ କେହି । ଠିକଣା ବେଳେ ବଦଳେଇ ଦେବେ । କଚ୍ଛିମ ହୋଇ ପିଠି ଦେଖେଇ ଦେବେ । ମନ୍ଦରଗିରିକୁ ପିଠିରେ ରଖି ସମୁଦ୍ର ମନ୍ଥନ କରିବେ । କେତେ ଜଣ ବାହାରି ଆସିବ—ସୁରା, ଝଲା, ମୋତି ମାଣିକ, ମୁକ୍ତା, ବୈଦୂର୍ଯ୍ୟ, ଲକ୍ଷ୍ମୀ, ଅପ୍‌ସରା, ହାତୀ, ଘୋଡ଼ା, ପାରିଜାତ, ଫୁଲ, ଚନ୍ଦ୍ର, ଅମୃତ । ଶେଷକୁ ବାହାରିବ କାଳକୂଟ ବିଷ । ସେଇ ବିଷକୁ ପିଇବ କିଏ ? କେହି କୁଆଡ଼େ ନଥିବେ । ଘୂରିଆଡ଼ ନଗ୍ନଟିଆ ଲାଗୁଥିବ ।

ଏବେ ହେଲେ ମଣିଷକୁ ଟିକେ ଆଖି ପକା । ପୋକମାଛି ପରି ସାଲୁବାଲୁ ହେଉଥିବା ମଣିଷକୁ ଟିକେ ଦେଖ । ଯିଏ ଖାଇବାକୁ ପାଉନାଇ, ପିନ୍ଧିବାକୁ ପାଉ-ନାଇ, ରହିବାକୁ ଥାନ ପାଉ ନାଇ—ସିଏ କେଉଁ ଜାତିର ? ତାର ଧର୍ମ କଣ ? ପରିଚୟ କଣ ? ସିଏ କଣ ବ୍ରାହ୍ମଣ ନା କ୍ଷତ୍ରିୟ ? ବୈଶ୍ୟ ନା ଶୂଦ୍ର ? ସିଏ ମଣିଷ—ସବୁହରା ମଣିଷ—ନ ଥିଲାବାଲା ମଣିଷ । ଏଇ ନଥିଲାବାଲାଙ୍କୁ ଦେଖ । ସେଇମାନଙ୍କ କଥା ଭାବ । ସେଇମାନଙ୍କୁ ସ୍ୱାତନ୍ତ୍ର୍ୟ ଦିଅ । ସେଇମାନଙ୍କୁ ଉଠାଅ । ଏଇ ନଥିଲାବାଲା ଉଠିଲେ ଥିଲାବାଲା ଆପେ ଆପେ ଖସି ଆସିବେ ଉଚପାହାଚରୁ । ନ ଖସି ଉପାୟ ନାଇ । ମଝିଆମଝି ଥାନରେ ମିଳିଯିବେ ସେମାନେ । ନହେଲେ ଥିଲାବାଲାମାନଙ୍କୁ ଖସେଇ ଅଣାଯାଉ ଏକାଥରେ ନଥିଲାବାଲା ସ୍ତରକୁ । ଆଇନ୍

ଜିନ୍ଦାବାଦ । ଏକାଥରେ ଖସି ଆସିବେ ଗୋଟାଏ ଜାଗାକୁ ସମସ୍ତେ । ସେଇଠୁ ଆରମ୍ଭ ହେବ ନୂଆଯାତ୍ରା—ମଣିଷର ଯାତ୍ରା, ସମାଜବାଦର ଯାତ୍ରା । ହବକ ଏଇ କଥା ? କେଜାଣି ? ସିଂହାସନ ଚହଲି ଉଠିବ । କେତେ କେତେ ଲୋକଙ୍କର ହାତଯୋଡ଼ା ଦଣ୍ଡବତ, କେତେ ହୁକୁମ, କେତେ ସେବକମାନଙ୍କର ଖଟଣି—ସବୁ କଣ ଭୁଲ ହୋଇଯିବ ? କୋଠାବାଡ଼ି, ଗାଡ଼ିଘୋଡ଼ା ସବୁ କଣ ସତକୁ ସତ ଛାଡ଼ି ଦେଇ-ହେବ ? ମିଛକଥା ଭାଇ ମିଛକଥା । କିଛି ଛାଡ଼ିହେବ ନାହିଁ । କେବଳ ସୁବିଧା ଓ ସୁଯୋଗ ପାଇଁ ଭୁଲେଇ ଦେବାକୁ ହେବ, ଆଇସିମନ୍ତ୍ରର କାଇସିମନ୍ତ୍ରର କହି ଝାଡ଼ି ଦେବାକୁ ହେବ । ଲୋକେ ଭୁଲିବେ, ମାତିବେ, ବୁଡ଼ିବେ । ତମେ କିନ୍ତୁ ରହିଥିବ ନିରାପଦ ଦୂରତାରେ । ତମେ ଖାଲି କହୁଥିବ । ଶୋଭାଯାତ୍ରାରେ ଯାଉଥିବ । ଫୁଲମାଳ ପିନ୍ଧୁଥିବ । ଜାତି ଭିତରେ ଫାଟ କରୁଥିବ । ଏକା ନାଇକୁ ଦୁ'ଖଣ୍ଡ କରୁଥିବ । ତମ ଆଗରେ ଦଳେ ଭକୁଆ ହୋଇ ତାଳି ମାରୁଥିବେ । ରଥ ଚାଲୁଥିବ । ଦଉଡ଼ି ଟାଣୁଥିବ । ରଥ ନଥିବ । ଦଉଡ଼ି ନଥିବ । ଦଉଡ଼ି ଥିବ । ରଥ ଥିବ । ହୋ ଭଗବେ ! ରଥ ଚାଲେ ଘୁଁ ···ଚକ ଚାଲେ ଘୁଁ ···ଯା' ମୁଣ୍ଡରେ···

ଛିଃ—ବାଜେ କଥା—କହିବାକୁ ଲାଜ ।



# କହିବାକୁ ଲାଜ (୨)

'କହିଲେ କୁଳ କୁଟୁମ୍ବକୁ ଲାଜ, ନ କହିଲେ କୁଳ ଭାସି ଯାଉଚି' । ଏଇ ଢଗଟା କଏ କେମିତି ବାହାର କରିଥିଲା କେଜାଣି, ହେଲେ କଥାଟା କିନ୍ତୁ ଶହେକୁ ଶହେ ସତ । ଏଥିରେ ଜମା ମିଶାମିଶି ନାଇ । ଅବଶ୍ୟ ଆଜିକାଲିକା ମିଶା ଯୁଗରେ ଖାଣ୍ଟି ଚିଜ ଯେମିତି ମିଳିବା କାଠିକର ପାଠ, ସେଇମିତି ଖାଣ୍ଟି ସତ୍ୟ ମିଳିବା ମଧ୍ୟ କାଠିକର ପାଠ । ତଥାପି ଏଇ କଥାଟା ଯେ ନିହାତି ସତ ଆମ୍ଭେ ତାହାର ହଲପ କରି କହିପାରୁ । ଆଜ୍ଞା ! ଆପଣ ଯଦି ଆମ୍ଭ କଥାକୁ ସତ୍ୟ ନ ମଣିବେ ଆଉ ପାଞ୍ଚଜଣ ତ ମଣିବେ । ତେବେ ଆପଣଙ୍କୁ ବାହିଁକି ଏତେ ନେହୁରା ହୋଇ କହି ସମୟ ନଷ୍ଟ କରିବୁ ? ଇଏ ତ ଗଣତନ୍ତ୍ର ଯୁଗ । ଏଠି ସବୁକଥା ସଂଖ୍ୟାଗରିଷ୍ଠତା ଉପରେ ନିର୍ଭର କରେ । ବେଶୀ ଲୋକ ଗୋଟାଏ ପଟରେ ହାତ ଟେକିଦେଲେ କିଟାପଟ । ତିନି ଭୁଣ୍ଡରେ ଛେଳି ବି କୁକୁର ହୋଇଯାଏ । ସତ ମିଛ ହୋଇଯାଏ । ମିଛ ବି ସତ ବନିଯାଏ । ସାଧୁ ଅସାଧୁ ହୋଇଯାଏ । ଅସାଧୁ ସାଧୁ ହୋଇଯାଏ । ଏଇ ହେଉଛି ଆମ ଘର କଥା, ଆମ ଦେଶ କଥା । କାହାକୁ କହିବ ? କେମିତି କହିବ ? କହିଦେଲେ ଘରର ଗୁମର ପଦାରେ ପଡ଼ିଯିବ । ତେଣିକି ମୁଣ୍ଡଟେକି ବାଟ ଚାଲିବାକୁ ଲାଜ ମାଡ଼ିବ । ଦେଖେଣାହାରୀଏ ଟିଟିକାରି ମାରି ହସିବେ । ଏଣେ ନ କହିଲେ କୁଳର ମର୍ଯ୍ୟାଦା ରହୁନାଇ । ତଳକୁ ତଳକୁ ବୁଡ଼ି ବୁଡ଼ି ଯାଉଚି । ବଇଁଶ ବୁଡ଼ିଗଲାବେଳକୁ ଘୋଡ଼ାମୁହାଁଯାକ ଜନମ ହୋଇଥାନ୍ତି । ଏ ପରିସ୍ଥିତିରେ ନିଶ୍ଚୟ କିଛି କହିବାକୁ ହେବ । ବଡ଼ ସାବଧାନରେ କହିବାକୁ ହେବ । ଘରର ଗୁମର ଫୁଟିବ ନାଇ, ଅଥଚ ଘର ଭାସିଯିବ ନାଇ ।

ଏଇ ଘର କଥାଟା ଯେମିତି, ଗୋଟାଏ ସଂଘ କି ଦଳର କଥା ସେମିତି । ଦେଶ କଥାଟା ବି ସେଇମିତି । ଘର କହିଲେ ଗୋଟାଏ ଛୋଟିଆ ପରିବେଶରେ ଜେଜେବାପା, ଜେଜେମାଆ, ବାପା, ବୋଉ, ଦାଦା, ଖୁଡ଼ୀ, ଭାଇ, ଭଉଣୀ, ନାତି, ନାତୁଣୀ ଇତ୍ୟାଦି ସମ୍ପର୍କକୁ ନେଇ ବୁଝାଏ । ଦେଶଟା କିନ୍ତୁ କେତେ ଜାତି, ଧର୍ମ, ସଂସ୍କୃତି, ଭାଷାକୁ ନେଇ ବଡ଼ ପରିବେଶକୁ ବୁଝାଏ । ଏଇ ପରିବେଶରେ ସମ୍ପର୍କ ଥାଏ ଯେ, ହେଲେ ତାହା ହେଉଛି ସଂସ୍କୃତିର ସମ୍ପର୍କ, ଶାସନର ସମ୍ପର୍କ, ଦେ'ନେ'ର ସମ୍ପର୍କ । ଯେଠି ବାହାରକୁ କଏ କାହାକୁ ଭାଇ କି ଭଉଣୀ ଡାକିପାରେ,

ପ୍ରିୟ ବନ୍ଧୁ ବା ଡିଅର ଫ୍ରେଣ୍ଡ ସମ୍ବୋଧନ କରିପାରେ । ତେବେ ଏଇ ଦର୍ଶକଙ୍କ ଚଳନ୍ତା ଗାଡ଼ି ଭିତରେ କେତୋଟି ମୁହୂର୍ତ୍ତର ସମ୍ପର୍କ ପରା । ଦାନା ନ ଛିବା ପୂର୍ବରୁ ଛାଡ଼ି ଚାଲି ଯାଇପାରେ, ମିଳେଇ ଯାଇପାରେ । ସେଠି ଜଣକର ବିପଦ ଆପଦ ପଡ଼ିଲେ ସମସ୍ତେ ଆଗେଇ ଆସନ୍ତି ନାହିଁ । ଯିଏ ବା ଆସନ୍ତି ଖବରକାଗଜ ଆଉ ଗଣମାଧ୍ୟମରେ ପ୍ରଚାର ପାଇଁ, ବଦାନ୍ୟ ବୋଲି ଦେଖେଇ ହେବାପାଇଁ । ଘରର ସମ୍ପର୍କ କିନ୍ତୁ ନିଆରା । ସବୁ ଅଭାବ ଅନଟନ ସତ୍ତ୍ୱେ ଜଣଙ୍କ ପାଇଁ ଜଣେ ବନ୍ଧା । ଏଠି ତ୍ୟାଗର ମହିମା ଅଛି । ଦେଶନେତାଙ୍କଠାରେ ତ୍ୟାଗ କଥା ବେଶୀ ଶୁଣାଯାଏ ଭୋଗ କିନ୍ତୁ ପ୍ରବଳ ହୋଇଥାଏ । ଜଣେ ଜଣେ ଯେ ତ୍ୟାଗ କରୁନାହାନ୍ତି ଏକଥା ନୁହେଁ । ସମସ୍ତେ କିନ୍ତୁ ଗାନ୍ଧୀମହାତ୍ମା ହୁଅନ୍ତି ନାହିଁ, କି ନେତାଜୀ ସୁବାସ ବୋଷ ହୁଅନ୍ତି ନାହିଁ । ଉତ୍କଳମଣି ଗୋପବନ୍ଧୁ ହୁଅନ୍ତି ନାହିଁ କି ଆଚାର୍ଯ୍ୟ ହରିହର ହୁଅନ୍ତି ନାହିଁ । ଖୁବ୍ କମ୍ ଲୋକ ଏପରି ହୁଅନ୍ତି । ସେଇମାନଙ୍କ ପାଇଁ ଦେଶଟା ବାନ୍ଧି ହୋଇ ରହେ । ସେମାନେ ଯେଉଁ ବତିଶ ସିଂହାସନ ଗଢ଼ିଥାଆନ୍ତି ତାର ଉପରେ ଲୋଭୀ-ମାନେ ବସନ୍ତି, କୃତ୍ୟ କୃତ୍ୟ ହୁଅନ୍ତି । ସିଂହାସନରେ ବସିଲେ ସେବକ ହେବାର ସୁଯୋଗ ପାଆନ୍ତି । ସେବା ଓ ସିଂହାସନ ସେମିତି ହୋଇଯାଆନ୍ତି ଯାଆଁଳା ଭାଇ । ସେଇମାନଙ୍କ ଯୋଗୁ ଦେଶର ବଢ଼ତିରୁ ବଢ଼ତି ହେଉଛି ବୋଲି କହନ୍ତି । ଏଇଥି-ପାଇଁ ଦଳ ଭାଙ୍ଗୁଛି, ଦଳ ହେଉଛି । କେତେ ନାଇ କେତେ ଦଳ । ସବୁ ଦଳ ତୁଳସୀ, କୋଉ ଗୋଟାକ ବଣୁଆଡ଼ ନୁହେଁ । କେଜାଣି ହୋଇଥିବ ! ଲୋକ ଯେତେବେଳେ ଉଠେଇ ଗଲଣି, ସେତେବେଳେ କିଏ କହିବ ବଣୁଆଡ଼ ବୋଲି ? ଛାତି ଭିତରେ ହାଡ଼ ଅଛି ଯେ !

ହାୟ ହାୟ ! କି ଯୁଗ ହେଲା ଇଏ ! ଆରେ ବାପ୍ ! ତଳୁ ଉପରକୁ ଅନେଇ ଦେଲେ ଆଖି ଖୋସି ହୋଇଯାଉଛି । ସବୁଆଡ଼େ ସଚୋଟପଣିଆର ଭେଳକି । ଉପରେ ଉପରେ ଯେଉଁମାନେ ଅଛନ୍ତି ସେମାନେ ସମସ୍ତେ ତୁଳସୀ । ସମସ୍ତେ କହୁଛନ୍ତି ବଣୁଆଡ଼ ବଢ଼ିଗଲା, ତାକୁ ଉପାଡ଼ିଦିଅ । ବାଲୁଙ୍ଗା ହୋଇଗଲା ଧାନକ୍ଷେତ, ତାକୁ ବାଛିଦେବାକୁ ହେବ । ବଣୁଆଡ଼ମାନେ ହସୁଛନ୍ତି । ବାଲୁଙ୍ଗାମାନେ ଫୁଲ ଫୁଟେଇ ଥିର ଥିର ପବନରେ ନାଚୁଛନ୍ତି । ସେମାନେ ଜାଣନ୍ତି ଯେ ସେମାନଙ୍କର ମୃତ୍ୟୁ ନାହିଁ । ସେଇମାନଙ୍କ ଦଳ ଭିତରେ ସମସ୍ତେ ଆସ୍ତେ ଆସ୍ତେ ସାମିଲ ହୋଇଯାଉଛନ୍ତି । ସେମାନଙ୍କୁ ନ ଧରିଲେ କାହାରି ରକ୍ଷା ନାହିଁ । ତତଲା ବୈତରଣୀ ପାରିହେବାକୁ ହେଲେ ସେଇମାନେ ହିଁ ନାଉରି । ଆଉ ଗୋଟିଏ ଘୋଷିଆ କଥାଟିଏ ଦେଖନ୍ତୁ । ସେଇଟା ହେଉଛି ଏ ଯୁଗର ଫେସନ । ଏଇ ଫେସନ ପୁଅକୁ ଝିଅ, ଝିଅକୁ ପୁଅ କରିଦେଉଛି । ପୁଅଝିଅକୁ ସମାନ କରିଦେଉଛି । ବାରି ହେଉନି ପୁଅ କିଏ, ଝିଅ କିଏ । ଏଇ ସେଦିନ ବୁଢ଼ା ହରିବାବୁ ହରଡ଼ଘଣାରେ

ପଡ଼ିଗଲେ କିଛି ସମୟ । ଜନୈକା ସୁଅଦେଶୀ ଯୁବତୀକୁ ସେ ଡାକଦେଲେ—'ମିଷ୍ଟର ! ଦୟାକରି ଟିକେ ଶୁଣିବେ କି ?' ଏଥିକରେ କଥା ପଞ୍ଚମକୁ ଉଠିଗଲା । ଯୁବତୀଟି କହିଲା—'କଣ ବୁଢ଼ାଟିଏ ହେଲଣି, ଜାଣିପାରୁନା ପୁଅ କିଏ, ଝିଅ କିଏ ? ତମେ କଣ ଅନ୍ଧ କି ? ମୁଁ ମିଷ୍ଟର ନୁହେଁ; ମିସ୍ ।' ହରିବାବୁଙ୍କ ଜମାନା ଗଲାଣି । ଜୀବନସାରା ସେ ସରକାରୀ ଦପ୍ତରରେ 'ଏସ୍‌ମ୍ୟାନ୍' ଭାବରେ କଟେଇ ନେଇଥିଲେ । ଏବେ ଯେଉଁ ଫେସନ ଚାଲିଛି ସେଥିରେ ସେ ଯୁବକ-ଯୁବତୀଙ୍କୁ ବାରି ପାରୁନାହାନ୍ତି । ଆଗେ ସିନା ବେଣୀ ଥିଲା, ଜୁଡ଼ା ଥିଲା, କାନରେ, ବେକରେ, ହାତରେ ଅଳଙ୍କାର ଥିଲା, ସିନ୍ଦୂର ଓ ଶାଢ଼ୀ ଥିଲା; ଏବେ ତ ଆଉ ସେସବୁ ନାଇ । ଶାଢ଼ୀ ସ୍ଥାନରେ ପଣ୍ଟିମା ପ୍ୟାଣ୍ଟ ସାର୍ଟ ଆସିଗଲାଣି । ଏଇଟା ଅବଶ୍ୟ ଉତ୍ତମ କଥା । ସାମ୍ୟବାଦ ଆଡ଼କୁ ଅନ୍ତତଃ ଦେଶଟା ମୁହାଁଇଯିବ । ଯିଏ କହିବ ଏଇ ଫେସନବାଜ ମଣିଷଙ୍କୁ, ସିଏ କଣ ସମ୍ଭାଳି ହୋଇ ରହିପାରିବ ? ତା' ଅବସ୍ଥା ଘାଏଲ ହବ । କହୋ ! ତମର କଣ ଗଲା ? ତମେ ଯଦି ଚହ୍ନି ନ ପାରୁଛ ମହନ ହୋଇ ରହିଯାଉନ । ଫେସନ ତ ସବୁଆଡ଼େ । ନେତା ହେବାକୁ ହେଲେ ଗୋଟାଏ ରକମର ଫେସନ ଦରକାର । ଅଧିକାରୀମାନଙ୍କର ଆଉ ଏକରକମ ସାହେବୀ ଫେସନ । ଅମଲା-ମାନଙ୍କର ଆଉ ଏକ ପ୍ରକାର । ସେଥିରେ ପାଠପଢ଼ା ଯୁବକ-ଯୁବତୀମାନଙ୍କର ଆଉ ଏକ ପ୍ରକାର ହବ ନା ନାଇ ? ଓହୋ ! ତମେ ଏସବୁ କଥାକୁ ସହିପାରୁନା ? ଆରେ ବାବା ସାଧନା କର । ଭେତକ ପୁଚ୍ଛକ ଶିଖ କେଉଁ ଆଶ୍ରମକୁ ଯାଇ । ସହିବା ଶକ୍ତି ବଢ଼ିଯିବ ।

ନା ନା, ତମେ ଆଦୌ ପାରିବ ନାଇ । ତମର ଯୁ ପ୍ରକୃତି, ଖାଲି ବକ୍ ବକ୍ ହବ । କାହାକୁ କଣ ବେଠଉରିଆକ କହୁ ଦଉତ ଯେ ତେଣେ ବାଜ ଉଠୁଚ ବାଜା—ତାଧିନ ତାଧିନ ତା । ତମେ ଯାହାକୁ ଯାହା କୁହ ପଛେ ଏବକା ଯୁବକ ଯୁବତୀମାନଙ୍କୁ କିଛି କହିପାରିବ ନାଇ । ଯଦି କହିବ ତମ ମୁହଁରେ ଭୂଣ୍ଡି ଦିଆଯିବ । ଏବେ ସ୍କୁଲ କଲେଜ ଓ ବିଶ୍ୱବିଦ୍ୟାଳୟମାନଙ୍କରେ ଗୋଟାଏ ନୂଆ ଫେସନ ବାହାରିଚ, ସେଇଟା ର୍‌ୟାଗିଙ୍ଗ୍ । ବଡ଼ ପାଠ ପଢ଼ୁଥିବା ପିଲାଏ ବହୁତ ଗବେଷଣା କରି ଏଇଟାକୁ ବାହାର କରିଛନ୍ତି । ଇଞ୍ଜିନିୟରିଂ, ମେଡ଼ିକାଲ କଲେଜ ଓ ବିଶ୍ୱବିଦ୍ୟାଳୟମାନଙ୍କରେ ଏଇଟା ଅଶରୀରୀ କାୟା ବିସ୍ତାର କରିଛି । ଇଏ ଗୋଟାଏ ଅଦ୍ଭୁତ ଗବେଷଣା । କୋଉ ବୈଜ୍ଞାନିକ ଏପରି ଗବେଷଣା କରିବାକୁ ସମର୍ଥ ହେବେ ନା ! ତା' ମୁଣ୍ଡ ଭାଁ ଭାଁ ହୋଇଯିବ । ବଡ଼ ଶ୍ରେଣୀର ପିଲାମାନେ ସାନ ଶ୍ରେଣୀର ନୂଆ ନୂଆ ପିଲାମାନଙ୍କୁ ର୍‌ୟାଗିଙ୍ଗ୍ କରିବେ । ସେମାନଙ୍କୁ ଲଙ୍ଗଳା କରି ଚଲାଇବେ । ଯାବତୀୟ ନାରକୀୟ କାଣ୍ଡ କରିବେ । ଯମଦୂତମାନେ ଇମିତ

କରୁଥିବେ କି ଭାରି କଷ୍ଟ ତାର। ଆହାଃ, ନୂଆ ପିଲାଟିଏ ଯାଉଥିବ, ବାଟ ଘାଟ ନଥିବ, ତାର ମୁଣ୍ଡ ଏପରି ଅବସ୍ଥାରେ ଖରାପ ହେବ ନା ନାହିଁ? ଲାଜ ସରମରେ ସବୁଲି ହୋଇ କିଏ ଆତ୍ମହତ୍ୟା କରିବ ନାହିଁ? ପୁଅପିଲାଏ ତ ର୍ୟାଗିଙ୍ଗ୍ କରୁଥିଲେ, ଏବେ ଶୁଆଡେ ଝିଅପିଲାମାନେ ମଧ୍ୟ ର୍ୟାଗିଙ୍ଗ୍ କରୁଛନ୍ତି। ଝିଅଙ୍କ ଉପରେ ର୍ୟାଗିଙ୍ଗ୍ ପୁଅଙ୍କ ଉପରେ ର୍ୟାଗିଙ୍ଗ୍। ପୁଅମାନେ ଯେତେବେଳେ ର୍ୟାଗିଙ୍ଗ୍ କରୁଛନ୍ତି ଝିଅମାନେ ଆଉ ପଛେଇବେ କେମିତି ସେ! ଏ ଯୁଗରେ ତ ସବୁ ସମାନାଃ। ଏ ଯେଉଁ ସ୍ୱାତନ୍ତ୍ରତା ଯେଉଁଟା କି ଧରଣର କୌତୁକ? ଏଇ ପିଲାମାନଙ୍କ ଭିତରୁ କେତେ ହୁଅନ୍ତି ଡାକ୍ତର, ଇଞ୍ଜିନିୟର, ଅଧିକାରୀ, ଅଧ୍ୟାପକ, ନେତା, ମନ୍ତ୍ରୀ ଇମିତି କେତେ କଣ? ଏମାନଙ୍କଠାରୁ ଦେଶ କଣ ଆଶା କରିବ କହିଲେ? ଏକଥା କହିବାକୁ ଲାଜ ଲାଗିବ ନାହିଁ? ନ କହିଲେ ଏଣେ କୂଳ ବୁଡିଯାଉଛି। କିଏ କହିବ? ଯିଏ କହିବ ସିଏ କୋଉ ଅସ୍ପୃଶ୍ୟ ହୋଇ ରହିଯାଇବ?

ଇଏତ ପିଲାଙ୍କ କଥା। କେତେ ଛୋଟେ ଘଟଣାରୁ ଇଏ ଗୋଟାଏ। ସବୁ ଘଟଣା ଦେଖିଲେ ଆଖି ବୁଜି ହୋଇଯିବ। ଏଇଟା ଶୁଆଡେ ପ୍ରଗତି! ହଉ ବାବୁ। ପ୍ରଗତି ହେଉ। ଦେଶଟା କିନ୍ତୁ ବଙ୍ଗୋପସାଗରରେ ନ ବୁଡିଲେ ହେଲା। କୋଉ ଦେଶରୁ ଏସବୁ ସଂସ୍କୃତି ଅଦିନିଆ ବଢ଼ି ପାଣି ପରି ମାଡ଼ିଆସିଛି କେଜାଣି। ଖବର-କାଗଜରୁ ଆପଣ ଦେଖୁଥିବେ ଯେ ବିଶ୍ୱବିଦ୍ୟାଳୟ ଓ କଲେଜମାନଙ୍କରେ ଯୁବକମାନେ ହିରୋଇନ୍, ଚରସ୍, ମାରିଜୁଆନା ପ୍ରଭୃତି ସେବନ କରି ଉନ୍ମତ୍ତ କାଣ୍ଡ କରୁଛନ୍ତି। ଏଇଟା ଆଜି ସମ୍ବାଦଦାତାଙ୍କର ଅସରନ୍ତି କଥା। ହଉଓ, ଆମ ପିଲାଏ ଇମିତି କରିବେ ନାଇ ତ ଆଉ କିଏ କରିବ? କଣ ଗୃହବାସ କରୁଥିବା ଜମ୍ମା ପେଟ ଗୁଣ୍ଡିକ ପାଇଁ ସକାଳୁ ସଞ୍ଜଯାଏ ମୂଲିଆ କାମ କରୁଥିବା ଯୁବକମାନେ ଇମିତି କରିବେ? ସେମାନଙ୍କର ବେଳ କାହିଁ ସେ! ବଞ୍ଚିବା ପାଇଁ ତ ନିରବଧି ସଂଘର୍ଷ। ଆମ ପିଲାଏ କିନ୍ତୁ ଐଶ୍ୱର୍ଯ୍ୟରୁ ଆସିଛନ୍ତି, ବିଳାସରୁ ଆସିଛନ୍ତି। ଘରେ ବାପା ମାଆଙ୍କୁ ଦେଖିଛନ୍ତି। କୃତ୍ରିମତାଭରା ସେମାନଙ୍କ ପରିବେଶ। ବାହାରଟା ସିନା ଚକ୍‌ଚକ୍। ହେଲେ ଭିତରଟା ମହାକାଳ ଫଳ। ଏଇଥିପାଇଁ ଏତେ କାଣ୍ଡ କାରଖାନା।

ଏବେ ଗୋଟାଏ ଇମିତିକା ହାୱା ବହୁଛି ଯେ କହିବାବାଲା ଆଉ ଉପଦେଶବାଲାଙ୍କ ସଂଖ୍ୟା ଲମ୍ବି ଲମ୍ବି ଚାଲିଛି। କାହାକଥା ଶୁଣିବ କହିଲେ? ଇଏ ଗୋଟାଏ କଥା କହୁଥିବାବେଳକୁ ସିଏ ଆଉ ଗୋଟାଏ କଥା କହୁଛି। ଇଏ ତା’

ଉପରକୁ ହାତୁଅ ପକାଉଛୁ ତ ସିଏ ଆଉ କାହା ଉପରକୁ ପକାଉଛୁ । ଖାଲି ଘୋ-ଟଘୋ, ହୋ ହୋ । କିଏ ଉଳଙ୍ଗୀ ଆଉ କିଏ ବଳୁଆତ ଜାଣିବ କେମିତି ଯେ ! ଏଇ ଦେଖନା ଦେଶକୁ ଠିକଣା ବାଟରେ ନେବାପାଇଁ ସେବକମାନେ ଜମା ହୋଇଥିବା ସଂସଦ୍‌ଗୃହ ଭିତରେ ହାତାହାତି, ଠେଲାପେଲା, ହୋ ହୋ ଧକାଧକ୍‌କା ହୋଇ ଯାଉଛନ୍ତି । ଏଇ ହେଉଛି ଗତି । ସାମାଜିକ ସ୍ତରରେ ମଧ୍ୟ ଇଏ ହେଉଛି ଆଦର୍ଶ । ନେତାମାଏ ମଧ୍ୟ ଏହାକୁ ଜନ ଜନ ସ୍ତରରେ ପ୍ରୟୋଗ କରୁଛନ୍ତି । ଇଏ ଆଉ ଲାଜ କଥା ନୁହେଁ; ଗୁପ୍ତପୁର ଗମ୍ଭୀର କଥା । ଯିଏ ଯେତେ ହାତ ହଟଠଇପାରିଲା, ବନ୍ଧୁକ ବନ୍ଧୁକ ଚଳେଇ ପାରିଲା, ସିଏ ସବୁଠୁ ମାତବର ନେତା ହୋଇଯାଉଛି । ତାର ଖାତିର ବଢ଼ି ଯାଉଛି । ତାକୁ ଅନ୍ୟମାନେ ମାନୁଛନ୍ତି । ତାହାର ଯୁ ଅଛି ତାକୁ ମାନିବ ନାଇଁ ? ସିଏ ତ କାଲି ଦଳ ଭିତରେ ପରି ଗଣ୍ୟମାନ୍ୟ ବ୍ୟକ୍ତି ହୋଇ ଯାଉଛି । ଏଇଆକୁ ଉତ୍‌ସାହଦେଲେ ସ୍ୱଜନଗତବାଲିଏ । ସେମାନଙ୍କୁ ହେମନ୍ତ ଦେଲେ । ଏବେ ନେଡ଼ିଗୁଡ଼ି କହୁଣିକୁ ବୋହୁ ଗଲାଣି । ସୁଆଡ଼େ ଦାଇ ସିଆଡ଼େ ବନ୍ଧୁକ ବନ୍ଧୁକ । କିଏ କାହାକୁ ମାରିଲାଣି ତ କିଏ କାହାକୁ ପଣବନ୍ଦୀ କଲାଣି । କଣ ଆଉ ଉଦ୍ୟମ ଶୃଙ୍ଖଳା ଅଛି ନା ଆଦର୍ଶ ଅଛି ? ଯେଉଁ ଦେଶ ଥିଲା ସତ୍ୟ, ଅହିଂସା ଓ ଧର୍ମର ଲୀଳାଭୂମି ସେଠି ଆଜିକାଲି ହିଂସା, ଅସତ୍ୟ ଓ ଅଧର୍ମର ସ୍ୱରୂପ । ଏବେ ଧର୍ମ କଥାଟା ହମେସା କହୁଛନ୍ତି । ସେଇଟା କଣ ଧର୍ମ କି ? ଧର୍ମ ନାମରେ ଯେଉଁ ବେପାରଦାରୀ ଚାଲିଛି, ଡଉଁ ଦେବତାଙ୍କୁ ଅଧୁନିକ ଷ୍ଟାଇଲରେ ଯେମିତି ଉଆଡ଼ କରାଯାଉଛି, ମେଳ ଓ ଧର୍ମ ଶୋଭାଯାତ୍ରାରେ ଯେମିତି ଗୁପ୍ତ ଦେବାଙ୍କର ଏକାଧିପତ୍ୟ ପ୍ରଭାବ ଅନୁଭୂତ ହେଉଛି ଓ ସମୟେ ସମୟେ ଖଣ୍ଡ ପ୍ରଳୟ ଘଟିଯାଉଛି ସେଇଟାକୁ ଦେଖିଲେ କିଏ କହିବ ତାହା ଧର୍ମ ବୋଲି ? ଆମ ମୂର୍ତ୍ତିକୁ କୋଉ ଲାଜ ନା ସରମ ଅଛି ? ଅଡ଼ ଦେବୁଆ ହେଲେ ଇମିତି ନାଚିବାକୁ ମନ ହୁଏ ।

କୋଉ କଥାରେ ଆଉ ଲାଜ ସରମ ନାଇ । ସବୁ ଆମେ ପୋଡ଼ି ଖାଇ ସାରିଲୁଣି । ଯେଉଁ ଦେଶରେ ବନ୍ୟା ମରୁଡ଼ି, ଦୁର୍ଭିକ୍ଷ, ବାତ୍ୟା ଓ ମହାମାରୀ ଆଦି ଦୁର୍ବିପାକ ବେଳେ ସ୍ଥାନ ସ୍ଥାନ ମଣିଷମାନଙ୍କ ପାଇଁ ପଠାଯାଉଥିବା ସାହାଯ୍ୟ ଅଥବା ଦୁଃସ୍ଥଜନ-ଆଦିବାସୀଙ୍କ କଲ୍ୟାଣ ପାଇଁ ପଠାଯାଉଥିବା ଅର୍ଥ, ଲୁଗାପଟା, କମ୍ବଳ ଇତ୍ୟାଦି ବାଟମାରଣା ହୋଇଯାଏ ଓ କାଗଜ କଲମରେ କଲ୍ୟାଣ ଓ ମଙ୍ଗଳ ସାର ସାଇକରି ବଣ୍ଟିତ ବୋଲି ଦରଦ କରାଯାଏ, ସେଠି ଆଉ କୋଉ କଥା କାହାକୁ କହିଲେ କିଏ ଶୁଣିବ ? ଛି ! ଏସବୁ ଲାଜ କଥା । ସବୁ ତ ଏକା ନାଉର ମଙ୍ଗି । ଭଲ କେଉଁଠୁ ଆସିବ ଯେ କାହାକୁ ଲାଜ ମାଡ଼ିବ ? ଲାଜ ଥିଲେ ତ ମଣିଷ ଟିକେ ଶଙ୍କି ଯାଆନ୍ତା । ଲାଜଟା ଗୋଟାଏ ଭୂଷଣ । ଏଇଟା ମଣିଷପଣିଆର ମାପକାଠି ।

ଲଜ ଅର୍ଥ ନୁହେଁ ଯେ ସାହସ ହରେଇ ଦେବା । ସାହସ ଥିବ, ଲଜ ଥିବ । ଏଇ ଦୁଇଟା ଥିଲେ ମଣିଷପଣିଆ ଫୁଟି ଉଠିବ । ଲଜ ଯେତେବେଳେ ଗଲଣି ସେତେବେଳେ ଆଉ କୋଉ କଥାକୁ ଡର ? ଆସନ୍ତୁ ଏଣିକି ଲଜ ଶବ୍ଦଟାକୁ ବିଲ୍‌କୁଲ୍ ଉଠେଇ ଦେବା । ସମସ୍ତେ ଗୋପନାଙ୍ଗ ହୋଇ ଉପରକୁ ହାତ ଟେକି ଦେବା । ତେଣିକି ଆଉ କିଛି ଅସୁବିଧା ହବ ନାଇ । ଏତିକି ଥାଉ । ବେଶି କହିଲେ ଭେରପିଆ ହୋଇଯିବ ଯେ !



# ପ୍ରଳୟ ଆଉ କେତେ ଦୂର

'ସତ କହିବାକୁ କାହିଁ ଡରିବ
ସତ କହି ପଛେ ମଲେ ମରିବ ।'

ଏଇ କଥାଟା ଖୁବ୍ ଓଜନଦାରିଆ ମନେହେଉଚି । ଜୀବନ ଯାଉ ବା ରହୁ; ଅବଶ୍ୟ ସତ୍ୟ କହିବାକୁ ହେବ । କାହିଁକି ନା ସତ୍ୟ ହେଉଚି ଭଗବାନ । ସତ୍ୟ ଭଳିଆ ଆଉ କିଛି ମହତ୍ତ୍ୱପୂର୍ଣ୍ଣ କଥା ନାହିଁ । ଯିଏ ସତ୍ୟ କହେ ସିଏ ପୂଜାପାଏ । ଯିଏ ମିଛକୁ ଘୋରିବାଟି ପିଇଦେଇ ତାକୁ ହଜମ କରିଥାଏ ତାକୁ କେହି ଆଦର କରନ୍ତି ନାଇ । ଇଏ ସତକଥା । ସତ୍ୟ ହେଉଛି ପୁଣ୍ୟ । ମିଛ ହେଉଛି ପାପ । ପୁଣ୍ୟ କଲେ ସ୍ୱର୍ଗବାସ । ପାପ କଲେ ନରକ ବାସ । ତେବେ କଥାଟା ହେଉଚି ମିଛ ନଥିଲେ ସତ୍ୟ କଥା କେଉଁଠୁ ଆସନ୍ତା ? ଯେମିତି ଦିନ ନ ଥିଲେ ରାତି, ରାତି ନଥିଲେ ଦିନ, ଧଳା ନଥିଲେ କଳା, କଳା ନଥିଲେ ଧଳା, ଖରା ନଥିଲେ ବର୍ଷା, ବର୍ଷା ନଥିଲେ ଖରା କଥା ଆସେନାଇ, ସେଇମିତି ମିଛ ନଥିଲେ ସତ୍ୟ କଥା କେହି ଶୁଣନ୍ତେ ନାହିଁ କି ସତ୍ୟକୁ ଏତେବଡ଼ ମର୍ଯ୍ୟାଦା କେହି ଦିଅନ୍ତେ ନାହିଁ । ସତ୍ୟକୁ ଆମେ କାଳେ କାଳେ ମର୍ଯ୍ୟାଦା ଦେଇ ଆସିଛୁ । ମିଛକୁ ଘୃଣା କରିଛୁ । ଶେଷକୁ ମିଛ ଦେହରେ ବୋଳି ଦେଇଛୁ ପାପର କାଳିମା । ଏଇଥିପାଇଁ ଯେଉଁଠି ମିଛ ସେଇଠି ଆମେ ତାକୁ ଦୂର୍ ଦୂର୍ ମାର୍ ମାର୍ କରିଛୁ । ତେବେ ଆମେ କୋଉ ସନ୍ଥଆଗୁଡ଼ାକ ଯେ ମିଛକୁ ମାର୍ ମାର୍ କରିବୁ ? ମିଛ ତା'ର ରାଇଜରେ ରଜା । ସିଏ ତ କାହାକୁ ତା ରାଇଜକୁ ଯିବାକୁ ନିମନ୍ତ୍ରଣ କରୁନାଇ । ତମେ କାହିଁକି ଧସେଇ ପଶିଯାଉଚ ତା' ସାମ୍ରାଜ୍ୟ ଭିତରକୁ ? ସିଏ ଏବେ ତାର ମିଛର ଯାଦୁଘର ତିଆରି କରିଚି, ତାଳ ଉପରେ ତାଳ ପକେଇ ମହଲ ପରେ ମହଲ ତୋଳିଚି; ତମେ କାହିଁକି ସିଆଡ଼କୁ ଅନେଇ ବସିଚ ? ପୁଣି ଗଳି ଉପଗଳି ଦେଖି ଅନ୍ଧାର ଭିତରେ ତା' ଭିତରକୁ ପଶି ଯାଉଚ ? ତା' ସିଂହାସନରେ ବସି ନିଶ ଫୁଲେଇ ଦେଉଚ ? ତମର ଦୋଷ ହେଲା ନାଇ ଅଥଚ ଯାବତ ଦୋଷ ମିଛର ? ଇଏ କେମିତିକା କଥା ! ଅନ୍ଧାର ଭିତରେ ମିଛର ହାତ ଧରି ତମେ ଥେଇ ଥେଇ ହୋଇ ନାଚୁଚ । ଏଣେ ଆଲୁଅକୁ ଆସିଲାକ୍ଷଣି କହୁଚ ମିଛଟା ପାପ, ସତ୍ୟଟା ପୁଣ୍ୟ ! ତମେ ବୃନ୍ଦାବେଶ୍ୟା ତପସ୍ୱିନୀ ସାଜି ଯାବତ ମାଠ ଉପଦେଶ ଓଜାଡ଼

ପଡ଼ାହୁଛି । ଯାହା ଜଣାଯାଉଛି ତମେ ଏକୁଟିଆ ସଢ଼ଆ । ଆଉ ସଂସ୍ରେ ମନ୍ଦୁ । : ଯାଲୁଆଙ୍କର ଷାଠିଏ ବାଟି ବୃକ୍ଷପତ୍ର ତଳେ ଖାଲି ମୁହଁ ଭୁରୁଡ଼ି ଦେଖାଉଛି ଅନ୍ୟ ଜଣେ ସଢ଼ଆ ବୋଲି ଢୋଲ ପିଟୁଛି ।

ସବୁ ଯୁଗରେ ସତ୍ୟ ଉପରେ ଜୋର ଦିଆଯାଇ ଆସିଛି । ମିଛକୁ ହେୟ କରାଯାଇଛି । ଅଧର୍ମକୁ ଘୃଣା କରାଯାଇଛି । ହେଲେ ଯାହାକୁ ଆଦୃତ କରାଯାଉଛି ତାର ଗୁରୁତା ବଢ଼ିଛି । ଏଇ ଯେମିତି ସିନେମା ହଲରେ କେବଳ ବୟସ୍କମାନଙ୍କ ପାଇଁ ଉଦ୍ଦିଷ୍ଟ ହୋଇଥିବା ସିନେମାକୁ ପିଲା ଆଉ ଯୁବକ ଯୁବତୀମାନଙ୍କ ଭିଡ଼ ଲାଗିଥାଏ ଦେଖିବାପାଇଁ । ଇଏ ହେଉଛି ଗୋଟାଏ ଚାଲାକି, ଗୋଟାଏ କୌଶଳ—କୌଶଳ ଠିକ୍ ନୁହେଁ; ଅପକୌଶଳ । ଯେଉଁଟା ଯେତିକି ନିଷିଦ୍ଧ ଆଉ ଗୋପନୀୟ, ତାପ୍ରତି ସେତିକି ଅଧିକ ଆକର୍ଷଣ ବଢ଼ିଥାଏ । ଏଇଥିପାଇଁ ମିଛ ପ୍ରତି ଯୁଗେ ଯୁଗେ ଆକର୍ଷଣ । ସତ୍ୟ ପ୍ରତି ଆକର୍ଷଣ କମ୍—ମୋଟେ ନାହିଁ କହିଲେ ବି ଠିକ୍ ହେବ ବୋଧହୁଏ । ଏଇ ଯେମିତି ଧର୍ମ କଥାଟା । ଯାହା ଆମେ ଧର୍ମ ନାମରେ ବାରବାର ଦେଖୁଛୁ ସେଥିରେ କୋଉ ଧର୍ମ ଥାଏ କି ? ଯାବତ ଦେଖେଇ ହେବାର ଅଛି ନିଜକୁ ଧାର୍ମିକ ବୋଲି ମୋହର ମାରିବାର ଭେଳିକି ସାର ହୁଏ । ନିଜକୁ ପୁଣ୍ୟବାନ ଆଉ ଧାର୍ମିକ ଆଖ୍ୟା ଦେଇ ଚେଣିକି ଯେତେଯାହା ପାପ କରିଗଲେ ବି କିଏ କାହିଁକି ସେକଥା ଖୋଜିବ ? କାଳନେମୀ ହୋଇ ଋଷି ବନିଗଲେ ହୁଏତ କିଛି କ୍ଷଣପାଇଁ ହନୁମାନକୁ ଭୁଲାଇ ଦିଆଯାଇପାରେ, ହେଲେ କାଳନେମୀ ଭିତରୁ ଯେ ଅସଲ ଅସୁର ବାହାରି ପଡ଼ିବ ଓ ସତ୍ୟରୂପୀ ହନୁମାନ ହାତରେ ମରିବ; ଏକଥାକୁ କ'ଣ କେହି ଅସ୍ୱୀକାର କରିଦେଇପାରେ କି ? ମିଛର ଭେଳିକି ଦେଖେଇ ହୁଏତ ରାମଙ୍କର କଟାମୁଣ୍ଡ ସୀତାଙ୍କୁ ଦେଖେଇ କିଛି ସମୟ ପାଇଁ କାନ୍ଦେଇ ଦିଆଯାଇପାରେ ଅଥବା ବିଭୀଷଣ ରୂପ ଧରି ଲକ୍ଷ୍ମଣଙ୍କୁ ମହୀରାବଣ ହରେଇ ନେଇ ଯାଇପାରେ, ହେଲେ ସତ୍ୟରୂପୀ ହନୁମାନ ହାତରୁ କ'ଣ ସେ ବର୍ତ୍ତିଯାଇପାରେ କି ? ସତ୍ୟ ସବୁବେଳେ ସତ୍ୟ—ଯେତେ କଠୋର ହେଲେ ମଧ୍ୟ ସତ୍ୟ । ମିଛ ଝଲ୍କୁ ଭେଳିକି ଦେଖାଏ, କମିଥ କରେ । ଖରାଦିନେ ପାଟ ମଝିରେ ଝରିଣୀ ପରି ଦିଶେ । ନାଚଦେଣୀ ପରି ଦିଶେ । ଚକ୍ ଚକ୍ ଝୁଲୁଛି । ଜଳ ଭ୍ରମରେ ଦଉଡ଼ି ଦଉଡ଼ି ଶୋଷିଲା ହରିଣ ହନ୍ତସନ୍ତ ହୁଏ, ଜୀବନ ହାରେ । ମିଛ ଏଇଆ । ରାତି ଅଧରେ ଭୂତ ହୋଇ ଡାକିଦିଏ । ଅନ୍ଧାର ଭିତରେ ଭୂଆଁ ବୁଲାଏ । ମାଙ୍କଡ଼ବସ୍ତ୍ରେ ସେ ତମେ ଖାଲି ଗଁ ଗଁ ହେଉଥିବ । କିଛି କହିପାରୁ ନଥିବ । ପାଟି ଝନ ଝନ ହେଉଥିବ । ସବୁ ଅସ୍ପଷ୍ଟ । ସବୁ ଅନ୍ଧାରିଆ । ସବୁ କୁହୁଡ଼ିଆ । ସବୁ ଧୂଆଁଳିଆ । ସତ୍ୟ କିନ୍ତୁ ଅନ୍ଧାର କାଟି, କୁହୁଡ଼ି କାଟି, ନାଲି ସୂରୁଜ ପରି ଉଦିଆସେ । କାଉ ରାବେ । କୋଇଲି ରାବେ । କଅଁଳା ବାଛୁରି ଡିଏଁ । ଫୁଲ ଫୁଟେ । ପବନ ବହେ

ଧୀରେ ଧୀରେ । ସବୁଆଡ଼େ ଖେଳିଯାଏ ଗୋଟାଏ ଅନନ୍ତର ତେଜ—ଫୁଟିଉଠେ ଦର୍ଶିତସ୍ଥଳୀ ।

ଧର୍ମର ଚାରୋଟି ପାଦ—ସତ୍ୟ, ଶୌଚ, ଦୟା, ତପ । ଏଇ କଳିଯୁଗରେ ଶୌଚ ନାହିଁ, ଦୟା ନାଇ, ତପ ନାଇ । ସତ୍ୟ ଅଛି ସେ ହେଲେ କଳି ଭତ୍ତ୍ରକୋ ଗାଈ ତାର ଉପରେ ଲୁହା ଛଡ଼ରେ ପିଟିବାରେ ଲାଗିଛି । ସତ୍ୟ କାନ୍ଦି କାନ୍ଦି ଡାକୁଛି । କଳି ଶୁଣୁନାଇ । ମହାରାଜ ପରୀକ୍ଷିତ ଧମକ ଦେଲେ ବି ଭତ୍ତ୍ରବେଶୀ କଳି ଡରୁନାହିଁ । ଶେଷକୁ ପରୀକ୍ଷିତଙ୍କ ପାଦ ଧରିଦେଇ ପାଞ୍ଚୋଟି ଘର ମାଗି ନେଇଛି । ଯେଉଁଠି ଦ୍ୟୂତକ୍ରୀଡ଼ା ହେଉଛି ଅର୍ଥାତ୍ ଛଳନା, ପ୍ରତାରଣା ଓ ପ୍ରବଞ୍ଚନା ଅଛି ସେଠି ସେ ରହୁଛି । ଯେଉଁଠି କାମିନୀ ଅର୍ଥାତ୍ କାମ ଭାବ ଅଛି ସେଠି ସେ ଆସନ ଜମେଇ ଦେଇଛି । ଯେଉଁଠି ମଦ୍ୟପାନ କରାଯାଉଛି ଅର୍ଥାତ୍ ପ୍ରମତ୍ତ ଭାବ ଅଛି ସେଠି ମଧ୍ୟ ସେ ବିରାଜିତ ସଦର୍ପରେ । ଯେଉଁଠି ଜୀବହତ୍ୟା କରାଯାଉଛି ଅର୍ଥାତ୍ ହିଂସା ରହିଛି ସେଠି ତାର ଆବିର୍ଭାବ । ଯେଉଁଠି ସୁବର୍ଣ୍ଣ ଅର୍ଥାତ୍ ଅର୍ଥ ରହିଛି ସେଠି ମଧ୍ୟ ତାର ଅବାରିତ ପ୍ରବେଶ । ଇମିତି ଦେଖିବାକୁ ଗଲେ କଳି ସର୍ବବ୍ୟାପୀ ହୋଇଯାଇଛି । ସବୁଆଡ଼େ ତାର ସଦର୍ପ ଶୋଭାଯାତ୍ରା । ମିଥ୍ୟା ହୋଇଯାଇଛି ତାର ପରମ ମିତ୍ର । ସତ୍ୟ ପାଖ ପଶିପାରୁ ନାଇ । ପାହାର ଖାଇ ଖାଇ ସତ୍ୟ ହୋଇଯାଇଛି ପର୍ଯ୍ୟୁଦସ୍ତ । ଯେଉଁ ଯୁଗର ହରିଶ୍ଚନ୍ଦ୍ର ରାଜା ଥିଲେ ଯେ ସତ୍ୟପାଇଁ ସେ ରାଜ୍ୟ ହରେଇଲେ, ସ୍ତ୍ରୀ ଓ ପୁଅକୁ ବିକିଲେ, ନିଜେ ହେଲେ ଚଣ୍ଡାଳର ଚାକର । ମଶାଣିରେ ଚୁଲି ମଡ଼ା ଜଗିଲେ । ଶେଷକୁ ରୋହିତ ବୋଲି ପୁଅର ହେଲା ଅକାଳ ମୃତ୍ୟୁ । ପୁଅ ସହିତ ସେ ଓ ତାଙ୍କ ପତ୍ନୀ ଚିତାଗ୍ନିରେ ଝାସଦେବାକୁ ବସିଲା-ବେଳେ ସବୁ ମିଥ୍ୟାର କୁହେଳିକା ଦୂରେଇ ଯାଇଛି । ସତ୍ୟର ହୋଇଛି ବିଜୟ । ପୁଷ୍ପବୃଷ୍ଟି ହୋଇଛି ହରିଶ୍ଚନ୍ଦ୍ରଙ୍କ ଉପରେ । ରାଜା ସିଂହାସନର ନୁହେଁ, ଭୋଗର ନୁହେଁ; ତ୍ୟାଗର, ସତ୍ୟର, ଧର୍ମର ଓ ନ୍ୟାୟର । ପ୍ରଜାର କଲ୍ୟାଣ ତାର ଧର୍ମ । ପ୍ରଜାପାଇଁ ଜୀବନ ଦାନ ତାର ଆଦର୍ଶ । ରାଜା ଭୋଗୀ ହୋଇଗଲେ ତାର ପୁଣ୍ୟ କ୍ଷୟଯାଏ । ସେ ହୋଇଯାଏ ମିଥ୍ୟାର ଦାସ । ତା' ଭିତରେ ଫୁଟିଉଠେ ଅହଙ୍କାର । ନିଜକୁ ସେ ଖୁବ୍ ବଡ଼ ମନେକରେ । ସେ ପାଲଟିଯାଏ ରାବଣ, କଂସ ଓ ଦୁର୍ଯ୍ୟୋଧନ । ଯାବତ ମିଥ୍ୟା ଓ ମୋହର ସେ ଆଶ୍ରୟ ନିଏ । ସତ୍ୟକୁ ସେ ଭୟ କରେ । ଧର୍ମକୁ ଡରେ । ତେଣୁ ସତ୍ୟ ଓ ଧର୍ମର ତଣ୍ଟି ଚିପିବାକୁ ଉଦ୍ୟମ କରେ । ଅଥଚ ସତ୍ୟ ମରେ ନାଇ, ଧର୍ମ ହାରେ ନାଇ । ମରେ ଅହଙ୍କାର । ହାରେ ଅଧର୍ମ । ସତ୍ୟ କନ୍ତୁ ନେଳିକଣେସନ ପଣ ଗ୍ରେକ୍‌ଟୋକ୍ କହେ । କୃଷ୍ଣଙ୍କୁ ନାଗକୋଣରୁ ଖୋଜି ବାହାର କରିଦେବାରୁ ତାଙ୍କୁ ମୁଣ୍ଡ ଦେବାକୁ ହୁଏ । ତଥାପି ଧ୍ୱଜସ୍ତମ୍ଭ ଉପରେ ଥାଇ ସେ କୁରୁକ୍ଷେତ୍ରର ଯୁଦ୍ଧ ଦେଖେ । ଯୁଦ୍ଧ ଶେଷରେ ସେ କହେ ଏତେବଡ଼

ଯୁଦ୍ଧରେ ଗୋଟିଏ ହେଲେ ବାର ନାହିଁ । ସବୁଠି ଯେମିତ ଚନ୍ଦଟିଏ ଘୂର ବୁଲୁଚ ! କାଟି ଯାଉଚ ସମସ୍ତଙ୍କୁ । ପୁଅ ହୋଇବ ବାପାର ମୁହଁକୁ ଗୁହିଁଲ ନାଇ । ଖୁମର ଗ୍ରପୁଡ଼ାରେ ସେ ଖସି ପଡ଼ିଚ ତଳକୁ । ତଥାପି ସେ ସତ୍ୟ କହୁଚ—ସତ୍ୟ ତାର ଧର୍ମ । ତାର ଅଖି ଉଇଁଟା ଅପଲକ । ଜଗନ୍ନାଥଙ୍କ ଆଖି ପରି ସତ୍ୟ-ଦ୍ରଷ୍ଟା ।

ଇଏତ ହୋଉ ଯୁଗର କଥା । ବେଦ ମନା କରୁନାଇ । ସେତେବେଳେ ସତ୍ୟ ଥିଲା, ସତ୍ୟ ପ୍ରତି ଆଦର ଥିଲା । ସତ୍ୟପାଇଁ ରାମଚନ୍ଦ୍ର ଚଉଦବର୍ଷ ବନବାସ ଗଲେ । କେତେ ନାଇ କେତେ କଷ୍ଟ ଖେଲିଗଲେ । ଥରେବାର ସତ୍ୟ ଦଉଦେଉଥିଲେ ତାକୁ ପାଳିବାକୁ ହେଉଥିଲା । ସତ୍ୟକୁ ନ ମାନୁଥିଲେ କଣ କଣ ଅଘଟଣ ଘଟି- ଯାଉଥିଲା । ନିଜର ଯାବତୀୟ କ୍ଷତି ହୋଇ ଯାଉଥିଲେ ମଧ୍ୟ ସତ୍ୟ ପଥରୁ ବିଚ୍ୟୁତ ହେବା ଥିଲା ଏକାନ୍ତ ଅପରାଧଜନକ । ଯୁଧିଷ୍ଠିରଙ୍କୁ କିଏ କେତେ ଉଦ୍ୟମ ବୁଝାଇଲେ ଗୁରୁ ଦ୍ରୋଣାଚାର୍ଯ୍ୟଙ୍କୁ ତାଙ୍କ ପୁଅ ଅଶ୍ୱତ୍ଥାମା ମରିଗଲା ବୋଲି କହିବା ପାଇଁ । ସିଏ କିନ୍ତୁ କହିବା ପାଇଁ ନାରାଜ । କେମିତି ସେ ଗୁରୁଙ୍କୁ ମିଛ କହିବେ ? ଏଣେ ନ କହିଲେ ନିଜ ଦଳର ବିଜୟ ହେଉ ନାହିଁ । କହିଲେ କୁଳ କୁଟୁମ୍ବକୁ ଲାଜ/ନ କହିଲେ କୁଳ ବୁଡ଼ି ଯାଉଚ । ଶେଷକୁ ନଟନାଗର ଶ୍ରୀକୃଷ୍ଣଙ୍କ ପରାମର୍ଶ କ୍ରମେ ସେ କହିଲେ—'ନରେ ବା କୁଞ୍ଜରେ ଅଶ୍ୱତ୍ଥାମା ହତଃ'—ଜୋରରେ 'ନର' ଶବ୍ଦକୁ ଉଚ୍ଚାରଣ କରି ଟିକେ ଧୀରସ୍ୱରରେ 'କୁଞ୍ଜର' ଶବ୍ଦ ଉଚ୍ଚାରଣ କରିଦେଲେ । ଦ୍ରୋଣ ଶୁଣିଲେ 'ନର' ଶବ୍ଦ । ତାଙ୍କ ପୁଅ ଯେ ମରିଯାଇଚ— ଏକଥା ସେ ସିଦ୍ଧାନ୍ତ କରିନେଲେ । ତାପରେ ସେ ମଲେ । ଅଥଚ ଏଇ ସାମାନ୍ୟ ମିଛ ଯୁଧିଷ୍ଠିରଙ୍କୁ ନରକ ଭୋଗ କରିବାକୁ ନ ହେଲେହେଁ, ଦର୍ଶନ କରିବାକୁ ହେଲା ।

ଏଇ ହେଉଚ ସତ୍ୟର ପରମ୍ପରା । ସତ୍ୟର ଜୟ ଜୟକାର କରାଯାଇଛୁ ସବୁଦିନ । ହେଲା ଯେ, ମିଛ କ'ଣ କୁଆଡ଼କୁ ପଳାଇ ଯାଇଛନ୍ତି ? ସିଏ ସେଇମିତି ଅଛୁ । ସିଂହାସନରେ ବସି ସେଇମିତି ଚକ୍ ଚକ୍ ଦେଖା ଯାଉଛୁ । ଦରକାର ବେଳେ ମିଛଟା ବଳୁ ହୋଇଯାଏ । ମିଛର ଝଲକ ଦେଖେଇ ବାହାଦୁରୀ ନିଆଯାଏ । ଏଇ ଯେମିତି ବିରାଟ ନଗରରେ ଯୁଧିଷ୍ଠିରାଦି ଭାଇମାନେ ଓ ସେମାନଙ୍କର ପତ୍ନୀ ଦ୍ରୌପଦୀ ଛଦ୍ମରୂପ ଧାରଣ କରି ରହିଗଲେ । ସେମାନେ ଯଦି ସତ୍ୟ କହିଥାନ୍ତେ ସେଠାରେ ରହିପାରି ଥାଆନ୍ତେ କି ? ରହିଥିଲେ ସେମାନଙ୍କର ଅବସ୍ଥା କ'ଣ ହୋଇଥାଆନ୍ତା ? ସେମାନଙ୍କର ଏଇ ଛଦ୍ମତା କ'ଣ ମିଥ୍ୟାନୁହେଁ ? ଅଥଚ ଏଇ ମିଥ୍ୟାକୁ ଆମେ ପ୍ରଶଂସା କରୁ । ମିଥ୍ୟା ଯେଉଁଠି ନିର୍ଦ୍ଦୋଷ, ଯେଉଁଠି ଆତ୍ମରକ୍ଷାର କାରଣ ହୋଇଯାଏ, ସେଠି ତାହା ଆଉ ନିନ୍ଦନୀୟ ନୁହେଁ । ହେଇଠି

ମିଥ୍ୟା ହୋଇଯାଏ ପ୍ରଶଂସନୀୟ । ଜଣକର ଜୀବନ ରକ୍ଷା ପାଇଁ ମିଥ୍ୟା ପଦେ କହି ଦେଲେ ସେ ଅଶୁଦ୍ଧ ହୋଇଯିବ; ଇମିତି କିଛି କଥା ନୁହେଁ । ହଁ; ଏଇସବୁ ପରମ୍ପରା ଥିଲା । ସେତେବେଳେ ଲୋକେ ଧର୍ମକୁ ଭୟ କରୁଥିଲେ, ମିଛକୁ ଡରୁଥିଲେ । କାଳେ ନରକରେ ପଡ଼ି ଯନ୍ତ୍ରଣା ପାଇବେ—ଏଇ କଥା ଖାଲି ଶିହରି ଉଠୁଥିଲେ । ଏବେ ତ ଆଉ ସେ ଭୟ ନାଇ ! ନରକ କି ସ୍ୱରଗ ତ ତାହା ମିଛ ହୋଇ ଯାଇଛି । କେଉଁଠି ଯମଦୂତ ଗୁଡ଼ାକ ଅଛନ୍ତି ଯେ ସେମାନେ ଧାଇଁ ଆସି ତତଲା ତେଲ କଡ଼େଇରେ ପକେଇ ଦେବେ, କରତ ଧରି କାଟିବେ, ଶିମୂଳି ଗଛରେ ବାନ୍ଧି ପିଟିବେ ? ଇଏ ସବୁ ଗାଳ୍ପଗଳ୍ପ । ପୁରୁଣାକାଳିଆ ମଣିଷମାନଙ୍କର ଗୁଲ୍‌ବାଜି । ଏବେ ଆମେ ମିଛକୁ ପୁଞ୍ଜି କରି ନେଇଛୁ । ମିଛ ନ କହିଲେ ପାଦେ ଚାଲିବା ମୁସ୍କିଲ ହୋଇ ଯାଉଛି । ଆଜି କେଉଁଠି ମିଛ ନାହିଁ ? ସବୁଠି ମିଛ । ଘରେ ବାହାରେ ସବୁଠି ମିଛର ରାଜୁତି । ଗାନ୍ଧିମାହାତ୍ମା ଭଳିଆ ଲୋକେ ଯିନା କହିଲେ—'ସତ୍ୟ ମୋ ଭଗବାନ ।' ହେଲେ ଆଉ ଅନ୍ୟମାନେ କ'ଣ ଏଇକଥାକୁ ମାନିଲେ ନା ଶୁଣିଲେ ? ବୁଢ଼ାଟା ଦେଶର ଏମୁଣ୍ଡରୁ ସେମୁଣ୍ଡ ଯାଏ ଅଣ୍ଟା ନ ଢାଙ୍କି ଧୋତି ଖଣ୍ଡେ ପିନ୍ଧି, ଖୋଲା ଦେହରେ ବୁଲି ବୁଲି କହିଲା 'ସତ କୁହ, ସତ କୁହ' —'ଅହିଂସା ମାଧ୍ୟମରେ ସତ୍ୟ ପାଖକୁ ଯାଅ ।' ଆରେ ବାପା, ତାଙ୍କର ଯିନା କିଛି ଦରକାର ନଥିଲା ସେ ସିଏ କହୁଥିଲେ ସତ କୁହ, ତ୍ୟାଗ କର । ଆମର ତ ସବୁକିଛି ଦରକାର । କ'ଣ ଆମର ଲୋଡ଼ା ନାହିଁ କହିଲେ ? ଆମର ତ ହରଷ୍ୟପର୍ଭ ! ଆମର ତୃଷ୍ଣା ଅନନ୍ତ । ଯେତେ ଯାହା ଖାଇଲେ କି ପିଇଲେ ଆମର ପେଟ ଭରେ ନାଇ କି ଶୋଷ ମେଣ୍ଟେ ନାଇ । ଏଥିରେ ଆମେ କେମିତି ସତ୍ୟ କହିବୁ ? ଆମେ କେବଳ କହିବୁ ସତ୍ୟ କୁହ—କାନ୍ଥବାଡ଼ରେ ଲେଖି ଝୁଲେଇ ଦେବୁ ଫଳକ—'ସତ୍ୟମେବ ଜୟତେ ।' ବାହାରକୁ ସତ୍ୟର ମୁଖାଟା ପିନ୍ଧି ଭିତରେ ଆମେ ମିଛ କହିବୁ । ମିଛଟା ଦରକାର ଯେ, ହେଲେ ସେଇଟା ହନୁମାନ ଲାଙ୍ଗୁଡ଼ରେ ନିଆଁ ଲଗାଇଲା ପରି ହେଲେ ଭଲ । ନିଜର ମୁଣ୍ଡଭେଦ ବିପଦରେ ମିଛରେ କହି ସାରା ଲଙ୍କାକୁ ପୋଡ଼ି ନାରଖାର କରିଦେଲା ହନୁମାନ । ଏଇଟା ଦୋଷ ନୁହେଁ । ଅତ୍ୟାଚାର କରୁଥିବା, ନାରୀହରଣ କରୁଥିବା, ଉପଭୋଗ ଭିତରେ ବୁଡ଼ି ରହୁଥିବା ରାବଣ ପାଇଁ ଯୋଗାଏ ଚେତାବନୀ ।

ଏବେ କିନ୍ତୁ ଆମେ ଯେଉଁ ମିଛ କହୁଚୁ ସେଇଟା ଆମର ଉପକାର ପାଇଁ, ଆମକୁ ରକ୍ଷା କରିବା ପାଇଁ । ମିଛ ନ କହିଲେ ଆମେ ବଡ଼ଲୋକ କେମିତି ହେବୁ ? ସତ୍ୟ କହିଲେ ଝୁଲା ଧରି ବୁଲିବୁ ଯିନା, ଖାଟ୍ ଉପରେ କେମିତି ବସିବୁ ? ଖାଟରେ ବସିବାକୁ ହେଲେ ମିଛ ଦରକାର । ଅଫିସ କରିବାକୁ ହେଲେ ମିଛ ଦରକାର । ସିଏ ମିଛଟାକୁ ନେଇ ଆଣି ଖୋଇପାରେ ତାର କବାଟ ହୁଏ । ସିଏ ବାହାସ୍ଫୋଟ

ମାରେ । କେତେ କେତେ ଲୋକଙ୍କୁ ଭୁଟେଇ ଦେଲା ବୋଲି କହେ । ଆଗେ ଧନ ଥିଲା କି ନଥିଲା—ସେକଥା ଛାଡ଼ନ୍ତୁ । ଏବେ ଦେଖନ୍ତୁନା ଏଇଟା ସତ କି ମିଛ ! ଏବେ ଯେଉଁ ରାଜନୀତି ଚାଲିଛି ସେଥିରେ ସତ କହିଲେ କେହି ତିଷ୍ଠିପାରିବ କି ? ସତ କହିଲେ ଅଙ୍କା ! ଆପଣ କଣ ସତ କହି ବୈତରଣୀ ପାରି ହୋଇଯିବେ ? ଯେତେ ମିଛ କହିପାରିବେ ସେତିକି ଆପଣଙ୍କର ଜୟପଟ । ଜନତା କଣ କିଛି ବୁଝନ୍ତି କି ? ମିଛ ପ୍ରତିଶ୍ରୁତି କେବଳ ସେମାନଙ୍କୁ ଭୁଲାଏ । ସେମାନେ ଧାଆଁନ୍ତି ସୁନା ମିରିଗ ପଛରେ । ଅଥଚ ସେଇଟା ସୁନା ନୁହେଁ କି ମିରିଗ ନୁହେଁ; ଗୋଟାଏ ଅସୁର । ଆମେ ସମସ୍ତେ ପଡ଼ିଯାଇଚୁ ଏଇ ଅସୁର କବଳରେ । ତେଣୁ ଆମେ ମିଛକୁ ଆଦରି ନେଇଛୁ । ସତକୁ ଦୂରରୁ ନମସ୍କାର କରୁଛୁ । କାରଣ ସତ୍ୟକୁ ବରଣ କରିନେଲେ ଆଉ କିଛି କରିହେବ ନାହିଁ । ବଡ଼ତି ହେବନାହିଁ । ନିଜର ବଡ଼ତି ପାଇଁ ମିଛ ଦରକାର—ତାହା ମିଛ । କଣ ଦରକାର ଅନ୍ୟମାନଙ୍କ କଥା ଚିନ୍ତା କରିବାରେ ? ନିଜେ ବଞ୍ଚ । ଆଗେ ବଞ୍ଚିଯାଅ, ବଢ଼ିଯାଅ । ଆକାଶକୁ ମୁଣ୍ଡ ଛୁଇଁଯାଉ । ତା'ପରେ ଅନ୍ୟମାନଙ୍କୁ ବଞ୍ଚେଇବ କି ନାହିଁ ବିଚାର କରିବ । ନିଜେ ଯିନା ବଡ଼ଲୋକ ହେଲେ ତମକୁ ପାଞ୍ଚଜଣ ମାନିବେ, ତମ କଥା ଶୁଣିବେ ! ନ ହେଲେ କିଏ ମାନିବ ନା ଶୁଣିବ ? ଏଇ ବଡ଼ଲୋକ ହେବାକୁ ହେଲେ ମିଛଟା ଯେ ନିହାତି ଦରକାର—ଏକଥାକୁ କଣ ମନା କରିହେବ ? ତମେ ଯଦି ବଣିକ ବ୍ୟବସାୟ କରିବ ସେଥିରେ ସତରେ ଗଲେ କଣ ଶୁଭ ଲାଭ ମିଳେ କି ? ଲକ୍ଷ୍ମୀ କଣ ଧସେଇ ଆସି ତମ ଘରେ ପଶିଯାଆନ୍ତି କି ? ଯାବତ ମିଛ କହିବାକୁ ହେବ, ଯାବତ କାରସାଦି କରିବାକୁ ହେବ । ବାହାରକୁ କହିବ ଯେ ତମେ ବଡ଼ ଦୁଃଖରେ ଅଛ । ଯେତେପାର ସେତେ ହରିନାମ ନେବ । ରାମ ରାମ କହୁଥିବ । ଉପରେ ଉପରେ କିଛି କିଛି ଧର୍ମକାମ କରୁଥିବ । ଚାନ୍ଦାଭେଦା ଦଉଥିବ । ତେଣିକି ତୁମେ ଭିତରେ ଗୋଟାଏ କଳା-ସାମ୍ରାଜ୍ୟ ବିସ୍ତାର କରିଦେବ । କେହି ତମକୁ ଧରିପାରିବେ ନାହିଁ । ଏଇଟା ତ ଗୋଟାଏ ମୁଖାର ଯୁଗ । ମୁଖାକୁ ଠିକ୍ ଭାବରେ ପିନ୍ଧିଥାଅ । ତା'ପରେ ତୁମେ ଅଭିନୟ କରିଯାଅ । ଅଭିନୟଟା ଠିକ୍ ହେଲେ ସବୁ ଠିକ୍ ହେବ । ତୁମ ଡଙ୍ଗା ଚାଲିଥିବ ଅବାଧ ଗତିରେ । ତେଣିକି ତୁମେ ଯାହା କର । ଯେତେ ଅନ୍ୟାୟ କର କି ପାପ କର । ତୁମକୁ କେହି କହିବେ ନାଇଁ । କେହି ଧରିବେ ନାଇଁ । କିଏ କହିବ ? କିଏ ଧରିବ ? ଯିଏ କହିବାକୁ ଯିବ କି ଧରିବାକୁ ଯିବ, ସିଏ କୋଉ ସତିଆ କି ? ସିଏ ବି ମିଛର ଗୋଟାଏ ଭେଳିକି । ଏବେ ଯୁଆଡ଼େ ନାଇ ସିଆଡ଼େ ଦେଖିବ ଖାଲି ମିଛ କଣାବଣା ଚାଲିଛି । କେବଳ କହିବା ସାର ହେଉଛି । ଯିଏ ଯେତେ ପାରୁଛି ସିଏ ସେତେ କହୁଛି । ଯିଏ ବେଶୀ କହିପାରୁଛି ସିଏ ସବୁଠୁ ବଡ଼ ନେତା ହୋଇଯାଉଛି । ବନେଇ ଚୁନେଇ, ବାଛେଇ ସାଜେଇ କହିପାରିଲେ

ତାହା ମିଛ ବା ସତ ପର ଜଣାଯାଏ । ପୁଣି ସିଂହାସନ୍ଥ ମଣିଷ ଯାହା କହେ ତାକୁ ତ ଲୋକମାନେ ଅମୃତ ପରି ପିଇଯାଆନ୍ତି । ବ୍ରହ୍ମା ବଳିବଳେଇଲେ ବେଦ ହୋଇଗଲା ପରି ଏଇ ସିଂହାସନ୍ଥ ମଣିଷ ଯାହା କହେ ସେଇଟା ହୋଇଯାଏ ବେଦ । ଏଇ ନୂଆ ବେଦକୁ ଆପଣ ହୁଏତ କହିପାରନ୍ତି ସୃଷ୍ଟବେଦ—ମିଛ ବେଦ । ଏଇ ବେଦର ଏତେ କରାମତି ଯେ ତାକୁ ସହଜରେ ଫାଙ୍କି ଦେଇ ହୁଏନାହିଁ । ଏଇଟା ରାଜନୀତି, ସମାଜନୀତି, ଶାସନନୀତି ସବୁକିଛିକୁ ନିୟନ୍ତ୍ରଣ କରୁଛି । ଲୋକମାନେ ତାର ମାୟାରେ ପଡ଼ିଯାଇଛନ୍ତି । ସେଥିରୁ ଆଉ ମୁକୁଳିଯିବାକୁ ରାସ୍ତା ପାଉ ନାହାନ୍ତି ।

ତୁମେ ଯାହା କହିବ—ଉଚ୍ଚବାର ହାଲପ କରି ସତ କହିବ ବୋଲି କହିବ । ତେଣିକି ତୁମେ ମିଛ ଗପିଯାଅ—କିଛି ଯାଏ ଆସେ ନାହିଁ । ତୁମେ କଥାହାକୁ ଇମିତି ବାଗେଇ କହୁଥିବ ଯେ କୋଉ ଓକିଲ ବା ଜଜ୍ ସାହେବ ତୁମକୁ ଧରି ପାରିବ ? ତୁମେ କ୍ଷଣକରେ ହାତମାରି ମିସଲ ଉପରୁ ଓହ୍ଲାଇ ଆସିବ ଏବଂ କହିବ—ଏଇ ଦେଖିଲ; କେମିତି ଭୂଆଁ ବୁଲେଇ ଦେଲି ! ଜନସମାବେଶରେ ତୁମେ ଛିଡ଼ା ହୋଇ ମେଘ ଗର୍ଜନ ପରି କହିଯିବ—କ’ଣ କ’ଣ ଦେଶ ପାଇଁ କରିଛ । କିଏ ତା’ର ହିସାବ ନେଉଛି କି ? କେହି ହିସାବ କିଏ ନାହିଁ, କେହି ପ୍ରଶ୍ନ କରନ୍ତି ନାଇ । ଅଥଚ କଥାଗୁଡ଼ାକରେ ଲୁହ ଗଡ଼ାନ୍ତି । କପାଳରେ କର ମାରନ୍ତି । ହାୟ ହାୟ ହୁଅନ୍ତି । ତୁମେ ଏସବୁ କଥା ଠିକ୍ ଠିକ୍ ଜାଣିଚ । ତୁମେ ଜାଣିଚ କେମିତି ନାଗେଶ୍ୱରୀ ବଜାଇ ବିଷଧର ସାପକୁ ବଶୀଭୂତ କରିବ । ତୁମେ ମଧ୍ଯ ଜାଣିଚ ମେଘ ମହ୍ଲାର ଗାଇ ଅସମୟରେ ବର୍ଷା କରି ପାରିବ । ତୁମକୁ ସବୁ କାଇଦା ମାଲୁମ । ତୁମେ କାନ୍ଦିପାର, କନ୍ଦେଇପାର । ହସିପାର, ହସେଇପାର । ତୁମେ କାନ୍ଦିଲେ ଲୋକ କାନ୍ଦନ୍ତି । ତୁମେ ହସିଲେ ଲୋକ ହସନ୍ତି । ଲୋକ କିନ୍ତୁ ବୁଝେ ନାଇ ତୁମେ କାନ୍ଦୁଚ କି ନାଇ, ହସୁଚ କି ନାଇ । ଲୋକ କହିଲେ ଠିକ୍ କୁନି କୁନି ପିଲା ପରି । ଚକୋଲେଟ ଦେଖାଇ ପିଲାଙ୍କୁ ଭୁଲାଇଲା ପରି ତୁମେ ଅତି ସହଜରେ ସେମାନଙ୍କୁ ଭୁଲାଇ ଦିଅ । ତୁମର ଯାଦୁମନ୍ତ୍ରୀ ଖେଳର ଭିତରି ରହସ୍ୟକୁ ଲୋକ ଜାଣେ ନାହିଁ । ଏଥିପାଇଁ ଲୋକର ଦୁର୍ଦ୍ଦଶା । ତା’ର ଭାଗ୍ୟ ଯେଉଁ ପଥର ତଳକୁ ସେଇ ପଥର ତଳ ।

ଆଜିକାଲିକା ଯୁଗରେ ସତ୍ୟର ମୂଲ୍ୟ ନାହିଁ । କାହିଁକନା ସତ୍ୟ କହିଲେ କିମ୍ବା ସତ୍ୟ ପଥରେ ଚାଲିଲେ ଉପରକୁ ଉଠି ପାରିବ ନାଇ । ପଥର ମୁଣ୍ଡେଇ ଉଚ୍ଚ ହାତ ଉପରକୁ ଚଢ଼ିଲେ ଦୁଇହାତ ତଳକୁ ଖସି ଆସୁଥିବ । ପଥର ଗଡ଼ି ପଡ଼ୁଥିବ । ପୁଣି ଟେକି ଉଠଉଥିବ । ଆଜିର ପ୍ରତିଯୋଗିତାମୂଳକ ସମାଜରେ ତୁମେ ସତ୍ୟକୁ ଧରି ଉପରକୁ ଉଠି ପାରିବ କି ? ତମ ପୃଷ୍ଠପଟେ ତ ମିଛର ମାୟା କୁହେଳିକା ।

ତାଙ୍କୁ କ'ଣ ତମେ ଜାଣିପାରିବ ନା ଉପରକୁ ଚଢ଼ି ପାରିବ ? ତମକୁ ଉପରକୁ ଯିବାକୁ ହେଲେ ମିଛକୁ ଆଦର କରିବାକୁ ହେବ । ତମର କଣ୍ଠ ଯେମିତି ସୋପାନଟା ନଥାଉ । ମିଛ ଅଛି ତ ! ପରବାୟୁ କ'ଣ ? ଏଇ ମିଛଟାକୁ ଅଭ୍ୟାସ କରିନେଲେ ତମେ ସମସ୍ତଙ୍କ ଚିତ୍‌ପଟାଙ୍ଗ କରିଦେବ ଅଳ୍ପକ୍ଷଣରେ । ତମେ ବାଜିମାତ୍‌ ମାରିନେବ । ତେଣିକି ତମର ବଢ଼ିଆ ହେବ । ଚୌଦିଗରେ ଅସ୍ତ୍ର ଉଚ୍ଚ [illegible] ! ସବୁଆଡ଼େ ତମର ଜୟଜୟକାର ପଡ଼ିଯିବ । ତେବେ କଥା କ'ଣ କି ବଡ଼ଲୋକଙ୍କ ମିଛ ଯୁକ୍ତାଏ । ମିଛ କହି ସେମାନେ ପାର ହୋଇ ଯାଆନ୍ତି । ସିଡ଼ି ଫଳରେ ଚଢ଼ି ଉପରକୁ ଉଠନ୍ତି । ସାନ ଲୋକମାନେ କ'ଣ ମିଛ କହି ସମ୍ଭାଳି ହୋଇ ପାରନ୍ତି ? ତାଙ୍କ ମିଛ ଧରାପଡ଼ିଯାଏ । ତେଣିକି ତାଙ୍କ ଅବସ୍ଥା କହିଲେ ନସରେ । ସାଧୁଲୋକେ ସତ କୁହନ୍ତି ଯେ ହେଲେ ସତ ପାଇଁ କମ୍ ଦଣ୍ଡ ପାଆନ୍ତି । ଯୀଶୁଖ୍ରୀଷ୍ଟ ସତ୍ୟ କହିଲେ ବୋଲି ତାଙ୍କୁ କ୍ରୁଶବିଦ୍ଧ କରାଗଲା । ସକ୍ରେଟିସ୍ ସତ୍ୟ କହିଲେ ବୋଲି ବିଷ ପିଆଇ ଦିଆଗଲା ତାଙ୍କୁ । ଗାଲିଲିଓ ସତ୍ୟ କହିଲେ ବୋଲି ତାଙ୍କୁ ପାଗଳ ଘୋଷଣା କରାଗଲା । ସେଇ ସତ୍ୟପାଇଁ ଗାନ୍ଧିଜୀଙ୍କୁ ଗୁଳିବିଦ୍ଧ କରାଗଲା । ସତ୍ୟପାଇଁ ହିଁ ଯନ୍ତ୍ରଣା ସହିବାକୁ ହୁଏ, ଦଣ୍ଡ ଭୋଗିବାକୁ ହୁଏ । ତମେ ଦଣ୍ଡ ପାଇସାରିଲା ପରେ, ମୃତ୍ୟୁବରଣ କରିସାରିଲା ପରେ, ତମକଥା ହୁଏତ କେହି ମନେପକାଇପାରେ, ତମକୁ ପୂଜା କରି ପାରେ, ତମ ମୂର୍ତ୍ତି ପ୍ରତିଷ୍ଠା କରିପାରେ, ହେଲେ ତମ ଜୀବିତାବସ୍ଥାରେ ତମକୁ କେହି ପଚାରିଲା କି ? ସତ୍ୟ ଅବଶ୍ୟ ମରିଯାଏ ନାଇଁ । ଦିନେ ନା ଦିନେ ସେ ଫୁଟିଉଠେ । ଏଇ ଯେମିତି ସାନରାଣୀର ସାତପୁଅ ଓ ଝିଅକୁ ମାରି ମାଟି ତଳେ ପୋତି ଦିଆଗଲା । କେହି ଜାଣିପାରିଲେ ନାହିଁ ଏକଥା । ଅଥଚ ମାଟିତଳୁ ସେଇ ଶବ ଭିତରୁ ଫୁଲଗଛ ଉଠିଲା । ପତ୍ର ଓ ଫୁଲରେ ନଦ ହେଲା । ରଜାଘର ମାଳୀକୁ ଦେଖି ଫୁଲଗଛ କହି ଉଠିଲା—'ଭାଇରେ ଭାଇ, ରଜାଘର ମାଳୀ ଆସିଚ/ଦେବା କି ନଦେବା ଫୁଲ ?' ତେଣୁ ସତ୍ୟକୁ ଯେତେ ଲୁଚାଇବାକୁ ଚେଷ୍ଟା କଲେ ବି ସତ୍ୟ ଲୁଚେନାହିଁ । ଦିନେ ନା ଦିନେ ସତ୍ୟ ପ୍ରକାଶ ପାଏ । ସୁବିଧାବାଦୀ ସୁଖଲୋଭୀ ମଣିଷ ସତ୍ୟକୁ ଡରେ । ତେଣୁ ସତ୍ୟର ତଣ୍ଟି ଚିପି ଦେବାକୁ ଚେଷ୍ଟା କରେ । ନିଜେ ଯାହା ନୁହେଁ ତା'ଠାରୁ ଅଧିକା ଜଣା ଜଣେ । ନିଜର ଡିଣ୍ଡିମ ବଜାଏ । ତା'ପାଖରେ କୌଣସି ମାନବିକ ମୂଲ୍ୟବୋଧ ରହେନାହିଁ । ସେ ହୋଇଯାଏ ମୂଲ୍ୟର ଉପାସକ, 'ଦେ-ନେ'ର ମଣିଷ । ଆଲୁଅରେ ସତ୍ୟର ଭେଳକି ଦେଖାଇ ଅନ୍ଧାରରେ ମିଛର ପୂଜା କରେ । ସେଇପରି ମଣିଷକୁ ଆମେ ସ୍ତୁତିକରୁ, ପୂଜାକରୁ, ସେ ଯାହା କହେ ତାକୁ ଅମୃତ ପରି ପିଇଯାଉ । ସିଏ ଯେ ତୁଳସୀ ବଣର ବାଘ ଆଉ ତୁଳାମୁହାଁ କାଙ୍କ—ଏକଥା ଆମେ ଜମା ଜାଣି ପାରୁନା ।

ଏଇଥିପାଇଁ କହୁଚି ମାଧୁ ସାବଧାନ ! ତମେ ସତ୍ୟର ଉପାସକ ହୁଅ କି ନ ହୁଅ—ମିଛକୁ ଟିକେ ଚିହ୍ନି ରଖ । ମିଛକୁ ଚିହ୍ନିଗଲେ ତମର ଆଉସବୁ ଚିହ୍ନିବା ଠିକଣା ହୋଇଯିବ । ଜୀବନ-ସଂଗ୍ରାମରେ ହୁଏତ ତମେ ଉପରକୁ ଉଠି ନ ପାର; ଅନ୍ତତଃ ଆତ୍ମସନ୍ତୋଷ ତ ପାଇଯିବ ଯେ ତମେ ସତ୍ୟ ମାର୍ଗରେ ଅଛ । ସତ୍ୟ ତମକୁ ଦେବ ଶାନ୍ତି । ମିଛ ଦେବ ସୁଖ । ଶାନ୍ତି ଆତ୍ମଗତ । ଅନ୍ତରର ଗୋଟାଏ ଦିବ୍ୟବାଣୀ ସୁଖ ବସ୍ତୁଗତ । ତେଣୁ ଏହା କ୍ଷଣିକ । ଏଥର ଠିକ୍ କରନ୍ତୁ କ'ଣ ତମର ଲୋଡ଼ା—ସୁଖ ନା ଶାନ୍ତି ? ତମେ ଠିକ୍ କରି ନିଅ । ତମେ ଯଦି ମିଛର ଲାଞ୍ଜ ଧରି ବୈତରଣୀ ପାର ହେବ ତ ହୁଅ । କିଏ ମନା କରୁଛି କି ? ସମସ୍ତେ ତ କରୁଛନ୍ତି । ତମେ ଏବେ କର । ମନେରଖ ମଝି ନଈରେ ଯେମିତି ବୁଡ଼ି ନଯାଅ । ବୁଡ଼ିଗଲେ କେହି ତମକୁ ଉଦ୍ଧାର କରିବେ ନାଇ । ସୁଖଭୋଗୀ ମଣିଷ କ'ଣ ଅନ୍ୟର ଦୁଃଖ ଦେଖି ବ୍ୟସ୍ତ ହୁଏ ? ସିଏ ତ କହେ—ଆପେ ବଞ୍ଚିଲେ ବାପର ନାଁ । ତମେ ଯଦି ଶାନ୍ତି ଚାହଁ ତେବେ ସତ୍ୟକୁ ଆଶ୍ରା କର । ଏଇ ପଥ କିନ୍ତୁ କଣ୍ଟକିତ । ପଦେ ପଦେ କ୍ଷତବିକ୍ଷତ ହେବ । ରକ୍ତ ଝରିବ । ତଥାପି ବିଚଳିତ ହେବ ନାହିଁ । ଶେଷକୁ ତମର ବିଜୟ । ଶାନ୍ତି ତମ ପାଖକୁ ଆସିଯିବ ଆପେ ଆପେ । ତମେ ହିମାଳୟ ଆରୋହଣ କରି ସ୍ୱର୍ଗକୁ ଯିବ । ଇନ୍ଦ୍ରଙ୍କ ରଥ ଆପେଇ ଆସିବ ତମକୁ ପାଛୋଟି ନେବା ପାଇଁ । ଯେଉଁମାନେ ସୁଖଭୋଗୀ ସେମାନେ ସମସ୍ତେ ଖସିପଡ଼ିବେ ତଳକୁ—ରସାତଳକୁ । ଏଇଆ ସତ୍ୟ ଯେ ସୁଖଭୋଗୀ ମଣିଷ କିନ୍ତୁ ନାନା ମନଇଚ୍ଛା ସୁଖ ଭୋଗ କରି ଯାଆନ୍ତି । ସେମାନେ ବର ପାଇଥାନ୍ତି । ବରକୁ କିନ୍ତୁ ଆପଣା ସ୍ୱାର୍ଥରେ ଇମିତି ଲଗାଇ ଦିଅନ୍ତି ଯେ ଅନ୍ୟ କାହାର କଥା ଭାବନ୍ତି ନାଇ । ସ୍ୱର୍ଗର ଅପ୍ସରା, ପାରିଜାତ ଫୁଲ ସବୁ ସେମାନେ ଭୋଗ କରିଯାଆନ୍ତି । ଇନ୍ଦ୍ର ଚନ୍ଦ୍ର ସେମାନେ ମାନନ୍ତି ନାଇ । ଗୋଟିଏ ଉପଭୋଗ-ତୃଷା ସେମାନଙ୍କୁ ଘାରି ଦେଇଥାଏ । ଯେତେ ଯାହା ଭୋଗ କଲେ ବି ତୃପ୍ତି ମିଳେ ନାଇ । ସେମାନେ ଚିର ଅତୃପ୍ତ । ଚିର ଅଶାନ୍ତ । ନିଜର କ୍ଷମତାକୁ ଏକମାତ୍ର ସତ୍ୟ ମନେ କରନ୍ତି । ଅଥଚ ଇମିତି ଗୋଟାଏ ଗୋଟାଏ ମୁହୂର୍ତ୍ତ ଆସି ପହଞ୍ଚିଯାଏ, ସବୁ ଫୁଟାଣି ପାଣି ଫୋଟକା ପରି ମିଳେଇ ଯାଏ । ସିଂହାସନ ଯାଏ । ସାମ୍ରାଜ୍ୟ ଯାଏ । ସାହାଯ୍ୟକାରୀମାନେ ଯାଆନ୍ତି । ଏଇ ଉପଭୋଗୀ ମଣିଷ ପୁଣି ଭସ୍ମାକୁ । ଯେତେ ମେଘନାଦ ପାଟେସ୍ୱ କଲେ ମଧ୍ୟ ନିମିଷକେ ତାହା ଭୁଷୁଡ଼ି ପଡ଼େ । ଜାଣେ ଗୋପପୁରରୁ କୃଷ୍ଣଚନ୍ଦ୍ର ଆସିଯିବ, ସିଂହାସନରୁ ଖସିପଡ଼ିବ; ଏଇ ଭୟରେ କଂସ ସାରା ଗୋପପୁରର କଅଁଳା ପିଲାଙ୍କୁ ମରେଇଲା । କୃଷ୍ଣଙ୍କୁ ମାରିବା ପାଇଁ କେତେ ନାଇ କେତେ ଫିକର କଲା । ଅଥଚ କୃଷ୍ଣଙ୍କୁ ହଠାତ୍ ସିଂହାସନ ତଳେ ଦେଖି ଦେଇ ଗଡ଼ି ପଡ଼ିଲା ତଳକୁ । ଉପଭୋଗୀ ମଣିଷର ଭସ୍ମଟା ଥାଏ ତା' ଭିତରେ । ସେଇଟା ହିଁ ତାକୁ ମାରେ । ଗଡ଼େଇ ପକାଏ ।

ଏଇକଥା ପଦକ ମଣିଷ ବୁଝି ପାରୁନାଇ । ଗୋଟାଏ ମିଛର ମାୟା କୁହେଳିକା ସୃଷ୍ଟି କରି ଦେଉଚ ତା' ସ୍ମୃତିପଟେ । ତା'ର ଭିତରେ ରହୁଛି । ସେଇଟା ଯେ ଗୋଟିଏ କାଚଘର; ଏକଥା ମୋଟେ ଜାଣି ପାରୁନାଇ । ସିଏ ଖାଲି କଦ୍ରୁପରି ଧଳା-ଘୋଡ଼ାକୁ କଳା କହୁଚ । ସେଇଆକୁ ପ୍ରମାଣ କରିବା ପାଇଁ ତା' ପୁଅମାନଙ୍କୁ ଲଗାଇ ଦେଉଚ । ବିନତାକୁ ଦାସୀ କରି ରଖୁଚ । ଅଥଚ ଗରୁଡ଼ ସବୁ ମିଥ୍ୟାକୁ, ସବୁ ପ୍ରତାରଣାକୁ ମୁଦ୍ଗୁଡ଼ିକ ଭିତରେ ପଦାରେ ପକାଇ ଦେଇଚ । ଗରୁଡ଼ ସତ୍ୟର ପ୍ରତୀକ । ସେଇ ସତ୍ୟ ପାଇଁ ସେ ଅସମ୍ଭବକୁ ସମ୍ଭବ କରିଚ । ସତ୍ୟକୁ ପିଠିରେ ବନ୍ଧନ କରି ଘୂରିଚ । ତେବେ ଯୁଗ ବଦଳିବା ସଙ୍ଗେ ସଙ୍ଗେ ସତ୍ୟ ମଧ ବଦଳୁଚ । କେଉଁଟା ସତ୍ୟ, କେଉଁଟା ମିଥ୍ୟା; ଜାଣିବା ମୁସ୍କିଲ ହୋଇ ଯାଉଚ । ଆଜି ଯାହା ସତ୍ୟ କାଲି ତାହା ମିଥ୍ୟା ହୋଇଯାଉଚ । ଆଜି ଯାହା ମିଥ୍ୟା କାଲି ତାହା ସତ୍ୟ ହୋଇ ଯାଉଚ । ସତ୍ୟ ଆଉ ମିଥ୍ୟା ଆପେକ୍ଷିକ ମନେ ହେଉଛି । ଏହା ସତ୍ତ୍ୱେ ସର୍ବଜନୀନ ସତ୍ୟ ହିଁ ପ୍ରକୃତ ସତ୍ୟ । ତା'ର ପରିବର୍ତ୍ତନ ହୁଏ ନାହିଁ । ଏଇ ସତ୍ୟ ହିଁ ଧରିରଖେ ଜଗତକୁ, ମଣିଷକୁ, ସୃଷ୍ଟିକୁ । ଏଇ ସତ୍ୟ ଯେଉଁଠି ଭୁଷୁଡ଼ି ପଡ଼େ ସେଇଠି ଦେଖାଦିଏ ଖଣ୍ଡ ପ୍ରଳୟ । ମିଥ୍ୟା ଆଉ ରକ୍ଷା କରିପାରେ ନାଇ । ଏଇ ସହଜ କଥାଟାକୁ ଆମେ କ'ଣ ସ୍ୱୀକାର କରିବା ନାହିଁ ? ଶୁଣ; କେହି ନ କରନ୍ତୁ । ତେଣିକି ପ୍ରଳୟ ଆଉ କେତେ ବାଟ କି ?



# ଟିକିଏ ଶୁଣିଦେବ କି

ଅସୁବିଧାରେ ପଡ଼ିଲେ କିମ୍ବା ଦୁଃଖରେ ଭାଙ୍ଗି ପଡ଼ିଲେ ମଣିଷ ସୁବିଧାରେ କିମ୍ବା ସୁଖରେ ଥିବା ମଣିଷକୁ ନିଜର ଦୁଃଖ ଜଣାଏ । କାକୁସ୍ଥ ହୋଇ ସେ କହେ —'ଆଜ୍ଞା ! ଟିକେ ଶୁଣିବେ କି' । କେହି ହୁଏତ ଶୁଣେ ଅଥବା ଅନ୍ୟ କେହି ଶୁଣେ ନାହିଁ । ତଥାପି ଦୁଃଖୀ ମଣିଷ ତାର ଦୁଃଖ କାହାଣୀ ଶୁଣାଏ । ଅନନ୍ତ-କାଳରୁ ମଣିଷ ଏମିତି ତାର ଦୁଃଖ ଶୁଣାଇ ଶୁଣାଇ ଆସିଛି, କେତେ ବାଗରେ, କେତେ ଭଙ୍ଗିରେ । କେତେବେଳେ ଦାନ୍ତ ନିକୁଟି ଜଣେଇଚ ତ କେତେବେଳେ ଲୁହ ଝରେଇ ଜଣେଇଚ । ବୁଢ଼ା ନାତିକ ପରି ସେ ଯାହାକୁ ଦେଖିଚି ତାକୁ ଶୁଣାଇବାକୁ ଚାହିଁଚି ତା' କଥା । କିଏ ଶୁଣୁଚି ବା କାହା କଥା ? କାହାର ବା ବେଳ ଅଛି ? ସମସ୍ତେ ତ ଧାଉଁଛନ୍ତି, ଧପାଡ଼ୁଛନ୍ତି । ଯିଏ ପଛକୁ ଫେରି ଚାହିଁଲା ସେ ଗଲା । ରସାତଳରେ ପଡ଼ି ଦ୍ରୌପଦୀ ଆଉ ଭୀମାଦି ଚାରିଭାଇଙ୍କ ପରି ମଲା । ସେଇଥି-ପାଇଁ ସଭିଏଁ ଚାଲିଯାଉଛନ୍ତି, ଧାଇଁ ଯାଉଛନ୍ତି । —କାହାରି କଥା ଶୁଣିବାକୁ ନାହିଁ । ଯିଏ ଶୁଣିଲା ସିଏ ବୁଢ଼ା ନାବିକ କବଳରେ ପଡ଼ିଗଲା ପରି ଅଟକି ରହିଲା । ବୁଢ଼ା କଥା ଶୁଣିସାରିଲା ବେଳକୁ ତେଣେ ତାର ସାଙ୍ଗସାଥୀମାନେ ବିବାହ ଶୋଭାଯାତ୍ରାରେ ଯାଇ ମଉଜ ମଜ୍‌ଲିସ ସାରି ବାହୁଡ଼ି ଗଲେଣି । ଅଥଚ ସିଏ ପଡ଼ିଗଲା ବୁଢ଼ା ଖପ୍ପରରେ । ଯୋଡ଼ି ହୋଇଗଲା ତା' ହୃଦୟ ସହିତ ବୁଢ଼ାର ହୃଦୟ । ବୁଢ଼ା ତା' କଥା କହିଦେଇ ଆଶ୍ୱସ୍ତ ହୋଇଗଲା—ଯାହା ହେଉ ଏତେ ଦିନକେ ସେ ମଣିଷ ପରି ମଣିଷଟିଏ ପାଇଲା । ଅନ୍ତତଃ ତା' କଥା ଜଣେ ଶୁଣିଲା ମନଦେଇ । ବୁଢ଼ା ତ କାହାକୁ କିଛି ମାଗୁ ନଥିଲା, କାହାର ଦୟା ଦାକ୍ଷିଣ୍ୟ ମଧ୍ୟ ଚାହୁଁ ନଥିଲା । କେବଳ ତା'କଥା ଟିକେ ଶୁଣାଇବ । ଅନେକ ଦିନର ସଞ୍ଚିତ ବ୍ୟଥାକୁ ପ୍ରକାଶ କରିଦେଲେ ସନ୍ତୋଷ ପାଇବ । ଦରଦୀ ମଣିଷଟିଏ ନ ମିଳିଲେ କିଏ ଶୁଣିବ କାହା କଥା ?

ଦରଦୀ ମଣିଷ ମିଳନ୍ତି ନାହିଁ । ଅନ୍ୟର କଥା ଶୁଣିବା ପାଇଁ ମଣିଷ ପ୍ରସ୍ତୁତ ହୁଏ ନାହିଁ । ତାର ଆଶଙ୍କା କାଳେ କିଏ ତାକୁ କମିଆ କରିଦେବ । ଫୁଲ ଶୁଙ୍ଘେଇ ଦିନରେ ମେଣ୍ଢା, ରାତିରେ ମକର ପୁରୁଷ କରିଦେବ । ଅଥବା କାଳେ କିଏ ନେଇ କେଉଁ ଦେବୀ ମନ୍ଦିରରେ ବଳି ପକାଇ ଦେବ । ନ ହେଲେ ଏମିତି

ଗୋଟାଏ ଖାଲରେ ପକାଇ ଦେବ ଯେ ଉଠି ଆସିବା କାଠିକର ସାଠ ହୋଇଯିବ । ଏଣେ ସତ୍ତ୍ୱେ ବି ମଣିଷ ଶୁଣାଏ ଆଉ ମଣିଷ ମଧ୍ୟ ଶୁଣେ । ଯିଏ ଶୁଣାଏ ସିଏ ବାକୁଷ୍ଟ, ଅଣ୍ଡି । ଯିଏ ଶୁଣେ ସିଏ ହେଉ ମୁହୂର୍ତ୍ତି ପାଇଁ ପ୍ରଭୁ ପାଲଟି ଯାଏ । କୌଣସି ଏକ ଅଜଣା ଜାଗାକୁ ଯାଇ ବାଟ ଭୁଲିଗଲେ ବିଚରା ବାଟୋଇଟି ହଠାତ୍ କୌଣସି ଲୋକଙ୍କୁ ଦେଖିଲେ ବିନମ୍ର ହୋଇ କହେ—'ଆଜ୍ଞା ! ଟିକିଏ ଶୁଣିବେ କି ।' କିଏ ଶୁଣେ ? ଜାଣିଥିଲେ ବାଟ ବତେଇ ଦିଏ । କେହି କେହି ଗୁଳିକଥା ଲୋକ କୌତୁକ କରିବା ପାଇଁ ଭୁଲ ବାଟଟିଏ ବତେଇ ଦିଏ । ଭୁଆଁ ବୁଲୁଥାଏ ବିଚରା ବାଟୋଇଟି । କୂଳ କିନାରା ପାଏ ନାଇ । କାହାର କାହାର ଅଭିଜ୍ଞତା ଥାଇପାରେ ଯେ ସ୍ୱଚ୍ଛ ଅଧରେ ରାସ୍ତାରେ ଯାଉଁ ଯାଉଁ ହଠାତ୍ ଗୋଟିଏ ଯୁବତୀ ସ୍ତ୍ରୀଲୋକଡ଼ିରୁ ଅସ୍ୱାସ୍ଥ୍ୟ ଅବସ୍ଥାରେ ଗାଡ଼ି ଆଗକୁ ଧାଇଁ ଆସି ହାତ ଟେକି ଛିଡ଼ା ହୋଇଯାଇ କହେ—'ଆଜ୍ଞା ! ଟିକିଏ ଶୁଣିବେ କି ।' ଗାଡ଼ିବାଲା ଯଦି ଗାଡ଼ି ଅଟକାଇ ଦିଏ ତ ତେବେ ଦଫା ନିକମ୍ମିଗଲା ଜାଣ । ପେଟ୍ରୋଲ ପ୍ରାଣଟା ହୁଏତ କେଉଁ ଛଟକରେ ଗୁଳିଯାଇପାରେ । ମଦ ପିଇ ମାତାଲ ହୋଇଥିବା ବ୍ୟକ୍ତି ଯଦି ତୁମକୁ ଡାକେ—ଟିକିଏ ଶୁଣିଯାଅ ବୋଲି କହେ, ତମେ କଣ ଶୁଣିବ କି ? କାହାକୁ ଜାଣିବ ! କାହାକୁ ଚିହ୍ନିବ ? ସମସ୍ତେ ତ ମଣିଷ ପରି ଦେଖାଯାଉଛନ୍ତି । ଭିତରେ ଯେ ଗୋଟାଏ ଜାନୁଆର ଜୀବ ଲହଲହ ହେଉଛି; ସେ କଥା କିଏ ଜାଣି ପାରିବ କି ? ହେଣ୍ଟାଳ ଗ୍ରୁଣ୍ଡା ପନ୍ଝା ଟେକି ସେଇ ଜାନୁଆରଟା ଲମ୍ଫ ଦେବାକୁ ଉଦ୍ୟତ ହୋଇଉଠେ । ଖାଲି ଟିକିଏ ଦରକାର ସୁଯୋଗ । ଦଣ୍ଡେ ଅଟକେଇ ଦେଇ ନିଜ ଆଡ଼କୁ ଟିକେ ଟାଣିଆଣି ପାରିଲେ ତେଣିକି ସେ ଖାପଟରେ ପଡ଼ିଯିବ । ବୃଦ୍ଧ ବ୍ୟାଘ୍ର ହାତୁଡ଼ିରେ କଙ୍କଣ ଲୋଭି ପଥିକ ପଡ଼ିଗଲା ପରି ପଡ଼ିଯିବ ଯେ ଆଉ ରକ୍ଷା ମିଳିବ ନାଇଁ । ମୋହିନୀଙ୍କ ମନଭୁଲା କଥାରେ ଅସୁରମାନେ ଭୁଲିଗଲା ପରି ଭୁଲିଯିବ ଯେ ଅମୃତ ତ ଦୂରର କଥା, ସୁରା ସେବନ କରି ଖାଲି ଉତ୍ପାତ କରିବ, ନିଜର ଧ୍ୱଂସକୁ ନିମନ୍ତ୍ରଣ କରି ଆଣିବ ।

ଯିଏ କହେ—'ଟିକିଏ ଶୁଣିବେ କି', ସିଏ କଣ ଶୁଣେଇବାକୁ ଚାହେଁ ? କଣ ତାର ଉଦ୍ଦେଶ୍ୟ ? କାହାକୁ ସିଏ ଶୁଣେଇବାକୁ ଚାହେଁ ତା' କଥା ? ଯାହାକୁ ନାଇ ତାହାକୁ ମଣିଷ ତା'କଥା ଶୁଣାଏ ନାଇ । ଯିଏ ନାଇ ସିଏ ମଧ୍ୟ ଶୁଣେ ନାଇ । ଯିଏ ଅନ୍ୟର ଦୁଃଖରେ ଦରଦୀ ହୁଏ ସେହି କେବଳ ଯାବତ ବିପଦ ଆସୁ ପଛେ ଶୁଣିବାକୁ ଆଗ୍ରହ ପ୍ରକାଶ କରେ । ଦରଦ ନଥିଲେ, ସହାନୁଭୂତି ନଥିଲେ; କେହି କାହା କଥା ଶୁଣେ ନାହିଁ । ସବୁ ଲୋକଙ୍କର ଦରଦ ଆସେ ନାଇ । ଅହଙ୍କାରରେ ଫାଟି ପଡ଼ୁଥିବା ମଣିଷର ଦରଦ ପ୍ରକାଶ ପାଏ ନାହିଁ । ଆପଣାର ସ୍ୱାର୍ଥରେ ବାନ୍ଧି ହୋଇ ପଡ଼ିଥିବା ମଣିଷର ସହାନୁଭୂତି ପ୍ରକାଶ ପାଏ ନାଇ । ସିଏ

ହୁଏତ କହେ ଯେ ତା'ଠାରୁ ଦକ୍ଷ ବ୍ୟକ୍ତି ଆଉ କେହି ନାଇ । ଏଇ ଯେମିତି ବଂଶ ଜନ୍ମେଇଲା ନନ୍ଦକୁ ଯେ ତା'ପରି ଦୟାଶୀଳ ଆଉ କେହି ନାଇ । ତା' ଉକ୍ତିମାନେ କେତେ କେତେ ହେଲେଣି ଦେଖିବା ପାଇଁ ସେ ବଡ଼ ଆଗ୍ରହୀ । ଅଥଚ ଏଇ ସହାନୁଭୂତି ଅନ୍ତରାଳରେ ଥିଲା ଘୋର ପ୍ରତିହିଂସାର ଭାବ । ଏପରି ବ୍ୟକ୍ତି ପ୍ରତାରଣା ଆଉ ଛଳନାକୁ ପୁଞ୍ଜି କରି ନେଇ ଥାଆନ୍ତି । ଦୀନ ଓ ଦଳିତଙ୍କୁ ସେମାନେ ପ୍ରାଣ ଦେଇ ଭଲପାଆନ୍ତି ବୋଲି ଘୋଷଣା କରନ୍ତି । ଦେଶ ଓ ଜାତିର ସେମାନେ ସେବକ ବୋଲି ପ୍ରଚାର କରିଦିଅନ୍ତି । ତଳେଇ କରି ଦେଖିଲେ ଜଣାଯିବ ଯେ ଏପରି ବ୍ୟକ୍ତିମାନେ କେବେହେଲେ ତଳିଆ ମଣିଷମାନଙ୍କର ଉଦ୍ଧାରଣ ଚାହାନ୍ତି ନାଇ । ଭିତରେ ସେମାନଙ୍କର କାମ କରୁଥାଏ ଚରମ ସ୍ୱାର୍ଥଟିଏ । ତଳିଆ ମଣିଷ ସେମାନଙ୍କ ସମକକ୍ଷ ହୋଇଗଲେ ତାହେଲେ ଆଉ ସେମାନଙ୍କୁ ମାନିବେ ନାଇ, ଆଜ୍ଞା ହଜୁର କହିବେ ନାଇ; ଏଇଥିପାଇଁ ସେମାନଙ୍କର ସବୁମତ ଆଶଙ୍କା ପ୍ରକାଶ ପାଉଥାଏ । ସେମାନଙ୍କ ସ୍ୱାର୍ଥପାଇଁ ଦେଶଗଣ୍ଡି ଗୁଣ୍ଡି ଶେଉଳ ଧରନ୍ତି ।

ଦରଦୀ ମଣିଷ ନିଆରା । ସିଏ ଆଦୌ ଦେଖେଇ ହୁଏ ନାଇ କି ନିଜ ଢୋଲ ନିଜେ ପିଟେ ନାଇ । ତାର ଧାରଣା ଯେ ମଣିଷ ଆଗେ ନିଜକୁ ଚିହ୍ନୁ, ନିଜକୁ ଜାଣୁ ଓ ନିଜକୁ ଭଲପାଉ । ଏଇ ଚିହ୍ନିବା, ଜାଣିବା ଓ ଭଲପାଇବା ଠିକ୍ ହୋଇଗଲେ ସେ ଅନ୍ୟ ସମସ୍ତଙ୍କୁ ଜାଣିବ, ଚିହ୍ନିବ ଓ ଭଲପାଇବ । ଏହା ନ ହେଲେ ସେ କେବଳ ଭଲପାଇବ ନିଜର ନିଜସ୍ୱାର୍ଥ, ପ୍ରବୃତ୍ତିକୁ । ଉପଭୋଗ-ବୃତ୍ତି ଭିତରେ ବୁଡ଼ି ରହି ସେ ନିଜକୁ ଖୁବ୍ ବଡ଼ ମନେ କରେ । ଏପରି ବ୍ୟକ୍ତି ପ୍ରକୃତରେ କାହାରି କଥା ଶୁଣେ ନାଇ । ସେ କେବଳ ଛଳନା କରେ, ପ୍ରତାରଣା କରେ । ତାର ଛଳନା ମାରୀଚର ସୁନାମୃଗ ହେବାପରି । ବେଶ୍ ଲୋଭନୀୟ । ଏହା ସୀତାକୁ ଟାଣେଇ ନିଏ, ଜିତେନ୍ଦ୍ରିୟକୁ ମଧ୍ୟ ଟାଣେଇ ଦିଏ । ଅଥଚ ସେଇଟା ମୃଗ ନୁହେଁ କି ସୁନା ନୁହେଁ; କେବଳଇ ଅସୁର । ଏକଥା ଜାଣି ମଧ୍ୟ ମଣିଷ ଧାଏଁ ସୁନା ମିରିଗ ପଛରେ । ସେ ଅସହାୟ ହୁଏ । ଦୁଃଖରେ ଭାଙ୍ଗିପଡ଼େ । ଘୂରି ବୁଲେ ଏଣେ ତେଣେ । ଯାହାକୁ ଭେଟେ ତାକୁ କହେ—'ଟିକେ ଶୁଣିବ କି ।' ଗଛଲତା ଗିରିବନ ପଶୁପକ୍ଷୀ ସମସ୍ତଙ୍କୁ ସେ ପଚାରି ବସେ । ସିଏ ଦରଦୀ ଆଉ ସମଦୁଃଖୀ ସେ ଶୁଣେ । ସାହାଯ୍ୟ କରିବାକୁ କମର ଭିଡ଼ି ବାହାରି ପଡ଼େ । ସେଠି ତାର ଏକମାତ୍ର ଲକ୍ଷ୍ୟ ହୋଇଯାଏ ଯେ ତାର ଜୀବନ ଯାଉ ପଛେ ସେହି ଦୁଃଖୀ ମଣିଷଟିକୁ ସେ ସାହାଯ୍ୟ କରିବ । ଏଇଠାରେ ହିଁ ଉଭୟଙ୍କର ଘଟିଯାଏ ମହାମିଳନ । ଆତ୍ମା ସହିତ ଆତ୍ମାର, ହୃଦୟ ସହିତ ହୃଦୟର ମିଳନ ହୋଇଯାଏ । ଯେଉଁଠି ଏହି ମିଳନ ହୁଏ ନାଇ ସେଠି କେହି କାହା କଥା ଶୁଣେ ନାଇ । ମିଛଟାରେ ସବୁ ଶୁଣୁଛୁ ବୋଲି ଅଭିନୟ କଲେ, ହୁଏତ କିଛି କାଳ ପାଇଁ ଲୋକେ ଭୁଲନ୍ତି ଓ ଜୟଜୟକାର କରନ୍ତି,

ତୋରଣ ସଜାନ୍ତି, ଫୁଲମାଳ ଝୁଲାନ୍ତି; କିନ୍ତୁ ସବୁକାଳ ପାଇଁ ନୁହେଁ । ଇମିତି ଗୋଟାଏ ସମୟ ଆସେ ଯେତେବେଳେ ଅଚଳ ହୋଅଣି ପରି ପଡ଼ିରହିବ ଯେ କେହି ପଚାରିବେ ନାଇ । ବରଂ ତାଳିମାରି ହସିଦେବେ ଲୋକେ ।

ଶୁଣିବା ଏତେ ସହଜ କଥା ନୁହେଁ । କାନ ଥିଲେ ନ ଶୁଣିବ ବା କଏ ? ଶୁଣି ଦେଲେ ତ ଖାଲି ହେବ ନାଇ; ହେଜିବା ଦରକାର । ଉପନିଷଦରେ ଋଷିମାନେ କହିଲେ—'ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରାଃ ।' ଅମୃତ ପୁତ୍ରମାନେ କଣ ଶୁଣିଲେ ସେମାନଙ୍କ କଥା ? ଶୁଣିଥିଲେ ତ ପୃଥିବୀଟା ଅମୃତମୟ ହୋଇଯାଇ ଥାଆନ୍ତା; କାହିଁ ହେଲା କି ? ବରଂ ପୃଥିବୀ ଆଜି ହୋଇଯାଇଛି ବିଷମୟ । ଭବିଷ୍ୟତ ହୋଇଯାଉଛି ସଙ୍କଟପୂର୍ଣ୍ଣ । ଯିଏ ବଳୁଆ, ଧନରେ ହେଉ କି ଜନରେ ହେଉ, ଜ୍ଞାନରେ ହେଉ କି ପଦରେ ହେଉ; ସିଏ କାହା କଥା ଶୁଣେ ନାଇ । ଯାର ସିଂହାସନ ଟାଣ, ସିଏ ମଧ୍ୟ ଶୁଣେ ନାଇ । ଶୁଣିବା ପାଇଁ ଲୋଡ଼ା ଅସୀମ ଧୈର୍ଯ୍ୟ ଓ ସହାନୁଭୂତି । ଠିକ୍ ଠିକ୍ ନ ଶୁଣିଲେ ବିଚାର ଓଲଟା ହୋଇଯାଏ, ନିର୍ଦ୍ଦୋଷ ଦୋଷୀ ହୋଇଯାଏ, ଦୋଷୀ ନିର୍ଦ୍ଦୋଷ ହୋଇଯାଏ । ବିଚାରକ ଧୈର୍ଯ୍ୟ ହରାଇ ଦେଲେ, କଥା କଥାକେ ଚଡ଼୍ ଚଡ଼୍ ହେଲେ, ଚଞ୍ଚଳ ପ୍ରକୃତିର ହେଲେ, ଠିକ୍ ଭାବରେ ସେ କିଛି ଶୁଣନ୍ତି ନାଇ । ବିଭ୍ରାଟ ଘଟିଯାଏ ବିଚାରରେ । ସେଇମିତି ମୋହ ଘାରିଗଲେ ବିଚାର ମଧ୍ୟ ଠିକ୍ ହୁଏ ନାଇ । ରାଜା ଅହଙ୍କାରୀ ହୋଇଗଲେ, ଉପଭୋଗୀ ହୋଇଗଲେ, କାହାର କଥା ଶୁଣେ ନାଇ । ଋଷିଙ୍କୁ ପାଲିଙ୍କି ବୁହାଏ । ଇନ୍ଦ୍ରପଦ ପାଇବାକୁ ବ୍ୟାକୁଳ ହୁଏ । ଶଚୀଙ୍କୁ ଉପଭୋଗ କରିବାକୁ ପାଗଳ ହୁଏ । ଶେଷକୁ ଖସିପଡ଼େ ତଳକୁ ଯେ ପାଲଟିଯାଏ ଗୋଟାଏ ସର୍ପ । ତଥାପି ସେ ତାର ଫୁଁ ଫୁଁ ଛାଡ଼େ ନାଇ । ଦଂଶନ କରିବା ଛାଡ଼େ ନାଇ । ତାକୁ ଯେତେ ପଦ୍ମତୋଳା ଶୁଣାଇଲେ ମଧ୍ୟ ତାର ସ୍ୱଭାବ ଯାଏ ନାଇ ।

ମଣିଷ ସେଦିନ ପ୍ରଥମେ ଶୁଣାଇଲା ତାର ଦୁଃଖକୁ ଭଗବାନଙ୍କୁ—ଏକ ଅଦୃଶ୍ୟ ଶକ୍ତିଙ୍କୁ—ଯାହାଙ୍କୁ ସେ ମନେକଲା ଏଇ ବିରାଟ ବ୍ରହ୍ମାଣ୍ଡର କର୍ତ୍ତା । ନିଜ ଉପରୁ ତାର ଆସ୍ଥା ତୁଟିଗଲା । ବାହାର ଶକ୍ତି ଉପରେ ଆସ୍ଥା ଆସିଲା । ତେଣୁ ସେ ତାଙ୍କୁହିଁ ଶୁଣାଇଲା ନିଜ ଅନ୍ତରର କଥା ଏବଂ ଇମିତି ଶୁଣାଉ ଶୁଣାଉ ସେ ଆରମ୍ଭ କଲା ସ୍ତୁତି, ସ୍ତବ, ପ୍ରାର୍ଥନା ଓ ଜଣାଣ । ଯିଏ ଦୁଃଖରେ ପଡ଼ିଲା, ସଙ୍କଟରେ ପଡ଼ିଲା, ବିପଦରେ ପଡ଼ିଲା ସିଏ ତାର ଅନ୍ତରର ଭାବକୁ ଶୁଣାଇଲା ଭଗବାନଙ୍କୁ । ଗଜରାଜ ଶୁଣାଇଲା କୁମ୍ଭୀର କବଳରେ ପଡ଼ି । ଦ୍ରୌପଦୀ ଶୁଣାଇଲା କୁରୁସଭାରେ ବିବସ୍ତ୍ରା ହେଲାବେଳେ । ମୃଗୁଣୀ ଜଣାଇଲା ବ୍ୟାଧ ହାବୁଡ଼ରେ ପଡ଼ି । ଇମିତି କେତେ ନାଇ କେତେ ଭଗବାନଙ୍କୁ ଶୁଣାଇଛନ୍ତି ନିଜ ନିଜର ଦୁଃଖ । ଭଗବାନଙ୍କୁ ଶୁଣାଉ ଶୁଣାଉ ମଣିଷ ଶୁଣାଇଲା ରାଜାଙ୍କୁ । ରାଜା ସିଂହାସନରେ ଶୋଭାପାଏ । ତାଙ୍କ

ପାଖରେ ସବୁ କ୍ଷମତା ପୁଞ୍ଜୀଭୂତ ହୋଇଥାଏ । ସିଏ ହୋଇଯାଆନ୍ତି ମହନ୍ତ ଦେବତା । ତାଙ୍କର ହୁଏ ସ୍ତୁତି ସ୍ତବ । ଏଇଟାକୁ ତୋଷାମୋଦ କୁହାଯାଇପାରେ, ଚାଟୁ କୁହାଯାଇପାରେ । ଚାଟୁ ନ କଲେ ରାଜା ଶୁଣନ୍ତି ନାଇ । ରାଜା ପଛେ ଗଜମୂର୍ଖ ହୋଇଥାଉନ୍ତୁ, ତାଙ୍କୁ ବିରାଟ ପଣ୍ଡିତ କହିବାକୁ ହେବ । ମଦ୍ୟପ କି ଲମ୍ପଟ ହୋଇଥାନ୍ତୁ ପଛେ ତାଙ୍କୁ ମହାପୁରୁଷ କହିବାକୁ ହେବ । ନ ହେଲେ ରାଜା କାହା କଥା ଶୁଣନ୍ତି ନାଇ । ଓଲଟା ନାହିଁ କଥିବା ଛିଡ଼ କରି ବସନ୍ତି ।

ରାଜଗାଦିଟା ଭାରି ଲୋଭନୀୟ । ଏଇଥିପାଇଁ କେତେ ନାଇ କେତେ ରକ୍ତପାତ । କେତେ ନାଇ କେତେ ପ୍ରତାରଣା ଓ ପ୍ରବଞ୍ଚନା । ଶକୁନିର ପଶାକାଠିଟା ଏଇଥିପାଇଁ ଗଢ଼େ । ଏବେ ମଧ୍ୟ ଗଢ଼ୁଛି । ସବୁକାଳ ପାଇଁ ଏହା ଗଢ଼ୁଥିବ । ରାଜା ସିନା ଚାଲିଗଲେ, ଗାଦି କିନ୍ତୁ ଯାଏ ନାଇ । ସେଇଟା ସେମିତି ଅଛି । ରୂପ ସିନା ବଦଳିଛି, ଗୁଣ ବଦଳି ନାଇ । ଗାଦି ଉପରେ ଯିଏ ବସିବ ସିଏ ଆଦେଶ ଦେବ । ତାକୁ ଚାଟୁ କରିଦେଲେ ସେ କୃତ୍ୟ କୃତ୍ୟ ହୋଇଯିବ । ତମ କଥା ସେ ଶୁଣିବ । ଠିକ୍ ଶୁଣିଲେ ରକ୍ଷା । ଭୁଲ ଶୁଣିଗଲେ ବେରକ୍ଷା । ତମ କଥାଟା ହୁଏତ ବୁଲେଇ ବଙ୍କେଇ ନାନା ରଙ୍ଗ ନେଇ ରାଜାଙ୍କ କାନରେ ବାଜିଯାଇପାରେ । ସୁବିଧାଖୋର ଲୋକେ ଏଇ କାମ କରନ୍ତି । ସେଇଟା ସେମାନଙ୍କ ବେଉସା ।

ମଣିଷ କିନ୍ତୁ କାକୁତି ମିନତି ହୋଇ ଅନ୍ୟକୁ ଡାକୁଛି, ଶୁଣେଇଛି ତା' ଦୁଃଖ । ଏବେ ବି ଶୁଣାଉଛି । ଅନନ୍ତକାଳ ପର୍ଯ୍ୟନ୍ତ ଶୁଣାଉଥିବ । କେହି କିନ୍ତୁ ତା' କଥା ଶୁଣୁ ନଥିବ । ଶୁଣିବାର ଛଳନା କରୁଥିବ । ଏଇ ଛଳନା ଭିତରେ ବାନ୍ଧି ହୋଇଯାଉଥିବ ସାରା ମଣିଷ ଜାତି । ପରସ୍ପର ପ୍ରତି ଅବିଶ୍ୱାସ ବଢ଼ିଯାଉଥିବ । ମଣିଷ ହୋଇଯାଉଥିବ ଏକୁଟିଆ । ଉପରକୁ ଦୁଇହାତ ଟେକି ପିଲା ପରି ସେ ନାଚୁଥିବ । ଅସହାୟ ହୋଇ ପଡ଼ୁଥିବ । ତଥାପି ସେ କହୁଥିବ—'ଆଜ୍ଞା ! ଟିକେ ଶୁଣିବେ କି ।' ଏଇଥିରେ ଫୁଟି ଉଠୁଥିବ କାକୁସ୍ଥପଣିଆର ସ୍ୱରଟିଏ । ମଣିଷ ଯଦି ସିଧା ସଳଖ ସବୁକଥା ଶୁଣନ୍ତା ତେବେ ଦ୍ୱନ୍ଦ୍ୱ ରହନ୍ତା ନାଇ, ସଂଘର୍ଷ ରହନ୍ତା ନାଇ । ମଧ୍ୟସ୍ଥପଣିଆରୁ ସେ ଶୁଣେ ଅନେକ କଥା । ସେତିକିବେଳେ ମୂଳ କଥା ବଦଳିଯାଇ ନୂଆ ରଙ୍ଗ ନେଇଯାଇ ଥାଏ । ମହା ଅନର୍ଥ ସୃଷ୍ଟି କରିଦିଏ । ଏଇଥିପାଇଁ କହୁଛି—ଭଲ କରି ଶୁଣ, ଭଲକରି ହେଜ, ସତ୍ୟ ଆଉ ପ୍ରେମରେ ଜମନ୍ତୁ, ତାପରେ ସବୁ ଠିକ୍ ହୋଇଯିବ । ଅହଙ୍କାରକୁ ଦୂରେଇ ଦିଅ, ମୁଁ ପଣିଆଟାକୁ ଛୁଡ଼ିଦିଅ; ଦେଖିବ ସମସ୍ତେ ଆପଣାର ହୋଇଯାଇଛନ୍ତି, ସମସ୍ତଙ୍କର ଦୁଃଖ ଜଜର ହୋଇଯାଇଛି । ସମସ୍ତଙ୍କ ଭିତରେ ତମେ ହୋଇଯାଇଛ ଜଣେ । ଆଜ୍ଞା ! ଏତିକି ଟିକଏ ଶୁଣନ୍ତୁ । ଆଉ ଅଧିକା ଗୋଟାଏ କଣ ?



# ପଦ ଓ ଗଦ

ପଦ ଆଉ ଗଦ—ଏଇ ଦୁଇଟାଯାକ ସାଆଁଳା ଭାଇ । ଗୋଟିଏ ମାଆ ପେଟରୁ ଏଇ ଦି' ଭାଇଙ୍କର ଜନ୍ମ । ଏଥିରୁ କିଏ ବଡ଼ କିଏ ସାନ କହିବା ମୁସ୍କିଲ । ପଦ ସାଙ୍ଗକୁ ଗଦ ଶୁଙ୍ଘେଇ ଦେଲେ ଯେତେ ବଡ଼ ସାପର ବିଷ ହୋଇଥାଉନା କାହିଁକି ରୋଗୀ ଝାଡ଼ି ଝୁଡ଼ି ହୋଇ ବସିଯାଏ । ନିଦରୁ ଉଠିଲା ପରି ସେ ଉଠି-ପଡ଼େ । ପଦ ଯଦି ଠିକ୍ ମାଲୁମ ନ ଥିବ ଯେତେ ଫୁଙ୍କ ମାରିଲେ ତାହା କାମ କରେ ନାଇ ଆଦୌ । ପଦକୁ ଠିକ୍ ଠିକ୍ ଆବୃତ୍ତି କରିଥିବ । ତା' ସାଙ୍ଗକୁ ଗଦ ଶୁଙ୍ଘେଇ ଦେଉଥିବ । ତେବେ ଯାଇଁ କରାମତି ଜଣାପଡ଼ିବ । ପଦ ନଜାଣି ଗୁଣିଆ ହେଲେ ରୋଗୀ ମରିବା ସାର ହେବ । ପଦ୍ମତୋଳା ଡାକ ଜାଣିଲେ ଗାତ ଭିତରୁ ସାପ ବାହାରି ଆସିବ ଗର୍ଜନ କରି । ଧରିବାକୁ ଚେଷ୍ଟା କଲେ ସେ ତମକୁ ଚୋଟ ପକେଇବ । ସେତିକି ବେଳକୁ ଗଦ ଖଣ୍ଡେ ପାଟିରେ ପକେଇ ଦେଲେ ରକ୍ଷା । ନ ହେଲେ ଆଉ ରକ୍ଷା ମିଳିବ ନାଇ ତମକୁ । ପଦ ଠିକଣା କରି ଡାକିଲେ ମାନସରୋବର ଭିତରୁ, ଲକ୍ଷ୍ମୀଙ୍କ କୋଳରୁ ବି ବାହାରି ଆସିବ ଦୁର୍ଯ୍ୟୋଧନ । ପଦ ଶୁଣି କିଏ କଣ ସମ୍ଭାଳି ହୋଇ ରହିପାରେ ? ହୁଏତ ଜାନୁଭଗ୍ନ ହୋଇଯାଇପାରେ, ତମେ ଗୁରୁପାଞ୍ଜିରୁ ଯାଇପାର; ପଦ କିନ୍ତୁ ତମକୁ ରଖେଇ ଦେବ ନାଇ । ତମେ ଯଦି ଧର୍ମ ବଗ ହୋଇଥିବ ତେବେ ଅବା ବଞ୍ଚିଯିବ ଜାକଜୁକ ହୋଇ । କଣ ମିଳିବ ସେଇ ପଦରୁ ବା ଗଦରୁ ?

ପଦ ଜାଣିଲେ ଗୁଣିଆ ହୁଅନ୍ତୁ । ପଦ ନ ଜାଣି ଗୁଣିଆ ବୋଲି ଫୁଙ୍କ ମାରି ବାହାରିଗଲେ ରୋଗୀକୁ ବଞ୍ଚେଇ ହୁଏ ନାଇ । ରୋଗୀ ମରେ । ତମ ଇଜ୍ଜତ ହୋଇଯାଏ ଦି'କଡ଼ା । ଏଇଟା ଖାଣ୍ଟି ସତ ସେ ହେଲେ ଆଜିକାଲିକା ଯୁଗରେ ଏ କଥାଟା ଆଉ ଶତହେବକୁ ଶହେ ସତ ହେଉନାଇ । ଜାଣିଥିବା ଲୋକ ସବୁ ଜାଣିଛି ବୋଲି କହି ବୁଲେ ନାଇ । ତାର ମଧ୍ୟ ଆଦର ନଥାଏ । କାରଣ ଜାଣିଥିବା ଲୋକଟା ରୋକ୍ଠୋକ୍ କହିଦିଏ । ଅପ୍ରିୟ ସତ୍ୟ କଥା ମଧ୍ୟ କହିଦିଏ । ତା' ଜାଣିବା ଇଲାକା ଡେଇଁ ଆଉ କିଛି ତବ ତବ କରି କହେନାଇ । ଯେତିକି ଜାଣିଥାଏ ସେତିକି ସୀମା ଭିତରେ ସେ ରହେ । ଯିଏ ଜମା କିଛି ଜାଣି ନଥାଏ, ସିଏ ସବୁ କିଛି ଜାଣିଛି ବୋଲି ଡିଣ୍ଡିମ ପିଟିଦିଏ । ନିଜ ଢୋଲ ନିଜେ ପିଟେ । କିଛି ଲୋକଙ୍କୁ

ଥିବ ସେଇମାନଙ୍କ ଦ୍ୱାରା ପ୍ରଚ୍ଚାର କରିହେବ । ଏଇ ପ୍ରଚ୍ଚାରକାର୍ଯ୍ୟ ଦଳ ନ ଜାଣିଥିବା ଲୋକର ମନ୍ଦଟାକୁ ଇମିତି ପ୍ରଚ୍ଚାର କରି ଦିଅନ୍ତି ଯେ ଲୋକେ ଧାଡ଼ି ଛୁଟନ୍ତି ତା' ପାଖକୁ । ସିଏ ସବୁ କରିପାରେ । ଅପୁତ୍ରିକକୁ ପୁତ ଦେଇପାରେ, ନିର୍ଦ୍ଧନକୁ ଧନ ଦେଇପାରେ, ମକଦ୍ଦମାରେ ଜିତେଇ ଦେଇପାରେ, ରୋଗୀକୁ ଭଲ କରିଦେଇ-ପାରେ । ଏଇ ନ ଜାଣିଥିବା ଲୋକ ନିଜକୁ ଇମିତି ଭାବରେ ଜାହିର କରିଦେଇ ଥାଏ ଯେ ସ୍ୱୟଂ ତାର ବାହାବା କରନ୍ତି । ତାର ପାଇଁ ଫୁଲମାଳ, ତୋରଣ ଆଉ ବାଣଫୁଟା । ଏଇମାନେ ବାଲେ ବାଲେ ଲୋକଙ୍କୁ ବୋକା ବନେଇ ଥାଆନ୍ତି । ଲୋକେ ଯେତେ ବୁଦ୍ଧିଆ ବୋଲି ଭାବନ୍ତୁ ନା କାହିଁକି ସେମାନେ ବୋକା । ସେମାନେ ଏଇ ନ ଜାଣିଥିବା ଚତୁର ଲୋକଙ୍କ ଦ୍ୱାରା ଠକି ହୁଅନ୍ତି ଥରକୁ ଥର । ଅଥଚ ବାରମ୍ବାର ସେଇମାନଙ୍କ ଜାଲ ଭିତରେ ପଡ଼ନ୍ତି । ଜାଣିଥିବା ଲୋକ ଚତୁରପଣିଆ ଦେଖେଇ ବାହାକୁ ଠକେ ନାଇ । ନ ଜାଣିଥିବା ଲୋକଙ୍କ ଭେଳିକ ଦେଖି ସିଏ ମୂକ ପାଲଟିଯାଏ—ଯେମିତିକ 'ଦର୍ଦ୍ଦୁର ରାବ ଶୁଣି ମୌନବ୍ରତ ପିକ ।' ତମେ ଏବେ କହିପାର, ନ ଜାଣିଥିବା ଲୋକ 'ଦୂରତଃ ଶୋଭତେ ମୂର୍ଖ ଲମ୍ବ ଶାର୍ଟ ପଟାବୃତଃ' ପରି । ଯେତେବେଳେ ସିଏ କିଛି କହିବ ସେତେବେଳେ ତାର ସ୍ୱରୂପ ଜଣା ପଡ଼ିଯିବ । ହଁ; ଏକଥାକୁ କେହି ମନା କରୁ ନାଇ । ତେବେ ଏଇଟା ଆଉ ଆଜକାଲି ଯୁଗକୁ ଖାପ ଖାଉ ନାଇ । ଏଇଟା ହୁଏତ ଆଗେ କିଛି କିଛି କାମରେ ଦେଖାଉଥିଲା । ଏବେ କିନ୍ତୁ ସେକାଲ ପକାଳ ନାଇ । ଇଏ ନୂଆ ଯୁଗ । ତବତର ଯୁଗ । ଏଇଟା ତତ୍ତ୍ୱ ଜିଣୁନର ଯୁଗ ନୁହେଁ; ରାତିମତ ବିଜୁଳିବତୀର ଯୁଗ । ଦିନ ତ ଦିନ । ରାତି ବି ହୋଇଯାଉଛି ଦିନପରି । ଘରେ ବାହାରେ ସବୁଆଡ଼େ ହାଟଖୋଲ । ଏଇ ଯୁଗରେ ତମେ ଯେତେ ନିଜକୁ ଦେଖେଇ ପାରିବ, ପ୍ରଚ୍ଚାର କରେଇ ପାରିବ, ସକାଳେ ସଞ୍ଜେ ବଡ଼ବଡ଼ିଆଙ୍କ ଘରକୁ ଯାଇ ହାଜିରା ଟିକେ ପକେଇ ପାରିବ, ସେମାନଙ୍କ ମନ ଜାଣି ମାଲମସଲା ଯୋଗାଇ ଦେଇ ପାରୁଥିବ ଓ ସେମାନଙ୍କ ପ୍ରଶଂସା ଫୁଲ ଖୋଲି ଦେଉଥିବ, ତମେ ଯେତେ ନ ଜାଣିବା ଲୋକ ହୋଇଥାଅ ପଛେ ସେତେ ତମେ ହୋଇଯିବ ଜାଣିବା ଶୁଣିବା ଲୋକ । ତମର ଯେ କାଣ୍ଡଜ୍ଞାନ ଅଛି ତାହା ପ୍ରମାଣ ହୋଇଯିବ । ତମ ଘରପଟୁ ଅନ୍ଧାର କଟିଯାଇଥିବ । ତମ ଘରପଟେ ନାଲି ନେଲି ଧଳା ବିଜୁଳିବତୀ ଜଳୁଥିବ । ତାର ଭିତରେ ତମେ ଚକ୍ ଚକ୍ ଗୁଡ଼ୁଥିବ । ତମର ଆଉ ତମେ ସଜାଡ଼ି ରଖୁଥିବ । ଟେଣିକ ତମ ପାଖକୁ ଲୋକେ ଧାଡ଼ି ଦେବେ । ତମେ ବାକ ଫୁଟିଲେଇ, ହାତ ଯୋଡ଼ି, ମୂଣ୍ଡ ନୁଆଁଇ ନିଜର ସୌଜନ୍ୟ ଦେଖାଉଥିବ । ତମେ ଯେ ଏତେବଡ଼ ଲୋକ ହୋଇ ନିଜର ନମ୍ରତା ଦେଖାଉଚ ସେଥିରେ ତମପାଖକୁ ଆସୁଥିବା ଲୋକେ କୃତକୃତ୍ୟ ହୋଇ ଯାଉଥିବେ । ଏଥର ତମ ଫୁଲମୂର୍ତ୍ତିରୁ ଉପଦେଶ ମୁଦ୍ରା

ଖୋଲି ଅଜାଡ଼ି ଦେଉଥିବ । ସେଇ ଟଙ୍କାଟା କୁବେରର ଭଣ୍ଡାର । ଯେତେ ଦେଲେ ବି ଟାଙ୍କିବା ସରେ ନାଇ । ସିଏ ପୁଣି ନାନା କଳମର । ହରେକ ରଙ୍ଗର । ଭକ୍ତମାନେ ତମର ଉପଦେଶାମୃତକୁ ବୃତକ ପରି ପାଇଯାଉଥିବେ । ତମର ଜୟଜୟକାର ପଡ଼ୁଥିବ । ତମେ ଫୁଲି ଉଠୁଥିବ । ମନେ ମନେ ଗର୍ବ କରୁଥିବ— ତମ ଭଳିଆ ଲୋକ କୋଟିକରେ ଗୋଟିଏ ମିଳିବା କାଠିକର ପାଠ । ତମେଇ ପ୍ରକୃତରେ ଭାଗ୍ୟବାନ । ତମପାଇଁ ଶିବ ଲାଭ । ଅଭାଗାଙ୍କର ଅଶିବ ଲାଭ । ତମେ ଯାହାହୋଇଥାଅ ପଛକେ ସେକଥାକୁ କେହି ମନେ ରଖିବେ ନାଇ । ତମର ପ୍ରଶଂସା କରିବା ପାଇଁ ଭକ୍ତମାନଙ୍କର ପ୍ରତିଯୋଗିତା ହେଉଥିବ । ତମେ କେବଳ ମୁରକି ମୁରକି ହସୁଥିବ । ତମେ କିଛି ଜାଣିଥାଅ ବା ଜାଣି ନ ଥାଅ -- ସେକଥା କେହି ଚିନ୍ତିବେ ନାଇ । ତମେ ଇମିତି ଗୋଟାଏ ମାୟା ରଚି ଦେଉଥିବ ଯେ ସଭିଏ ତମକୁ ଦେବତା ପରି ମାନୁଥିବେ । ଅବଶ୍ୟ ତମ ପଦ ଥିବା ପର୍ଯ୍ୟନ୍ତ, ତମ ସିଂହାସନର ଗୋଡ଼ ଦମ୍ଭିଲା ଥିବା ପର୍ଯ୍ୟନ୍ତ । ତାପରେ ମଦଘଡ଼ା, ଜାମ ହରିଲେ ଗଡ଼ଗଡ଼ା ।

ନ ଜାଣିଥିବା ଲୋକେ, ତଳ ପାହାଚର ହୋଇଥିଲେ, ନୀରବ ରହି-ଯାଆନ୍ତି । ଭକୁଆ ଭଳି ଚାହିଁ ରହନ୍ତି । କାନ ଦଇଟାକୁ ଶଶା କାନ ପରି ଡେଙର ଦିଅନ୍ତି । କଣ ଶୁଣନ୍ତି, କଣ କହନ୍ତି; କିଛି ଜାଣିପାରନ୍ତି ନାଇ । ଯିଏ ଚତୁର ଲୋକ, ସିଏ କିଛି ଜାଣିଥାଉ ବା ନ ଜାଣିଥାଉ; ସେଇ କେବଳ ନିଜର ବାହାଦୁରି ଚପେ । ତିଙ୍କିଶାଳରୁ ଢେଙ୍କାନାଳ ପର୍ଯ୍ୟନ୍ତ କହିଯାଏ । ଚତୁରତା ସହିତ ପଦ ଥିଲେ ତେଣିକି ଆଉ କଥା ନାଇ । ପଦ ଥିଲେ ଚତୁରତା ଆପେ ଆପେ ଆସିଯାଏ, ଯେମିତିକି ଧନ ଥିଲେ ବୁଦ୍ଧି ବଢ଼େ । ଏଇ ଯେଉଁ ପଦ ସେଇଟା ଗୁଣିଆଁଙ୍କ ପଦ ନୁହେଁ । ଏଇଟା ଗୋଟାଏ ନିଆରା ଜିନିଷ । ତମେ କେଉଁ ପଦବୀରେ ଶୋଭା ପାଉଚ —ସେଇଟାକୁ ନେଇ ତମର ବଡ଼ୁର । ସେଇଟା ତମର ମାପକାଠି । ତାରି ବଳରେ ତମର ଆସନ ସଜାଯାଏ । ଆଗ ଧାଡ଼ିରେ ବସିବ କି ପଛ ଧାଡ଼ିରେ ବସିବ— ସେଇଥିରୁ ଜାଣିହୋଇଯିବ । କାହାର ନା କାହାର କିଛି କିଛି ପଦ ଅଛି । ସବୁ ପଦର କାଟତି ସମାନ ନୁହେଁ । ଯେଉଁ ପଦର ପ୍ରଭାବ ଥିବ, ସାଧାରଣଙ୍କୁ ଡରେଇ ପାରିଲା ଭଳିଆ କ୍ଷମତା ଥିବ, ତାରି ପାରୁଥିବ, ମାରି ପାରୁଥିବ; ସେଇ ପଦର ଅଛି ବାହାଦୁରି । ସେପରି ପଦାଧିକାରୀ ଜଣେ କିଛି କହିବା ପାଇଁ ପାଟି ଆଁ କଲାବେଳକୁ ସବୁଆଡ଼େ ନୀରବତା ଖେଳି ଯାଉଥିବ । ସିଏ ହସିଲେ ସମସ୍ତେ ହସୁଥିବେ । ସିଏ ଗମ୍ଭୀର ହୋଇଗଲେ ସମସ୍ତେ ଗମ୍ଭୀର ହୋଇଯିବେ । ଏଇଟା ହିଁ ପଦର କରାମତି । କିଛି ବର୍ଷ ପାଇଁ ବ୍ୟକ୍ତିର ଏଇଟା ହୋଇଯାଏ ମୌରସି ସମ୍ପତ୍ତି । ଏଇ ପଦକୁ ପିନ୍ଧି ସିଂହାସନରେ ବସିଗଲେ ସ୍ୱର୍ଗ ଦି'ଆଙ୍ଗୁଳି ଦେଖାଯାଏ । ତେଣିକି ତମେ ଯାହା

କହିବ ସେଇଟା ହୋଇଯିବ ବେଦଉକ୍ତାର । ତମେ ଧଳାକୁ କଳା କହିଦେଲେ ତାହା କଳା ହୋଇଯାଏ । ତମେ ଅଧର୍ମକୁ ଧର୍ମ କହିଲେ ତାହା ବି ହୋଇଯାଏ ଧର୍ମ । ତମେ ଯେତେ ଅନ୍ୟାୟ କଲେ ବି ସୃଷ୍ଟିଶ୍ରେଣୀ ହୋଇ ଯାବତ ସୃଷ୍ଟିକୁ ଗଳାର ହାର କରି ନେଲେ କେହି କହିବାକୁ ନାଇ । କାହା ଜଭରେ ହାଡ଼ ଅଛି ଯେ କହିବ ? ଏଇ ଦେଖୁନା ଗାଇଆଳ ଟୋକାଟା କଣ ଜାଣିଥିଲା ଅବା ? ଶ୍ରୀଗଣେଶ ସିଦ୍ଧିରସ୍ତୁ ନାସ୍ତି । ଅଥଚ ମାଟିତଳେ ପୋତି ହୋଇ ପଡ଼ିଥିବା ବିକ୍ରମାଦିତ୍ୟଙ୍କ ସିଂହାସନ ଉପରେ ବସିଗଲା କ୍ଷଣି ରାଜା ପରି ହୁକୁମ ଜାରି କରି ଦେଲା । ଆରେ ବାପ୍ ! ଇଏ କଏ ? ଇଏତ ଆଉ ଗାଈଜଗା ଟୋକା ନୁହେଁ । ତଟସ୍ଥ ହୋଇ ତାକୁ ଗୁହିଁ ରହିଲେ ତା' ସାଙ୍ଗମାନେ, ଗାଁବାଲାମାନେ । ତାଜୁବ କଥା । ଟୋକାଟା କଣ କହୁଛି ? ତାର ତ କିଛି ପଦ ଫଦ ନଥିଲା । ମାଟିଗଦା ଉପରେ ବସିଗଲା କ୍ଷଣି ରଜା ଭଳିଆ କହୁଛି । ପଦ ତାକୁ କୁଣ୍ଢେଇ ଧରୁଚି । ଏଇଟା ହେଉଚି ସିଂହାସନର କରାମତି, ପଦର କରାମତି । ପଦ ମିଳିଗଲେ, ସିଂହାସନ ପାଇଗଲେ; ଗଦି ଛୁଟ୍ଟେଇବାକୁ ଆଉ କଣ ବିଳମ୍ବ ହୁଏ କି ? ଏଇ ପଦ ଆଉ ସିଂହାସନ ପାଇଁ କେତେ ଝଗଡ଼ା, କେତେ କଳିତକରାଳ, କେତେ କାଣଫୁଲ, କେତେ ଦାନ୍ତ କାମୁଡ଼ା, କେତେ ଖଚ ଆଉ ମିଛ ! ସେଥିରେ ପୁଣି ପାଦଚଟା !! ଛି ଛି ! କି କଥାକୁ, କାଆ ପେଲିଦେଲି କାଳକାକୁ ।

ଏଇଥିପାଇଁ କହୁଚି ଜାଣିବାଟା ଏତେ ଜରୁରୀ ନୁହଁ । ପଦଟାଇ ସବୁକିଛି । ସିଂହାସନଟାଇ ଅସଲ କଥା । ପଦ ଥିଲେ ସିଂହାସନ ଆସିଯିବ । ସିଂହାସନରେ ବସିଗଲେ ପଦ ତ ବଳେ ବଳେ ଦେହରେ ଲଟେଇ ଯିବ ବର୍ଷାଦିନିଆ ଲତାକୁ ଭଙ୍ଗ ପରି । ସିଂହାସନ ମଣିଷର ଫୁଟି ଉଠେ ଗୋଟାଏ ସ୍ୱତନ୍ତ୍ର ଠାଣି । ସିଏ ଆଦେଶ ଦିଏ, ଉପଦେଶ ଦିଏ । ସେଇଟା ଦେଇ ନ ପାରିଲେ ସିଏ ଗୋଟାଏ କି ମଣିଷରେ ଲେଖା ! ସିଏ ଯାହା ହୋଇଥାଉ ପଛକେ ତା' ଆଦେଶ ଶିରୋଧାର୍ଯ୍ୟ । ତା' ଉପଦେଶ ମାନିବାକୁ ବାଧ୍ୟ । ତାକୁ ଆଦେଶ କି ଉପଦେଶ ଦେବାକୁ ଆଉ କେହି ନାହିଁ । ଇମିତିକା ମଣିଷମାନଙ୍କୁ ଗୁଡ଼ପାହିଲେ କଏ ନ ଦେଖୁଛି ? ତମେ ଯେତେ ଯାହା କହୁଆଥନା କାହିଁକି, ସେଇ ମଣିଷମାନଙ୍କ ପାଖକୁ ଦଉଡ଼ୁଥିବ । ସିଂହାସନୀ ମଣିଷଙ୍କ କୃପା କଟାକ୍ଷ ନ ପଡ଼ିଲେ ତମେ କଣ କିଛି ବର ପାଇପାରିବ କି ? ତେଣୁ ତମକୁ ଦଉଡ଼ିବାକୁ ହେବ, ସ୍ତୁତି କରିବାକୁ ହେବ, ଦାନ୍ତ ନିକୁଟିବାକୁ ହେବ, ସିଏ ଯାହା ନୁହ ତା'ଠାରୁ ବଡ଼ କରି ତାକୁ କହିବାକୁ ହେବ । ନ ହେଲେ ଉପାୟ ନାଇ । ସ୍ତୁତି ସାଙ୍ଗକୁ ଆହୁରି ଅନେକ ଅନେକ ଉପାୟ ଅଛି । ପଦ ସାଙ୍ଗକୁ ଗଦି । ପଦାଧିକାରୀଙ୍କୁ ତମେ ସ୍ତୁତି ରୂପକ ପଦରେ ସନ୍ତୁଷ୍ଟ କରିପାରିବ ନାଇ କେବଳ । ତା' ସାଙ୍ଗକୁ ଗଦିଟା ନିହାତି ଦରକାର । ଏଇ ଗଦି କଥାଟା ନ କହିବା ଭଲ ।

ଏକଥା କୋଉ ଅଜଣା କି ? ଦେବତାଙ୍କୁ ସ୍ତୁତି କଲେ ସିଏ ବର ଦିଅନ୍ତି । ତା' ସାଙ୍ଗକୁ ଖେଚରଭୋଗ ନୈବେଦ୍ୟ ଦେବାକୁ ହୁଏ । ନ ହେଲେ ଦେବତାଙ୍କ ସିଂହାସନ ଟଳେ ନାଇ । ସିଏ ଗାଦି ଛାଡ଼ି ତମ ପାଖକୁ ଓହ୍ଲେଇ ଆସନ୍ତି ନାଇ ।

ଏଥର ମୂଳକଥାକୁ ଆସନ୍ତୁ । ଏଇ ଜାଣିବା ଆଉ ନ ଜାଣିବା କଥାକୁ ହିଁକେ ମନ ମୁକ ଚୈତନ୍ୟ ଦେଇ ହେଜନ୍ତୁ । ତମେ ସବୁ କିଛି ଜାଣିଥିବାକୁ ଚାହୁଁଛ ତ । ଜାଣ । ହେଲେ ତମେ ବୁଡ଼ିକ ବଢ଼ୁଥିବ ଶାସ୍ତ୍ର ପାଣିରେ । ତମକୁ କେହି ଦେଖି ପାରିବେ ନାଇ କି ଜାଣି ପାରିବେ ନାଇ । ଏଇ ଯେମିତି ଜଡ଼ ଭରତ । ଜନମ ହେବା କ୍ଷଣି କୁଆଁ ଧ୍ୱନି ବି କଲେ ନାଇ । ବଡ଼ ହେଲେ ଯେ ପାଟିରୁ ପଦେ କଥା କାହାରି କଲେ ନାଇ । ସମସ୍ତେ କହିଲେ ଜଡ଼ଟାଏ, ବୋକାଟାଏ । ସିଏ ରାଜା ରଖିଲ । ରଜାର ପାଲିଙ୍କି ବୋହେଇଲେ । ରଜା ଯେତେବେଳେ ଧମକ ଦେଲେ, ତପସ୍ୱୀ ଦେଖେଇଲେ ସେତେବେଳେ ସାଇଁ ପାଟି ଖୋଲିଲେ । ଗୋଟାକ ପରେ ଗୋଟାଏ ପ୍ରଶ୍ନ ପଚାରିଗଲେ ରଜାକୁ । ରଜାର ଅକଲ ଗୁଡ଼ୁମ୍ । ପାଲିଙ୍କି ଉପରୁ ଡେଇଁପଡ଼ିଲେ ତଳକୁ । ଜଡ଼ ଭରତର ଗୋଡ଼ ଧରି ବସିଗଲେ । ଏଥର ଜଡ଼-ଭରତ ରଜାକୁ ଦେଲେ ଉପଦେଶ । ରଜାର ହେଲା ମୋହଭଙ୍ଗ । ତାର ସିଂହାସନ ମୋହ ଉଡ଼ିଗଲା । ସୁଖଭୋଗ ମିଛେଇ ଗଲା । ଜାଣିଥିବା ଲୋକଟା ଲୋପ ପାଇଲା । ନ ଜାଣିବାରୁ ସିଏ ଏଥର ଶଠକଳା ଜାଣିବାକୁ । ସିଏ ହୋଇଗଲା ଏକ ଅଧ୍ୟାତ୍ମ ଉନ୍ନତ ନୂଆ ମଣିଷଟିଏ । ଭାଗବତରେ ଅସମଞ୍ଜସ ମଧ୍ୟ ସବୁ ଜାଣି କିଛି ନ ଜାଣିବାର ଅଭିନୟ କଲେ । ରଜାର ପୁଅ ହୋଇ କେତେ ନାଇ କେତେ ଅଘଟଣ ଘଟାଇଲେ । ଶେଷକୁ ବାପା ତାଙ୍କୁ ତେଜ୍ୟପୁତ୍ର କରିଦେଲେ । ଏଇଥି ପାଇଁ ଥିଲା ଅସମଞ୍ଜସ । ସିଏ ଏଥର ବାହାରିଗଲା ରାଜ୍ୟରୁ, ଘରରୁ, ସୁଖରୁ । ଯେତେ ଅଘଟଣ ଘଟାଇଥିଲା ସବୁ ଘଟଣା ହୋଇଗଲା । ତା' ବଣ୍ଣମଣି ଜଣାଗଲା ତା' ଯିବାପରେ । ସେତେବେଳକୁ କେଉଁଠୁ କେଉଁଠିକୁ ଦୋହଡ଼ିଗଲାଣି । ଜାଣିଥିବା ଲୋକ ଏଇଆ । ସିଏ ପଦ ଚାହେଁ ନାଇ କି ଗଦ ଚାହେଁ ନାଇ । ସବୁ ଛାଡ଼ି ଦେଇ ସିଏ ହୋଇଯାଏ ଅଲଗା । ସେପରି ଲୋକର କିଛି ପାର୍ଥିବ ଅଭିଳାଷ ନଥାଏ । ସେମାନଙ୍କର ଲକ୍ଷ୍ୟ ଥାଏ— ମଣିଷର କଲ୍ୟାଣ । ସମସ୍ତଙ୍କ ଅଲକ୍ଷ୍ୟରେ ଏଇଟାକୁ ସେମାନେ ପୂରଣ କରନ୍ତି । ଜନକୁ ଜମା ଜଣେଇ ଦିଅନ୍ତି ନାଇ ।

ଏବେ କିନ୍ତୁ ଆପଣା ଢୋଲ ଆପେ ପିଟିବା ଚାଲିଛି । ଶୋଭାଯାତ୍ରା ପରେ ଶୋଭାଯାତ୍ରା, ଫୁଲମାଳ ପରେ ଫୁଲମାଳ, ବାଜା ପରେ ବାଜା । ଖବରକାଗଜର ପୃଷ୍ଠା କଅଣ୍ଡ ପଡ଼ୁଯାଉଛି । ଆଖି ଖୋସି ହୋଇଯାଉଛି, କାନ ତାଳିଆ ହୋଇ-ଯାଉଛି । ଢୋଲ ପିଟି ପିଟି ହାତ ଫୋଲେଇ ହୋଇଯାଉଛି । ଗୋଟାଏ ପେଶାଦାର

ଉଚ୍ଛ୍ୱାସ ଯେମିତକ ଫୁଟି ଉଠୁଚ । ଯିଏ ଅଜ୍ଞାନ ସିଏ ଜ୍ଞାନୀ ବୋଲି ଜଣା ହେଉଚ । ତାକୁ ଅଜ୍ଞାନ କହୁଦେଲେ ଭୂମିକମ୍ପ ହୋଇଯାଉଚ । ବଜ୍ରପାତ ହେଉଚ୍ଛି । ଅଜ୍ଞାନ ବଳାତ୍ମ ମାତ୍ର ଆସୁଚ । ଜ୍ଞାନୀ ଯିଏ ସିଏ ବି ପଡ଼ିଯାଉଚ ଅଜ୍ଞାନଙ୍କ ଘୂର୍ଣ୍ଣିର ବ୍ୟୂହ ଭିତରେ । ଜ୍ଞାନୀ ଯିଏ ନାଇ ସିଏ ହୁଏ ନାଇ । ବହୁ ପଢ଼ରେ ବହୁ ପଢ଼ିଗଲେ ଜ୍ଞାନୀ ହୁଏ ନାଇ । ଉପାଧି ପରେ ଉପାଧି ପାଇଗଲେ ଜ୍ଞାନୀ ମଧ୍ୟ ହୁଏ ନାଇ । ଶ୍ରଦ୍ଧାବାନ ହିଁ ଜ୍ଞାନ ଲାଭ କରେ । ଇନ୍ଦ୍ରିୟ ସଂଯମକାରୀ ହିଁ ଜ୍ଞାନ ଲାଭ କରେ । ଇମିତକା ଜ୍ଞାନଠାରୁ ଆଉ କିଛି ପର ଧର୍ମ ନାଇ । ଏଇ ଜ୍ଞାନ ପାର୍ଥିବ ଜ୍ଞାନ ନୁହେଁ; ପରା ଜ୍ଞାନ, ଅଧ୍ୟାତ୍ମ ଜ୍ଞାନ । ଏଥିରେ ସଂଘର୍ଷ ନାଇ । ଏହା ଏକ ଦ୍ୱନ୍ଦ୍ୱାତୀତ ସମାହିତ ଅବସ୍ଥା । ଏହାର ଲକ୍ଷ୍ୟ ବିଶ୍ୱକଲ୍ୟାଣ । ଅଥଚ ଆଜିକାଲିକା ଯେଉଁ ଜ୍ଞାନ ସେଇଟା କେବଳ ବୁଦ୍ଧିର ଖେଳ, ବୁଦ୍ଧିର ଲଢ଼େଇ । ଏଇ ଯୁ ବୁଦ୍ଧି ସେଇଠା ହୋଇଚ ପରମଶତ୍ରୁ । ଏଇ ବୁଦ୍ଧିକୁ ନେଇ କେହୁ ଗୌତମ ହୋଇ ପାରୁ ନାଇ, ଯାଜ୍ଞବଲ୍କ୍ୟ ହୋଇ ପାରୁନାଇ, ଉଦ୍ଦାଲକ ମଧ୍ୟ ହୋଇପାରୁ ନାଇ । ଅଥଚ ସିଏ କହୁଚ ସମସ୍ତଙ୍କ ଉପରେ ତା’ ସ୍ଥାନ । ତାର ଖାଇବା, ପିଇବା, ବସିବା, ଶୋଇବା ସବୁ ହୋଇ-ଯାଉଚ ଜିଆରୀ । ଗୋଟାଏ ଭ୍ରାନ୍ତ ଅହମିକା ଯେମିତ ତାକୁ ଗ୍ରାସି ଯାଉଚ ।

ସାହିତ୍ୟ କ୍ଷେତ୍ରରେ ବି ଏଇ ଏହା କଥା । ସେଠି ବି ସେଇ ବୁଦ୍ଧିର ଭେଲକି । ପ୍ରଚୁର ଥିଲେ, ମାଧ୍ୟମ ଜଣାଥିଲେ, ତା’ ସାଙ୍ଗକୁ କୌଣସି ନା କୌଣସି କ୍ଷମତା ଥିଲେ କେଣିକ ତମେ ଅସାହିତ୍ୟିକ ହୋଇ ମଧ୍ୟ ସାହିତ୍ୟିକ ବନିଯିବ । ତମେ ଅଭିଧାନକୁ ଗୁଳିଯିବ । ଅଥଚ ଏପରି ଲେଖ ଜମା ଗମ୍ଭୀର ପାଣିର ଜୀବ ନୁହେଁ । କିଛି କାଳ ହୁଏତ ସାହିତ୍ୟିକ ବୋଲେଇ ବାହାବା ନେଇପାର, ବାପା, ଅନାଙ୍କ ଠାକୁ ଝିକ ଘର୍ଷି ଖାଇପାର, କେବେ ସବୁକାଳ ପାଇଁ ତମର ଖିଆ ରହିବ ନାଇ । ତମେ ଯେ ନକଲି, ଧରାପଡ଼ିଯିବ ଚଟ୍‌କର । ସଚ୍ଚା ସାହିତ୍ୟିକ ଆପଣାକୁ ପ୍ରଚାର କରେ ନାଇ, ନିଜ ପାଇଁ ତୋରଣ ସଜାଏ ନାଇ, କଙ୍କଣ କି କୁଣ୍ଡଳଟିଏ ପାଇବା ପାଇଁ ଆପଣାକୁ ଚଳିକୁ ନେଇଯାଏ ନାଇ, ଖବରକାଗଜରେ ନିଜର ଫଟୋ ଛାପି ଛତେକ ବଣ ଜଙ୍ଗଲ ଲମ୍ବା ବିବରଣୀ ଛାପେ ନାଇ । ସିଏ ନୀରବ ସାଧକଟିଏ, ଋଷିଟିଏ । ତା ଲେଖା କେହି ପଢ଼ନ୍ତୁ ବା ନାଇ, ତାକୁ କେହି ବାହାବା ଦିଅନ୍ତୁ ବା ନାଇ; ସେଥିପାଇଁ ସିଏ ମୁଣ୍ଡ ଖେଳାଏ ନାଇ । ସିଏ କିନ୍ତୁ ଲେଖେ, ହୃଷ୍ଟ ଜଣ ଲେଖେ । ସମାଜ-ମଣିଷଙ୍କୁ ସେ ଦେଖେଇ ଦିଏ ଦୁଷ୍ଟବ୍ରଣମାନଙ୍କୁ, ଚହ୍ନେଇ ଦିଏ କିଏ କଣ । ଏଇଥିଲାଗି ସେ ଦଣ୍ଡପାଏ ମାତ୍ର ସେ ଆହୌ ବିଚଳିତ ହୁଏ ନାଇ । ସିଏ ଜାଣେ ଯେ ତା’ପାଖରେ ପଦ ନାଇ କି ପଦ ନାଇ । ସିଏ ନିରେଖା ଲେଖକଟିଏ । ତା’ ଲେଖା ଭଲ କି ସିଏ ଭଲ । ତା’ ବୁଢ଼ା, ମହି ଆଙ୍ଗୁଳି ଅଙ୍ଗୁଠି ବ୍ରହ୍ମା ବିଷ୍ଣୁ ମହେଶ୍ୱର ପରି କାମ କରେ । ତା’ ମନ ସେଇଠି

ହୋଇଯାଏ ଏକାଗ୍ର । ତାର ଦ୍ୱାରା ସିଏ ସାରା ବ୍ରହ୍ମାଣ୍ଡକୁ ହୋହଲାଇ ଦିଏ, ଓଲଟ ପାଲଟ କରିଦିଏ । ବିଶ୍ୱକୁ ସେ ନେଇଆସେ ଗୋଟାଏ ବିନ୍ଦୁକୁ । ସେଇଠି ସେ ବାମନ ପରି ଗୋଟାଏ ପାଦରେ ଡିଙ୍ଗିଦିଏ ଆକାଶକୁ, ଆଉ ଗୋଟାଏ ପାଦରେ ଘୋଡ଼େଇ ରଖେ ପୃଥିବୀକୁ । ତୃତୀୟ ପାଦ ବାହାର କରି ଅହଂକାରୀ ମଣିଷକୁ ଚାପିଦିଏ ପାତାଳକୁ । ସିଏ ବାମନ ହୋଇପାରେ ସିଏ ବି ହୋଇପାରେ ବିରାଟ । ଗାଣ୍ଡୀବ ଧରି ଫୁଟାଣି ମାରୁଥିବା ଆଉ ଜ୍ଞାତି ପରିଜନଙ୍କୁ ଦେଖି ମୋହଗ୍ରସ୍ତ ହୋଇ-ପଡ଼ୁଥିବା ଅର୍ଜୁନମାନଙ୍କୁ ବିରାଟ ବିଶ୍ୱରୂପ ଦେଖାଇ ବିସ୍ମିତ କରାଇ ଦେଇପାରେ । ସିଏ ସବୁ ପଦକୁ ଊର୍ଦ୍ଧ୍ୱରେ, ସବୁ ଗଦକୁ ଊର୍ଦ୍ଧ୍ୱରେ । ତା' ପାଖରେ ପଦର କସରତ ରହେ ନାଇ କି ଗଦର ମହିମା ରହେ ନାଇ ।

ତମେ ଯେତେ ଯାହା କୁହନା କାହିଁକି ଏ ଯୁଗରେ ପଦ ଆଉ ଗଦର କସରତଟା ବହୁତ ବେଶି ହୋଇଯାଇଚି । ତମର ପଦ ଥିଲେ ସବୁ ପାହୁଲେ ହଜାର ଦଣ୍ଡ ପ୍ରଣାମ । ତମ ଅମଳଟା ଏଇ ପଦକୁ ନେଇ ଆସନରେ ବସେଇ ଦେଇପାର । ତା' ସାଙ୍ଗକୁ ଗଦ ଥିଲେ ତମର ଖାତିର ଆହୁରି ବଢ଼ିଯିବ । ତମେ ପଦ ଡାକୁଥିବ, ଗଦ ଶୁଙ୍ଘେଇ ଦେଇ ପାରୁଥିବ । ତେଣିକି ତମ ନାଆ ଚାଲୁଥିବ କସରପଦରେ । ଝଡ଼ ବାତ୍ୟା ଯାହା ହେଲେ ବି ତମ ନାଆ ଅଟକି ଯିବ ନାଇ କି ବୁଡ଼ିଯିବ ନାଇ ଅଥଳ ସମୁଦ୍ରରେ । ଏଇଥିପାଇଁ କହୁଚି ପଦ ଦରକାର, ଗଦ ଦରକାର । ଏଇ ଦ'ଟାଇକି ଆଦର କରି ପାରିଲେ ତମର ଆଉ କୋଉ କଥାକୁ ଭୟ ରହିବ କି ? ପଦକୁ ଧର । ଗଦକୁ ରଖ । ରୁପା ମୁକୁଟ ହେଉ କି ସୁନା ମୁକୁଟ ହେଉ, ଅଷ୍ଟଧାତୁର ହେଉ କି ଯାହା ହେଉ ପଛେ ମୁଣ୍ଡରେ ବାନ୍ଧି ଦେଲେ ଶୋଭା ଦିଶିବ । ସାବଧାନ, ମୁକୁଟ ଯେମିତି ଗଡ଼ି ନ ପଡ଼େ, ପଦ ଯେମିତି ଛୁଞ୍ଚି ନ ଯାଏ । ମୁକୁଟ ଗଡ଼ି ପଡ଼ିଲେ ଜାନୁଭଗ୍ନ ପର୍ବ ଆଉ କେତେ ବାଟ କି ? ତେଣିକି ଖାଲି ପଦଟା କାମ କରିବ ନାଇ ଯେ !



# ବାଘ ନ ଦେଖିଲେ ବଳେଇ ଦେଖ

ବାଘ କଥାଟା ସବୁଲୋକ ଶୁଣିଛନ୍ତି, ହେଲେ ଦେଖିଛନ୍ତି କେତେ ଜଣ ? ପିଲାମାନଙ୍କୁ ଆଈ ମାଆ କାହାଣୀ କହିଲାବେଳେ ବାଘମାମୁ କଥାଟା କହିଥାଏ । ବାଘ ପୁଣି ମାମୁ ହୁଏ । ସିଏ ପୁଣି ଝୁଆଁ ଝୁଇଁଙ୍କ କଥାରେ ଭୁଲି ସେମାନଙ୍କୁ ଗୁଡ଼ ଦିଏ ଆଉ ଗଡ଼ରେ ପିଠା ଖାଇବାକୁ ଆସି ନାକେଦମ୍ ହୁଏ । ଇଏ ଲୋକ କଥା । ସତେ କଣ ବାଘ ମାମୁ ହୁଏ ନା ଝୁଆଁ ଝୁଇଁ ଘର ଭଣଜା ଭାଣିଜା ବାଘମାମୁଙ୍କୁ ଦେଖନ୍ତି । ଇମିତି ଗୋଟାଏ କାହାଣୀ ଭିତରେ କୌତୁକ ଫୁଟି ଉଠେ । ପିଲାଙ୍କ ପାଇଁ ଗୋଟାଏ ଯାହା ଆନନ୍ଦ । ପୁଣି ଏଇ ପଞ୍ଜରମୁଷି ଖେଳି ଛୁଆଟା ବାଘକୁ ଛୁଆଁ ବୁଲେଇ ଦେଲା । ବାଘ ପଶୁଙ୍କ ଜୀବ—ବଣର ରଜା, ସିଏ ପୁଣି ଜାଣିପାରେନି ନାଇ ପଞ୍ଜରମୁଷିଟା କଣ ? ହଁ, ଏଇଟା ମଧ୍ୟ ବେଳେ ବେଳେ ସମ୍ଭବ ହୁଏ । ନିଜକୁ ଖୁବ୍ ବଡ଼ ବୋଲି ଭାବୁଥିବା ଜୀବ କି ମଣିଷ, ସାମାନ୍ୟ ଜୀବ ପାଖରେ ହାର ମାନିଯାଏ । କାରଣଟା ଅତି ସହଜ । ଯିଏ ଯେତିକି ବଡ଼ ସିଏ ସେତିକି ଭୟାଳୁ । ବାହାରକୁ ଗୋଟାଏ ଫଁ ଥାଏ । ଭିତରେ ଥାଏ ଭୟ । ଯିଏ ସନ ସିଏ କାହାକୁ ଭୟ କରିବ ? ବରୁ ବିପଦ ଆପଦ ତାର ଦେହସହା ହୋଇଯାଇଥାଏ । ମରଣଟା ତାର ସବୁଦିନିଆ । ଯିଏ ବଡ଼, ବେଶି ଭୟ ତାର ମରଣକୁ । ଜୀବନଟା ତାର ସୂତାକୁ ପଇରେ ବନ୍ଧା । ଟିକିଏ ବଣ ହେଲେ ଟଣ୍ଡା ଟଣ୍ଡା ବୈଦ୍ୟ ହାଜର ହୋଇ ଯାଆନ୍ତି । ସିଏ ପୁଣି ରହିବା ପାଇଁ କେତେ କାଇଦା କଟକଣାରେ ଘରଦୁଆର କରେ । ପାଖେ ପାଖେ ଦେହରକ୍ଷୀ ଝଙ୍କେ । ତଥାପି ଭୟ ଯାଏ ନାହିଁ । ସବୁବେଳେ ଗୋଟାଏ ତରଙ୍ଗ ତରଙ୍ଗ ଭାବ ।

ଆରେ ଇଏ କ'ଣ ? କେଉଁ କଥା କହୁ କହୁ କୁଆଡ଼କୁ ମୁଁ ଗଲିଗଲିଣି ! ହଁ, ମୁଁ ବାଘ କଥା କହୁଥିଲି । ବାଘ କଥା ପିନା କହିଦେଇ ପାରିବ, ହେଲେ ବାଘକୁ ଯେ ମୁଁ ମୁହାଁମୁହିଁ ଦେଖିଛି; ଏକଥା କଣ ହଲପ କରି କହିପାରିବ ? ତେବେ ବାଘକୁ ଯେ ମୁଁ ଅଦୌ ଦେଖି ନାହିଁ; ଏକଥା ମଧ୍ୟ ନୁହେଁ । ଚିଡ଼ିଆଖାନାରେ ଲୁହାବାଡ଼ ଭିତରେ ଦେଖିଛି, ସର୍କସରେ ଦେଖିଛି । ଖଚେଇ ହୋଇଛି ବାଘକୁ । ସେଇଟା ବାଘର ବନ୍ଦୀ ଜୀବନ, ପରାଧୀନ ଜୀବନ; ମୁକ୍ତ ଜୀବନ ନୁହେଁ । ମୁକ୍ତ ବାଘକୁ ସାମନା ସାମନି ଦେଖିବା ଏତେ ସହଜ କଥା ନୁହେଁ । କେହି କେହି

ସାହସୀ ଲୋକେ ହୁଏତ କହିପାରନ୍ତି ଯେ ସେମାନେ ଘୋର ଜଙ୍ଗଲ ଭିତରେ ବୁଲି ବୁଲି ବାଘକୁ ଦେଖି ପାରନ୍ତି । ବାଘର କାନ ଧରି ତା' ପିଠିରେ ବସି ପାରି ପାରନ୍ତି । ହୋଇଥିବ । ଆମ୍ଭେ କିନ୍ତୁ ଏଥିରେ ଶତକଡ଼ା ଶହେ ଭାଗ ଏକମତ ହୋଇ ପାରୁ ନାହୁଁ । ଏଇଟାକୁ କେବଳ କଥା ରୂପେ ଗ୍ରହଣ କରିନେଉଛୁ । ବାଘ କି ତମର ବନ୍ଧୁବାନ୍ଧବ କିଏଁ ଯେ ତମକୁ ଗୁଣ୍ଡିଦେବ, ତମକୁ ଖେଳ କରାଇବେ ! ତମେ ତାକୁ ଦେଖୁ ଦେଖୁ ସିଏ ତମ ଉପରକୁ ଲମ୍ଫ ଦେବ ଓ ନିମିଷକ ଭିତରେ ତମର ତଣ୍ଟି ଚିପିଦେବ, ତମର ତାଜା ମାଂସକୁ ଚଟୁ କରିଦେବ । ତମ କାକୁତି ମିନତି ସେ ଶୁଣିବ ନାଇ, ଫୁଙ୍କାଣିକୁ ସେ ଖାତିର କରିବ ନାଇ । ତମେ ତାର କ'ଣ କରିପାରିବ ଯେ ! ତମେ ହଜାର ହଜାର ମିଳିଗଲେ ମଧ୍ୟ ବାଘ ତମକୁ ଖାତିର କରେ ନାଇ । ତମ ଭିତରକୁ ସେ ଏମିତି କୁଦି ଆସିବ ଯେ ତମେ ଛନ୍‌ଛନ ହୋଇ ଦଉଡ଼ିବ । ତମ ଠେଙ୍ଗା ବାଡ଼ି ପଡ଼ି ରହିବ । ତମ ଭିତରୁ କି ଦଳେ ବାଘର ପ୍ରଶଂସା କରୁଥିବେ—ଅହାଃ ବାଘଟାର କେତେ ସାହସ ! କ ଜାଣିଛ କଣ ସିଏ ବାଘ !! ଆଉ କେତେ କେତେ ବାଘର ସପ୍ତପୁରୁଷ ଉଦ୍ଧାରୁଥିବେ । ବାଘ କିନ୍ତୁ ସେକଥା ଶୁଣେ ନାଇ । କଣ ଦରକାର ? ସିଏ ଜାଣେ ତା' ପଛରେ ସିନା କିଏ କଣ କହିବ, ତା' ଆଗରେ କହିବାକୁ କାହା ଛାତିରେ ହାଡ଼ ଅଛି ? ବାଘ କେବଳହିଁ ବାଘ । ସିଏ ଜଙ୍ଗଲର ହେଉ କି ସର୍କସର ହେଉ ଅଥବା ଚିଡ଼ିଆଖାନାର ହେଉ, ସିଏ ସେଇ ବାଘ । ତା' ପ୍ରକୃତି ସବୁଠି ସମାନ । ବାଘକୁ ତମେ କି ପ୍ରେମ କରିପାରିବ ନା ଭଲପାଇ ପାରିବ ଯେ ସେ ତମର ବନ୍ଧୁ ହୋଇ ରହିବ ?

ବାଘ ଜଙ୍ଗଲର ରଜା । ତା' ଗର୍ଜନକୁ ସାବଧାନ । ସେ ଗର୍ଜିଲେ ଜଙ୍ଗଲ ସାଇଜ ଥରି ଉଠେ । ପ୍ରାଣୀକୁଳ ଆକୁଳ ହୋଇ ଉଠନ୍ତି । ସବୁ ଜୀବମାନେ ଭୟରେ ଛପିଯିବାକୁ ଚେଷ୍ଟା କରନ୍ତି । ବାଘକୁ ପୁଣି ନ ଡରେ କିଏ ? ଯିଏ ନ ଡରେ ସିଏ ମରେନ, ବାଘର ହିରଣ୍ୟ ଗର୍ଭ ଭିତରେ ନିରାପଦରେ ରହେ । ବାଘ ଜଙ୍ଗଲରେ ବୁଲେ । ତାର ପ୍ରଭାବ ବିସ୍ତାର କରେ । ଜଙ୍ଗଲ ସାମ୍ରାଜ୍ୟରେ ସିଏ ପ୍ରଭୁ···ସିଏ ରଜା । ସେଇ ସାମ୍ରାଜ୍ୟରେ ସିଏ ଶିକାର କରେ । ତାକୁ ବାଧା ଦେବ କିଏ ? ଯିଏ ବାଧା ଦେବ ଆଗେ ସିଏ ବାଘର ଗର୍ଭରେ ଲୀନ ହେବ । ତେଣୁ ବାଘର ଗର୍ଜନ ଶୁଣି ଜୀବଜନ୍ତୁମାନେ ଭୟରେ ଲୁଚି ଯାଆନ୍ତି । ବେଳେ ବେଳେ ବାଘ ଧସେଇ ପଶିଆସେ କୌଣସି କୌଣସି ଜନପଦ ଭିତରକୁ । ହୁରି ହେମାଳ ପଡ଼ିଯାଏ । ସବୁରି ମୁହଁରେ ଗୋଟାଏ ଶବ୍ଦ—ବାଘ···ବାଘ···ବାଘ । ଇଏ କହେ ହେଇ ବାଘ ଗଲା, ସିଏ କହେ ହେଇ ବାଘ ସେଇ ଲଟିମୂଳେ ଛପି ରହିଛି । ଆଉ କିଏ ବୋବାଳି ଛାଡ଼େ—ଇଲେ ନେଇଗଲା ଲୋ·· ସବାଖିଆ ବାଘ ନେଇଗଲା ।

ଧର ଧର ମାର ପଡ଼ିଯାଏ ବାଘକୁ ମାରିବା ପାଇଁ । ବାଘ କିନ୍ତୁ ମରେ ନାହିଁ । ଗୋଟାଏ ହୁଇଚଇ ସୃଷ୍ଟି କରିଦେଇ ବାଘ ଚାଲିଯାଏ ତା’ ବାଟରେ ।

ବାଘ ଶିକାର କରେ । ଶିକାର ତାର ପ୍ରିୟ । ତାଜା ରକ୍ତ ଆଉ ମାଂସରେ ତାର ଆନନ୍ଦ । ସିଏ ତ ଆଉ ଘାସ ଖାଏ ନାହିଁ କି ଭାତ ରୁଟି ତରକାରି ଖାଏ ନାହିଁ, କି ଡାଇନିଂ ଟେବୁଲରେ ବସି ହୋଟେଲଖାନା ଖାଏ ନାହିଁ । ଜୀଅନ୍ତା ଜୀବକୁ ଶିକାର କରି ସେ ଖାଏ । ମଡ଼ାକୁ ଛୁଏଁ ନାହିଁ । ତା ପାଖରେ ଦୟାମାୟା ନାହିଁ । ଲୋକ କହନ୍ତି ବାଘ କୁଆଡ଼େ ସଦ୍ୟଜାତ ଶିଶୁକୁ ପାଳିଥିଲା ବୋଲି ଶୁଣାଯାଇଛି । ହୋଇଥିବ...ହୋଇଥିବ । ଏବେ କିନ୍ତୁ ସେ ଭୁଲ କରିବ ନାହିଁ । ବାଘ ଛୁଆକୁ ପାଳେ ନାହିଁ କି ପୋଷେ ନାହିଁ । ବାଘ ବୁଢ଼ା ହୋଇଗଲେ ମଧ୍ୟ ତାର ବାଘତ୍ୱ ଯାଏ ନାହିଁ । ସେ ବାବାଜୀ ହୋଇ ଚାନ୍ଦ୍ରାୟଣ ବ୍ରତ କରୁଛି ବୋଲି କହିଲେ ମଧ୍ୟ ତାକୁ ବିଶ୍ୱାସ ନାହିଁ । ଯିଏ ବିଶ୍ୱାସ କରିବ ସିଏ କଙ୍କଣ ଲୋଭୀ ପଥିକ ପରି ମରିବ । ବାଘ ବୁଢ଼ା ହେଉ କି ଟୋକା ହେଉ—ସେ କେବଳ ହିଁ ବାଘ । ସିଏ ତୁଳସୀପତ୍ର ଖାଉଛି ବୋଲି କହିଲେ କିଏ ତାହାକୁ ବିଶ୍ୱାସ କରିବ ?

ବାଘକୁ ବିଶ୍ୱାସ ନାହିଁ ।
ରାଜନୀତିକୁ ବିଶ୍ୱାସ ନାହିଁ ।

ବାଘ ଶିକାର କରେ । ରାଜନୀତି ମଧ୍ୟ ଶିକାର କରେ । ବାଘର ଶିକାର ବଡ଼ କୌଶଳପୂର୍ଣ୍ଣ । ରାଜନୀତିରେ କୌଶଳ ମଧ୍ୟ ମୁଖ୍ୟ କଥା । କୌଶଳ ନ ଜାଣି କିଏ କଣ ରାଜନୀତିରେ ତିଷ୍ଠି ପାରେ ? ସାଧୁ ସନ୍ଥ ହୋଇ ରାଜନୀତି କରିହୁଏ ନାହିଁ । ଉପରକୁ ସାଧୁ ଓ ସନ୍ଥ ବୋଲାଇ, ଭିତରେ ହେବ ବାଘ । ତେବେ ଯାଇ ରାଜନୀତି କରିହେବ । ସନ୍ଥତ୍ୱ ଓ ବ୍ୟାଘ୍ରତ୍ୱ—ଏଇ ଦୁଇଟିର ଅପୂର୍ବ ମିଶ୍ରଣ...ତେଲ ତଣ୍ଡୁଳ ମିଶ୍ରଣ । ପୁରାପୁରି ଫାଜିଲ । କିଏ କେତେ କହିଯାଇଛନ୍ତି ଯେ ରାଜନୀତିରେ ନୀତି ନାହିଁ । କଥାଟା ଶତକରୁ ଶତକ ସତ । ନୀତି ରହିଲେ କିଏ ତମକୁ ପଚାରିବ ? ଏବେ ଯୁ ସମସ୍ୟ ହୋଇଛି ଏଥିରେ ଯଦି ଖୋଦ୍ ମହାତ୍ମା ଗାନ୍ଧି କି ଉତ୍କଳମଣି ଆସି ରାଜନୀତି କରିବେ, ସେମାନେ କଣ ତିଷ୍ଠି ପାରିବେ କି ? ଗୋଟାଏ ଦିନରେ ପେଡ଼ିପୁଟୁଳା ବାନ୍ଧି ଟିକେଟ କାଟିବେ ସ୍ୱର୍ଗକୁ । ସେମାନଙ୍କ ଗୀତା ଆଉ କାମ ଦେଖାଇବ ନାହିଁ । ଗୀତା କି ଭାଗବତ କଥା କହିଲେ ସେମାନଙ୍କୁ ସାମ୍ପ୍ରଦାୟିକ କୁହାଯିବ । ସେମାନଙ୍କ ନୀତିରେ ନୀତି କଥାସବୁ କୁହାଯିବ ଯେ ବାଟ ପାଇବେ ନାହିଁ କୁଆଡ଼କୁ ଯିବାପାଇଁ । ସେମାନେ ବାଘ ହୋଇପାରିବେ ନାହିଁ...ଶିକାର କରି ପାରିବେ ନାହିଁ । ବଣରୁ ବାଘଙ୍କ ସଂଖ୍ୟା କମି କମି ଯାଉଛି । ସରକାର ବାହାଦୁର

ବ୍ୟସ୍ତ । କେଉଁ ଜଙ୍ଗଲରେ କେତୋଟି ବାଘ ଅଛନ୍ତି, ତାହାକୁ ଗଣି ସଂଖ୍ୟା କୁହାଯାଉଛି ! ଆହା ! ବାଘଙ୍କ ସଂଖ୍ୟା ଏତେ କମି ଯାଉଛି କାହିଁକି ? ସେମାନେ ତ ଏବେ ସଂଖ୍ୟାଲଘୁ ! ସେମାନଙ୍କୁ କଣ ସ୍ୱତନ୍ତ୍ର ସୁବିଧା ଦିଆଯିବା ଉଚିତ ନୁହେଁ ? ବାଘମାନେ କଣ ପରିବାର ନିୟନ୍ତ୍ରଣ ଯୋଜନାକୁ ଜଡ଼ାକଡ଼ି ଭାବରେ ମାନିଗଲେ ନା କଣ ? ଯେତେ ଯାହା ହେଲେ ତ ସେମାନେ ବଙ୍ଗଳାରେ ରହିବେ ନାହିଁ; ଜଙ୍ଗଲରେ ରହିବେ, ଶିକାର କରି ବଞ୍ଚିବେ । ଜଙ୍ଗଲ କମ୍ଭି ଛୁଣ୍ଡି ଛୁଣ୍ଡି ଯାଉଛି । ବାଘଙ୍କ ଘରଦ୍ୱାର ଉଜୁଡ଼ି ଯାଉଛି । ସେମାନେ ଏଥର ରହିବେ କେଉଁଠି ? ଖାଇବେ କଣ ? ଜନପଦ ଭିତରକୁ ଧସେଇ ପଶିବେ ନା ନାଇ ? ଯଦି ପଶିବେ ସେମାନଙ୍କର ଦୋଷ ହେବ କାହିଁକି ?

ବାଘଙ୍କର କାମ କଣ ଯେ ! ଜଙ୍ଗଲ ଭିତରେ ଥାବା ଗୁମ୍ଫି ଗାଳକାସ୍ଥ ଠାଣିରେ ବୁଲିବା, ଘଞ୍ଚ ଛୁଇରେ ଶୋଇବା, ପହୁଡ଼ି ଭାଙ୍ଗ ଗୋଟାଏ ଦଲଟା ଗର୍ଜନ ଛାଡ଼ିବା, ଓର ଉଣ୍ଡି ଖୁବ୍ ଜୋରରେ ଦଉଡ଼ି ଆଉ ଝାମ୍ପ ମାରି ଶିକାର କରିବା—ଏଇତ ମାତ୍ର କାମ । ଜଙ୍ଗଲର ରଜା ହୋଇ ସେ ଆଉ କଣ କରନ୍ତା ଯେ ! ସବୁ ରଜାମାନେ ତ ଏଇଆ । ବାଘ ଆଉ ଶିକାର, ବାଘ ଆଉ ହିଂସା—ଗୋଟିଏ ହସ୍ତି ହେଲେ ଅଉ ଗୋଟିଏ ଛବି । ଗୋଟିକରୁ ଆଉ ଗୋଟିକୁ ଅଲଗା କରି ହୁଏ ନାହିଁ । ତମେ ଯଦି କହିବ ଯେ ବାଘ ହେଉଛି ସତ୍ୟ, ଧର୍ମ ଓ ଅହିଂସାର ଅବତାର (ତମେ ସହଜରେ ଏକଥା କୁହ, କି ବାଘକୁ ତେଲେଇବା ପାଇଁ କୁହ, କି ତମର ଆଉ କେଉ ଉଦ୍ଦେଶ୍ୟ ଥାଏ, ତମେ ସେକଥା ଜାଣ) ଏଥିରେ ତାହାର କଣ ଅଛି ? ତମେ ଏବେ କୁହ, ହଜାରବାର କୁହ, ଜନ୍ମଥାଏ ଜୀବନଯାକ, ପୁଅ ନାତି ଅଣନାତି ଅମଳଯାକ, ତାହାର କଣ ହୋଇ ଯାଉଛି କି ? ଯେତେବେଳେ ଫନ୍ଦ ପାଇବ ସେତେବେଳେ କିଏ ଆଉ ତମକୁ ରକ୍ଷା କରିବ କି ? କିଏ ସାହସ କରି ଯିବ ଯମ ମୁହଁକୁ ? ସଭିଏ ଗୁଳି ବଡେଇ ଦେବେ, ହେଲେ ଠିକଣା ବେଳକୁ କେହି ପିଠିରେ ପଡ଼ିବେ ନାହିଁ । କେହି କେହି କବି କହୁଛନ୍ତି, ବାଘର ଆଁ ଭିତରେ ପିକ୍ନିକ୍ କରିବେ । ଭଲ କଥା । ପିକ୍ନିକ୍ କର କି ସ୍ଥାୟୀ ଭାବରେ ଘରଦ୍ୱାର ବାନ୍ଧି ରୁହ କିଛି ଯାଏଆସେ ନାହିଁ । କରନ୍ତୁ ଭଲ, ଆମେ ହେଲେ ଦେଖନ୍ତୁ । କେହି କେହି କଥାକାର ଆପଣାର ସ୍ତ୍ରୀର ପଟିପଟିକିଆ ଶାଢ଼ୀ ଭିତରେ ବାଘକୁ ଦେଖି-ପକାଉଛି । ଆଉ କେହି କେହି ବାଘକୁ ଦେଖୁଛି ସର୍ବତ୍ର । ବାଘମୟ ହୋଇଯାଉଛି ଘର ବାହାର ।

ତମେ କହୁଚ, ଖାଲି କହୁନାହିଁ, ବନେଇ ଚୁନେଇ କେତେ ବାଗରେ କହୁଚ ବାଘ କଥା । ବାଘ ଶିକାର କରିବାକୁ ବାହାରୁଛ । ହେଲେ ଅସଲ ବାଘକୁ

ଦେଖିପାରୁ ନାହୁଁ । ବାଘ ବଦଳରେ ବିଲେଇ ଦେଖୁଚ । ବିଲେଇ କନ୍ତୁ ବାଘ ନୁହେ କି ବାଘ ମଧ୍ୟ ବିଲେଇ ନୁହଁ । ତେବେ ଉଭୟଙ୍କ ମଧ୍ୟରେ କିଛିଟା ସାମଞ୍ଜସ୍ୟ ଅଛି ନିଶ୍ଚୟ । ବାଘର ନଖ ଅଛି; ବିଲେଇର ମଧ୍ୟ । ବାଘ ଦେହର ରଙ୍ଗପରି ବିଲେଇ ଦେହର ରଙ୍ଗ । ବାଘର ମୁହଁ ପରି ବିଲେଇର ମୁହଁ । ବାଘ ଶିକାର କରେ । ବିଲେଇ ମଧ୍ୟ ଶିକାର ପ୍ରିୟ । ଏସବୁ ସାଦୃଶ୍ୟ ସତ୍ତ୍ୱେ ଉଭୟଙ୍କ ମଧ୍ୟରେ ତଫାତ୍ ବହୁତ । ସେଥିପାଇଁ ବାଘ ହିଁ ବାଘ, ବିଲେଇ ହିଁ ବିଲେଇ । ବିଲେଇ ମୂଷା ଶିକାର କରେ । ତାର ଶିକାର କାଇଦାଟା ଦେଖିବାର କଥା । ଦେହରୁ ମାଟି ସହିତ ଲଗାଇ, ଲୋମଗୁଡ଼ାକୁ ଫୁଲାଇ ଏପରି କାଇଦାରେ ସେ ମୂଷା ଉପରକୁ ଝାମ୍ପ ମାରେ ଯେ ବିଚରା ମୂଷା ଏକାଥରକେ କାବୁ ହୋଇଯାଏ । ମୂଷାକୁ ଧରି ବିଲେଇ ଯେତେବେଳେ ତାକୁ ଉପରକୁ ପକାଇ ଖପ୍ କରି ଡେଇଁ ପୁଣି ଧରି ପକାଏ, ପୁଣି ଖେଳାଏ ଓ ଶେଷକୁ ତାକୁ ମାରିଖାଏ; କେତେ କୌତୁକ ନ ଲାଗେ ଏ ଦୃଶ୍ୟ ! ଶିକାର ଦେଖିବାଟା କୌତୁକପୂର୍ଣ୍ଣ; କାହିଁକି ନା ପ୍ରତ୍ୟେକଙ୍କ ଭିତରେ ଲୁଚିରହିଛି ଗୋଟାଏ ହିଂସ୍ରଭାବ । ସାନ ସାନ ଦୁର୍ବଳିଆ ଜୀବଙ୍କ ଉପରେ ବଡ଼ ବଡ଼ ସବଳିଆ ଜୀବଙ୍କ ଶିକାର ଲାଗିରହିଛି ଅନାଦିକାଳରୁ । ସବୁକାଳେ ସାନ ସାନମାନେ ଶିକାର ହୁଅନ୍ତି, ଦୁର୍ବଳମାନେ ଶିକାର ହୁଅନ୍ତି । ବାଘ ସବଳ । ତେଣୁ ସେ ଶିକାର କରେ ତା'ଠାରୁ ଦୁର୍ବଳ ଜୀବଙ୍କ ଉପରେ । ହରିଣକୁ ସେ ଶିକାର କରେ, ମଣିଷ ଉପରେ ଶିକାର କରେ, ଗାଈ ଛେଳି ମେଣ୍ଢା ସବୁ ସେ ଶିକାର କରେ । ବାଘ ଶିକାର କନ୍ତୁ ଦେଖିହୁଏ ନାହିଁ । ଅତର୍କିତ ତାର ଶିକାର । କିଏ ଦେଖିବ ? ଜାଣି ଜାଣି କିଏ ମରଣମୁହଁକୁ ଯିବ ? ଶିକାରୀମାନେ ବହୁ ସତର୍କତା ଅବଲମ୍ବନ କରି ବାଘ ଶିକାରକୁ ଯାଆନ୍ତି ଯେ, ହେଲେ ଇଏ ଆଉ ସମସ୍ତଙ୍କ ପକ୍ଷରେ ସମ୍ଭବ ନୁହେଁ । ହଁ, ଅସଲ କଥା କଣ କହୁଥିଲି କି—ଏଇ ବାଘ ଆଉ ବିଲେଇ କଥା । ବାଇଟାଯାକ ହିଂସ୍ର, ବାଇଟାଯାକ ମାଂସାଶୀ । ବାଇଟାଯାକ ଶିକାରୀ । ତେବେ ବିଲେଇ ମଣିଷ ଆଶ୍ରା ନେଇ ଘରେ ରହେ, ଚୂଲିମୁଣ୍ଡରେ ଶୁଏ, ଶେଯ ବିଛଣାରେ ଶୁଏ । ବାଘ ରହେ ବଣରେ । ମଣିଷକୁ ଦେଖିଲେ ଆଗ ତାକୁ ଶିକାର କରେ । ମଣିଷ କନ୍ତୁ ସବୁଠାରୁ ବୁଦ୍ଧିଆ ଆଉ ଚାଲାକ୍ । ବାଘକୁ ଫାଶ ବସେଇ ଧରେ । ତାକୁ ପୋଷା ମନାଏ । ସର୍କସରେ ଖେଳାଏ । ହେଲେ ସେଇଟା ଆଉ ଖୋଲା ମେଳା ନୁହେଁ । କେତେ କାଇଦା କଟକଣା । ମାଷ୍ଟର ବ୍ୟତୀତ ସିଏ କାହାକୁ ମାନେ ନାହିଁ । ତାକୁ ଛେଉକାପଣ ଜଣା ନାଇ । ଯାହା କରିବ ସିଧାସଳଖ । ବିଲେଇ କନ୍ତୁ ଛେଉକାପଣରେ ଓସ୍ତାଦ୍ । ଟିକିଏ ଆଡ଼ ହୋଇଗଲେ ତମ ଦୁଧ ବଢ଼ା ରହିବ ନାହିଁ କି ମାଛ ଶୁଖୁଆ ରହିବ ନାହିଁ ।

ଆମ ସମାଜ ଭିତରେ ଏଇ ବାଘ ଆଉ ବିଲେଇଙ୍କ ଖେଳ ଚାଲିଛି । ବାଘମାନେ ହମ୍ ହମ୍, ହାଁଉ ହାଁଉ । ବିଲେଇମାନେ ମ୍ୟାଉଁ···ମ୍ୟାଉଁ । ରାଇଜ ସାରା ଏଇ ଧୂନ୍ଦ । ଘରେ ବାହାରେ ଏଇ ଦ୍ୱନ୍ଦ । ଘର ଭିତରେ ବିଲେଇ । ଗୋଲି ଭିତରେ ମୂଷା । ବାହାରେ ବାଘ । ଭିତରକୁ ମଧ୍ୟ ବାଘ ଧସେଇ ପଶି ଆସିଲାଣି । ଏଇ ସବୁ ବାଘ ସେମାନେ ଆଉ ସଂଖ୍ୟାଲଘୁ ନୁହନ୍ତି । ସେମାନଙ୍କୁ ଆଉ ଗଣି ହେବ ନାଇ । ବାଘ ସଂଖ୍ୟା ଏତେ ବଢ଼ି ଚାଲିଲାଣି ଯେ ମଣିଷମାନେ ଆଉ ଉଦ୍ଧାର ପାଇବେ ନାଇ । ବାଘମାନଙ୍କ ହିରଣ୍ୟଗର୍ଭ ଭିତରକୁ ସେମାନେ ଧାଡ଼ି ଦେଲେଣି । ଏଣେ ମଧ୍ୟ ବିଲେଇଙ୍କ ସଂଖ୍ୟା ବଢ଼ି ଚାଲିଛି । ମୂଷାମାନେ ହାହା ହାହା ଡାକ ଛାଡ଼ୁଛନ୍ତି । ମଣିଷମାନେ ବିକଳ ହୋଇ ଡାକ ପକାଉଛନ୍ତି—ଆମକୁ ରକ୍ଷା କର · ଆମେ ବାହାର କରୁଛୁ ଛତ ଭଣଜାନ୍ତୁଁ···ଆମ ପିଲାଛୁଆଙ୍କୁ ରକ୍ଷାକର । ମୂଷାମାନେ କହୁଛନ୍ତି—ଆମକୁ ରକ୍ଷାକର । ଅଥଚ ମଣିଷମାନେ ରକ୍ଷା ପାଇବେ ନାଇ··· ମୂଷାମାନେ ମଧ୍ୟ ରକ୍ଷା ପାଇବେ ନାଇ । ଏ ଯୁଗ ବାଘମାନଙ୍କର ଯୁଗ । ବିଲେଇ-ମାନଙ୍କର ଯୁଗ । ବାଘମାନଙ୍କୁ ପୂଜା କର । ପାଳି କରି ବକାସୁର ପାଖକୁ ଘରପିଛା ଜଣେ ଜଣେ କରି ପଠାଅ, ପିଠାପଣା ଝିଅବୋହୂ ପଠାଅ, ଭେଟି ଦିଅ । ବାଘ ଖୁସି । ତମେ ମଧ୍ୟ ଅବଶିଷ୍ଟ କିଛିଦିନ ବଞ୍ଚିପାରିବ ଜାଣି ଖୁସି । ତମ ପାଳି ଯେ ନ ପଡ଼ିବ; ଏମନ୍ତ ନୁହେଁ । ତମେ ଯଦି ବଞ୍ଚିବାକୁ ଚାହୁଁଛ ତେବେ ଭୀମକୁ ଖୋଜ, ତାଙ୍କୁ ପଠାଅ । ନ ହେଲେ ବାଘ ପାଖରେ ନିଜକୁ ସମର୍ପି ଦିଅ ।

ବାଘ ଭାରି ହୁସିଆର । ବିଲେଇ ମଧ୍ୟ ହୁସିଆର । ଅନ୍ଧାର ଉଭୟଙ୍କର ପ୍ରିୟ । ଅନ୍ଧାର ଭିତରେ ବାଘର ଆଖି ଦପ୍ ଦପ୍ ଜଳିଉଠେ । ବିଲେଇର ଆଖି ମଧ୍ୟ ଉଜ୍ଜଳି ଉଠେ । ତମେ ସିନା ଅନ୍ଧାର ଭିତରେ କିଛି ଦେଖି ପାରୁନା, ବାଘ-ମାନେ କିନ୍ତୁ ଠିକ୍ ଦେଖି ପାରନ୍ତି, ବିଲେଇମାନେ ଦେଖି ପାରନ୍ତି । ତମେ କିନ୍ତୁ ସେମାନଙ୍କୁ ଦେଖିପାରିବ ନାଇ । ସେମାନଙ୍କୁ ଜାଣିପାରିବ ନାଇ । ଗଧିଆ ଛାଲ ପିନ୍ଧି ସେମାନେ ତମ ପାଖକୁ ଆସିବେ । ତମକୁ ଉଠେଇ କୋଳେଇ ନେବେ ଯେ ତମେ ମାମୁଁଘର ଦେଖୁଥିବ । ବାଘ ନାଁ ଶୁଣି ତମେ ଭୟରେ ଆଖିବୁଜି ଦେଉଛ । ଅଥଚ ଦିନ୍ ଦିନ୍ କେତେ ରକମର ବାଘ ନ ଦେଖୁଚ କହିଲ ? ବାଘମାନେ ସିଂହାସନରେ ବସି ଯେତେବେଳେ ଜଣ ଉପରେ ହସିଲେଇ ଦିଅନ୍ତି ସେତେବେଳେ ଦେଖଣାହାରଙ୍କ ଗରମ ଝାଳ ବୋହିଯାଏ । ଏଥର ଆଖି ଖୋଲି ଭଲକରି ଚାହଁ ବାଘମାନଙ୍କୁ । ଛୁଟି ଧ୍ୟାନ କର । ନଇଁଖେଇ ଦେଖ । ଠିକ୍ ଦେଖିପାରିବ । ଚିହ୍ନି-ହିବ ମଧ୍ୟ ସହଜରେ । ସେଇଟା ହେଉଟା କି କଲରାପତରିଆ କି ମହାବଳ ବାଛି ଦେଇ ପାରିବ । ବାଘ ଆଗକୁ ଯାଅ ନାଇ । ହୁସିଆର ହୁଅ ହୁସିଆର । ବାଘକୁ

ମୋଟେ ବିଶ୍ୱାସ ନାଇ । ଗିଳି ଦେବ । ତମେ ସବୁ ମିଶରଗଣ୍ଡାକ, ବାଘ ଘରେ ନାଚ କରିବ ? ଏତେ ସାହସ !

ଓହୋ ! ତମେ ଡରଯାଉଛ ବାଘକୁ । ନ ଡରିବ କେମିତି ଯେ ! ଜୀବନକୁ କାହାର ଲୋଭ ନାଇ ? ହଉ; ବାଘ ଯଦି ନ ଦେଖିଚ ତେବେ ବଳେଇ ଦେଖ । ଅନ୍ତତଃ ବାଘ ସମ୍ପର୍କରେ ଗୋଟାଏ ସ୍ଥୂଳ ଧାରଣା ତ ହୋଇଯିବ । ଆଚ୍ଛା, ତମେ ଚାହୁଁଛ ଆଖି ଖୋଲିବ ନାଇ—ଭଲକଥା । ବନ୍ଦ କରି ରଖ ତମ ଆଖିକୁ । କାହିଁକି ଲୁଆଡ଼େ ମିଛୁଟାରେ ଅନେଇବ ? କିନ୍ତୁ ତମେ ଯେତେ ଆଖି ବନ୍ଦକରି ରହିଲେ ବି ତମକୁ କଣ ବାଘ ଛାଡ଼ି ଦେବ କି ? ତମେ ଏବେ ମଲା ଭଳି ପଡ଼ି ରହିବ, ନିଃଶ୍ୱାସ ବନ୍ଦ କରି ଶୋଇ ରହିବ; କେତେ ସମୟ କି ? ପୁଣି ତ ନିଃଶ୍ୱାସ ନେବ । ସେତେବେଳକୁ କଣ ବାଘ ତମକୁ ପ୍ରେମ କରିବ ?

ବାଘ କାହାକୁ ପ୍ରେମ କରେ ନାଇ ।
ବାଘ କେବେ ସନ୍ନ୍ୟାସୀ ହୁଏ ନାଇ କି ବ୍ରହ୍ମଚାରିଣୀ ବ୍ରତ କରେ ନାଇ ।
ବାଘ ଗୋଷ୍ଠୀ ବାନ୍ଧି କେଉଁଠିକି ଯାଏ ନାଇ ।
ଏକାକୀ ତାର ଗତି । ଏକାକୀ ତାର ସ୍ଥିତି ଆଉ ମୃତ୍ୟୁ ।
ଉପଭୋଗରେ ଗୋଷ୍ଠୀ ନାଇ ! ଉପଭୋଗୀ ସବୁବେଳେ ଏକକ ।
କାହାକୁ ସେ ଅଂଶୀଦାର କରିବାକୁ ଚାହେଁ ନାଇ ।

ସିଏ ବାଘ । ସିଏ ସର୍ବମସ୍ତ କର୍ତ୍ତା । ତାକୁ ସ୍ୱାଗତ କର । ତାର ଜୟ ଜୟକାର କର । ବାଘ ଗର୍ଜନରେ ତମର ଶତମୁକ୍ତି କାହିଁ ?



# ସମଦୁଃଖୀର ସ୍ୱଗତ

ଆଜି ଦୁଃଖ ସମାଜର ସବୁ ଶ୍ରେଣୀର ମଣିଷଙ୍କୁ କିଂକର୍ତ୍ତବ୍ୟବିମୂଢ଼ କରି ଦେଉଛି । ସମସ୍ତେ ଦୁଃଖ ସମୁଦ୍ରରେ ହବୁଡ଼ୁବୁ । ଯିଏ ପ୍ରଚୁର ଧନ ସମ୍ପତ୍ତି ଭିତରେ ଅଛି ସିଏ କହୁଛି ଦୁଃଖ ତାର ଯାଉ ନାହିଁ । ଯିଏ ଅଖଣ୍ଡ କ୍ଷମତାର ଅଧିକାରୀ ସିଏ ମଧ୍ୟ କହୁଛି ଦୁଃଖ ତାକୁ ଜାବୁ କରିଦେଉଛି । ଏଇମିତି ଚାକିରିଆ କହୁଛି ମାଲିକଙ୍କୁ, ମାଲିକ କହୁଛି ଚାକିରିଆକୁ, ଚାଷୀ କହୁଛି ମୂଲିଆକୁ, ମୂଲିଆ କହୁଛି ଚାଷୀକୁ, ବ୍ୟବସାୟୀ କହୁଛି ଖାଉଟିକୁ, ଖାଉଟି କହୁଛି ବ୍ୟବସାୟୀକୁ, ରାଜନୀତିବାଲା କହୁଛନ୍ତି ଜନତାକୁ, ଜନତା କହୁଛି ରାଜନୀତିବାଲାଙ୍କୁ, ବେକାର କହୁଛି ସରକାରକୁ, ସରକାର କହୁଛି ବେକାରକୁ, ଛାତ୍ର କହୁଛି ଶିକ୍ଷକକୁ, ଶିକ୍ଷକ କହୁଛି ଛାତ୍ରକୁ, ଅଫିସର କହୁଛି କିରାଣୀକୁ, କିରାଣୀ କହୁଛି ଅଫିସରକୁ—ସମସ୍ତେ କେବଳ ଦୁଃଖ ହିଁ କହୁଛନ୍ତି । ହୁଏତ କେହି ଛଳନାରେ ଦୁଃଖ କହନ୍ତି, କେହିବା ସତରେ ଦୁଃଖ କହନ୍ତି । ଏଇ ଦୁଃଖ କଥା କହି ଅନ୍ୟର ସହାନୁଭୂତି ଲାଭ କରିବାକୁ ଚେଷ୍ଟା କରେ ମଣିଷ । ଦୁଃଖ ଯେମିତିକି ଗୋଟାଏ ଅସରନ୍ତି ପୋଥି । ସେଇ ପୋଥିକୁ ପଢ଼ୁଛନ୍ତି ସମସ୍ତେ । ତେଣୁ ସମସ୍ତେ ଅସହାୟ । ଊର୍ଦ୍ଧ୍ୱକୁ ବାହୁଟେକି କାଠକଣ୍ଢେଇ ପରି ସମସ୍ତେ ନୃତ୍ୟରତ । ଜୀବନ ଯେମିତି ହୋଇଯାଉଛି ଜନ୍ମପାପ । ବଞ୍ଚିବା ମରିବା ସମାନ ହୋଇଯାଉଛି । ସୃଷ୍ଟି ହେଉଛି ଏକ ବିଚିତ୍ର ଜୀବନ୍ମୃତ ଅବସ୍ଥା ।

ମଣିଷ ଖୋଜୁଛି ଶାନ୍ତି । ଅଥଚ ଶାନ୍ତି କାହିଁ ? ସୁଖ କାହିଁ ? ସବୁଠି ଯେମିତି ଅସନ୍ତୋଷର ନିଆଁ କୁହୁଳି କୁହୁଳି ଧୂଆଁ ବାହାରୁଛି । ଆଖିରୁ ନାକରୁ ଗଡ଼ୁଛି ପାଣି । ନିଆଁ ଜଳୁନି । ହାଣ୍ଡି ତାତୁନି । ତେଣେ ପେଟ କଟଳି ଉଠୁଛି । ହାୟ ହାୟ ! କି କଥା ହେ ! ଏକା ପାହାରକେ ହାଣ୍ଡିଟା ଛତୁ । କେଉଁଠି ପେଟରେ ନିଆଁ । କେଉଁଠି ମନରେ ନିଆଁ । କେଉଁଠି ବା ଧର୍ମରେ, ବିଶ୍ୱାସରେ, ରୀତିରେ, ନୀତିରେ, ଶାସନରେ, ସମାଜରେ, ପରିବାରରେ ହୁରୁ ହୁରୁ ନିଆଁ । ପାଣି ପକେଇବ କିଏ ? ପାଣି ମଧ୍ୟ ମିଳିବ କେଉଁଠୁ ? ସମସ୍ତଙ୍କ ଘର ତ ଏକ ସମୟରେ ଜଳୁଚି । କିଏ କାହାକୁ ସାହାଯ୍ୟ କରିବ ? କିଏ କାହାର ଶବ ଉଠେଇବ । କିଏ କାହାକୁ ଦେବ ସାନ୍ତ୍ୱନା ? ଧନୀ, ନିର୍ଦ୍ଧନ, ଥିଲାବାଲା, ନଥିଲା-ବାଲା, ଚାକିରିଆ, ବେକାର, ଚାଷୀ ମୂଲିଆ ସମସ୍ତେ ଗୋଟିଏ ଡଙ୍ଗାରେ । ଡଙ୍ଗା

ଭାସିଯାଉଛି ମଝି ନଈରେ । ନଙ୍ଗର ପକାଇଲେ ଅଳକୂଳ ପାଉନ । ଯଉବା କେଉଁଠି ପାଉଛ ସେଠି ଖାଲି ସ୍ନେଗବାଲି । ଗୋଡ଼ ତଳକୁ ତଳକୁ ପଶିଯାଉଛି । କିଏ କାହାର ହାତ ଧରି ଟାଣି ଆଣିବ ? ଯିଏ ଯିବ ସାହସ କରି ସିଏ ବି ଯିବ ତଳକୁ ତଳକୁ । ବଢ଼ିପାଣିରେ ନଈ ମାତେ, ବନ୍ଧବାଡ଼ ଭାଙ୍ଗେ । ନଈସୁଅ ମାଡ଼ି-ଯାଏ ମନଇଚ୍ଛା ଯୁଆଡ଼େ ନାଇ ସିଆଡ଼େ । ଘରଦ୍ୱାର ଭାଙ୍ଗିଯାଏ । ଭସେଇ ନିଏ ସବୁ ମଣିଷ, ଗାଈଗୋରୁ, ଛେଳିମେଣ୍ଢା । ନଈ ମଝିରେ ଗୋଟାଏ କାଠ ଗଣ୍ଡିକୁ ଅଥବା ଗୋଟାଏ ଭସାବୃକ୍ଷକୁ ଆଶ୍ରୟ କରି ମଣିଷ, ଭାଲୁ, ଛେଳି, ସାପ ଏକାଠି ଯାଉଥିଲେ ବି କେହି କାହାକୁ ଆକ୍ରମଣ କରନ୍ତି ନାହିଁ । ସମସ୍ତେ ତ ବିପଦରେ । ସମସ୍ତଙ୍କର ସମଦଶା । ସମଦୁଃଖୀ ହେଲେ ହିଁ ଜଣେ ଅନ୍ୟର ଦୁଃଖକୁ ବୁଝେ, ସମବେଦନା ପ୍ରକାଶ କରେ । ଯିଏ ଦୁଃଖ କଣ ଜାଣି ନାହିଁ, ସଙ୍କଟ କଣ ଉପଲବ୍ଧି କରିନାହିଁ; ସିଏ କେମିତି ଅନ୍ୟର ଦୁଃଖ ବା ସଙ୍କଟକୁ ବୁଝିବ ?

ଜଣେ ସମ୍ପଦରେ ଥିଲେ ଅନ୍ୟର ବିପଦ ଦେଖି ହସେ । ଜଣେ ସୁଖରେ ଥିଲେ ଅନ୍ୟର ଦୁଃଖ ଦେଖି ତାଳିମାରେ । ସେ ଭାବେ ସେ ହିଁ କେବଳ ଭାଗ୍ୟବାନ । ଦୁଃଖ କି ବିପଦ ତାକୁ ଛୁଇଁ ପାରିବ ନାହିଁ । ଥିଲାବାଲା କଣ ନଥିଲାବାଲାର ମନ କଥାକୁ ବୁଝିପାରେ ? କ୍ଷମତାର ମୁକୁଟ ପିନ୍ଧିଥିବା ମଣିଷ କଣ କେବେ ବୁଝିପାରେ ନିଃସ୍ୱ ଅସହାୟ ସାଧାରଣ ମଲାମୁଣ୍ଡିଆ ମଣିଷର ବ୍ୟଥା ? ସିଏ କିଛି ବୁଝେନାହିଁ; ବୁଝିଛି ବୋଲି ଛଳନା କରେ । ତାକୁ ବୁଝାଇବାକୁ ଚେଷ୍ଟାକଲେ ସେ ରାଗେ । କାରଣ ସେ ସବ୍‌ଜାନତା—ସେ ସ୍ୱୟଂ ତ୍ରିକାଳଦର୍ଶୀ ସିଦ୍ଧ ପୁରୁଷ । ସିଏ ଯାହା କହେ ତାହାହିଁ ଠିକ୍, ଯାହା ବୁଝେ ତାହାହିଁ ବେଦର ଗାର । ସିଂହାସନକୁ ସେ ଜାବୁଡ଼ି ଧରେ । ତାର 'ଅହଂ'କୁ ନେଇ ବ୍ୟସ୍ତ ରହେ । ଆପଣାର ଗୋଟାଏ କାଚଘର ରୂପୀ ସାମ୍ରାଜ୍ୟ ଗଢ଼ିବାକୁ ବ୍ୟସ୍ତ ହୁଏ । ତାର ଭୁଲ ଚେତେଇ ଦେଲେ ସେ ବାଘ କି ସିଂହ ଭଳି ଗର୍ଜିଉଠେ—ଏଡ଼େ ବହପ ! ତାଙ୍କ ପରି ଅଖଣ୍ଡ କ୍ଷମତାଧରଙ୍କର ଭୁଲ ଦେଖେଇବ ଜଣେ ସାଧାରଣ ମଣିଷ ! କର୍ମବଳ ଥିଲେ ରକ୍ଷା । ନହେଲେ ଗୁରୁପାଞ୍ଜିରୁ ଯିବା ସାର ।

ଜଣେ ଯେତେବେଳେ ଦୁଃଖରେ ଥାଏ ଅନ୍ୟଜଣେ ସମଦୁଃଖରେ ଥାଇ ତା' ପାଖକୁ ଗଲେ ଉଭୟଙ୍କ ଭିତରେ ସୃଷ୍ଟି ହୁଏ ମିତ୍ରତା । ଦୁଃଖୀ ଲୋକହିଁ ଦୁଃଖୀ ଲୋକର ହୁଏ ମିତ୍ର । କାରଣ ଉଭୟଙ୍କର ଥାଏ ଦୁଃଖ । ଦୁଃଖୀ ସୁଖୀ ପାଖକୁ ଯାଏ ନାହିଁ ଭୟରେ, ଲଜ୍ଜାରେ, ବିଫଳତା ଆଶଙ୍କାରେ । ଗଲେ ସହାନୁଭୂତି ପାଏ ନାହିଁ । ଯେଉଁଠି ସୁଖୀ ଯାଏ ଦୁଃଖୀ ପାଖକୁ ସେଠିଥାଏ କିଛି ଉଦ୍ଦେଶ୍ୟ । ବିନା ସ୍ୱାର୍ଥରେ ସୁଖୀ କେବେ ଦୁଃଖୀ ପାଖକୁ ଯାଏ ନାହିଁ । ସବୁ କଥାରେ ସେ ଲାଭକ୍ଷତିର

ବ୍ୟବହାର କରେ । ମୂଲ ଉତ୍ତର ଦିଏ । ଦୁଃଖୀକୁ ସହାନୁଭୂତି ପ୍ରକାଶ କଲେ ତା' ବନ୍ଧୁତ୍ୱରେ କଣ ମିଳିବ ? ନେତୃତ୍ୱ ମିଳିବ କି ନାହିଁ ? ସାମାଜିକ ପ୍ରତିଷ୍ଠା ମିଳିବ କି ନାହିଁ ? ଅଥବା କିଛି ଆର୍ଥିକ ସୁବିଧା ମିଳିବ କି ନାହିଁ ? ଖବରକାଗଜରେ ଅନ୍ତତଃ ଫଟୋ ସହିତ ବିବରଣୀ ବାହାରିବ କି ନାହିଁ ? ଏଠି ସୁଖୀ ଯେଉଁ ଛଳନା ଦେଖାଏ ତାହା ଦୁଃଖୀର ଅନ୍ତରକୁ ଛୁଏଁ ନାହିଁ । ଖାଲି ଗୋଟାଏ ଆପଣାକୁ ଦେଖେଇ ହବାର ବାହାଦୁରୀ । ଯେଉଁଠି ସୁଖୀ ଅନ୍ତରକୁ ଖୋଲି ଦେଇ ଦୁଃଖୀର ଅନ୍ତର ସହିତ ମିଶେଇ ଦିଏ ସେଇଠି ଆଉ ଉଭୟଙ୍କ ଭିତରେ ଭେଦ ରହେ ନାହିଁ । ସୁଖୀର ସ୍ପର୍ଦ୍ଧା ରହେ ନାହିଁ ବା ଦୁଃଖୀର ହୀନମନ୍ୟତା ରହେ ନାହିଁ । ସବୁ ହୋଇଯାଏ ଏକାକାର । ଏଇ ଯେମିତି ବିଦୁର ଘରେ ଶ୍ରୀକୃଷ୍ଣ ପହଞ୍ଚିଯାଇ ବିଦୁରର ଶାଗ ଭଜା ଖାଇଦେଲେ । ବିଦୁର, ବିଦୁରର ସ୍ତ୍ରୀ ଓ ଶ୍ରୀକୃଷ୍ଣ ଗୋଟିଏ ଭାବବନ୍ଧନକୁ ଚାଲିଗଲେ । ଆଉଗୋଟିଏ କଥା ଦେଖନ୍ତୁ; ଯେମିତି ସୁଦାମା ପହଞ୍ଚିଯାଇଛି ଶ୍ରୀକୃଷ୍ଣଙ୍କ ଘରେ ସେମିତି ସିଂହାସନରୁ ଉଠିଆସି କୋଳେଇ ନେଇଛନ୍ତି ସୁଦାମାକୁ ଶ୍ରୀକୃଷ୍ଣ । ସ୍ତ୍ରୀ ସହିତ ମିଶି ସୁଦାମାର ଗୋଡ଼ ଧୋଇ ଦେଇଛନ୍ତି । ସୁଦାମାର ଚାଉଳଭଜାକୁ ନେଇ ପାଟିରେ ପକେଇଛନ୍ତି । ସୁଦାମା କିଛି କହିପାରି ନାହିଁ । ମାଗି ପାରିନାହିଁ ମଧ୍ୟ କିଛି । ଅଥଚ ଶ୍ରୀକୃଷ୍ଣ ବୁଝିପାରିଛନ୍ତି ସବୁକଥା । ବନ୍ଧୁଙ୍କ ଦୁଃଖ ଫେଡ଼ିବା ପାଇଁ ସବୁ ବ୍ୟବସ୍ଥା କରିଦେଇଛନ୍ତି । ଏ କ୍ଷେତ୍ରରେ ଛଳନା ନାହିଁ; ଅଛି ପରିପୂର୍ଣ୍ଣ ଆନ୍ତରିକତା । ଦୁଃଖୀ ଯେଉଁଠି ଦୁଃଖୀ ପାଖକୁ ଯାଏ ସେଠି ଉଭୟ ଉଭୟଙ୍କୁ ବୁଝନ୍ତି । ଉଭୟ ହୋଇଯାଆନ୍ତି ମିତ୍ର । ଜଣକର ଦୁଃଖ ହୋଇଯାଏ ଅନ୍ୟଜଣଙ୍କର ଦୁଃଖ । ଏଇ ଯେମିତି ସୁଗ୍ରୀବ ଆଉ ରାମ । ଉଭୟଙ୍କ ଦୁଃଖ ସମାନ । ତେଣୁ ଉଭୟ ହୋଇଗଲେ ନିକଟରୁ ନିକଟତର । ମନ ଚହଲିଲା ମନକୁ, ହୃଦୟ ଜାଣିଲା ହୃଦୟକୁ, ଲୁହ ଚହଲିଲା ଲୁହକୁ । ଉଭୟ ହେଲେ ମିତ୍ର । ଦୋହିଁଜଣେ ପଡ଼ିଛନ୍ତି ସମଦଶା । ତେଣୁ ବନ୍ଧୁତା ହେଲା ନିବିଡ଼ । ଅନ୍ୟାୟ ହେଲେ ମଧ୍ୟ ବନ୍ଧୁପାଇଁ ରାମ ବାଳିକୁ ବଧ କଲେ । ସୁଗ୍ରୀବଙ୍କୁ ରାଜା କଲେ କିଷ୍କିନ୍ଧ୍ୟାରେ । ପ୍ରଥମେ ତାକୁ ଦେଲେ ପରିପୂର୍ଣ୍ଣ ସୁଖ ଭୋଗ କରିବା ପାଇଁ ସୁଯୋଗ । ତାପରେ ସୁଗ୍ରୀବ ବାନରବାହିନୀ ସହିତ ଆଗେଇ ଆସିଲେ ଶ୍ରୀରାମଙ୍କୁ ସାହାଯ୍ୟ କରିବା ପାଇଁ । ସମୁଦ୍ରରେ ସେତୁ ବାନ୍ଧିଲେ । ଲଙ୍କାକୁ ଯାଇ ରାବଣକୁ ସବଂଶେ ବିନାଶ କରି ସୀତାଙ୍କୁ ଉଦ୍ଧାର କଲେ । ରାମ ଆଉ ସୁଗ୍ରୀବଙ୍କର ସମଦଶା ଥିଲା ବୋଲି ସେମାନଙ୍କର ମିତ୍ରତା ହେଲା । ଉଭୟ ଉଭୟଙ୍କୁ କଲେ ସାହାଯ୍ୟ । ଉଭୟଙ୍କର ହେଲା କଲ୍ୟାଣ । ଉଭୟଙ୍କର ସମାନଦଶା ପଡ଼ି ନଥିଲେ କଣ ବନ୍ଧୁତା ହୋଇଥାଆନ୍ତା ?

ତେବେ କଣ ବନ୍ଧୁତା ପାଇଁ ସମଦଶା ହେବା ନିହାତି ଦରକାର ? ସମଦଶାସମ୍ପନ୍ନ ନ ହେଲେ କଣ କେହି କାହାର ବନ୍ଧୁ ହୋଇପାରିବ ନାହିଁ ? ହଁ,

ହୋଇଯାଉଛି । ତେବେ ସମଦର୍ଶୀ ଭୋଗୁଥିବା ମଣିଷମାନଙ୍କର ବନ୍ଧୁତା କଥାଟି । ଏଥିରେ ଲୁହ ସହିତ ଲୁହର ହୁଏ ମିଳନ । ଜଣେ ଅନ୍ୟଜଣକୁ ଆପଣାର ପାଖୁଁ ପର୍ଯ୍ୟନ୍ତ ସାହାଯ୍ୟ କରିବାକୁ ଆଗେଇ ଆସେ । ଏଥିରେ ସ୍ୱାର୍ଥ ହୋଇଯାଏ ପରାର୍ଥ, ପରାର୍ଥ ହୋଇଯାଏ ସ୍ୱାର୍ଥ । ସ୍ୱ ଏବଂ ପର, ପର ଏବଂ ସ୍ୱ ସବୁ ଆସିଯାଆନ୍ତି ଗୋଟିଏ ବିନ୍ଦୁକୁ । ଯେଉଁଠି ଉଭୟର ହୁଏ ମହାମିଳନ ।

ତେଣୁ କେବଳ ସମଦର୍ଶୀ ପଣ୍ଡିତେ ଆମେ ବିଚଳିତ ହେବା କାହିଁକି ? ବରଂ ଆସ, ଲୁହ ସହିତ ଲୁହକୁ, ରକ୍ତ ସହିତ ରକ୍ତକୁ, ଆତ୍ମା ସହିତ ଆତ୍ମାକୁ, ହୃଦୟ ସହିତ ହୃଦୟକୁ ମିଶାଇ ଦେବା । ଏଠି ଆଉ ଫେଡ଼ାଣ ନାହିଁ; ଅଛି କେବଳ ମିଶାଣ । ଏହି ମିଶାଣ ହିଁ ଆମକୁ ବଳ ଦେବ, ବଞ୍ଚିବା ପାଇଁ ନୂଆ ରାସ୍ତା ଦେବ । ଯେତେବେଶୀ ଫେଡ଼ାଣ ସେତେବେଶୀ ବ୍ୟବଧାନ—ସେତେବେଶି ସ୍ୱାର୍ଥର କାରବାର । ଏଇ ଫେଡ଼ାଣ ଯିଏ ଜାଣିଛି ସିଏ ଏ ଯୁଗକୁ ପିଆଣିଆ ପାଲଟି ଯାଉଛି । ଆକାଶ ମାର୍ଗରେ ଯାଇ ପୀଡ଼ିତମାନଙ୍କୁ ଦେଖି ଖବରକାଗଜରେ ବିବୃତି ଛାପି ଦେଉଛି । ପୀଡ଼ିତମାନଙ୍କ ଉପରକୁ ଗୁଣ୍ଡିଏ କମ୍ବଳ ଖାଦ୍ୟ ବସ୍ତ୍ର ପକାଇ ଦେଉଛି । ପୀଡ଼ିତ-ମାନେ କୃତକୃତ୍ୟ ହୋଇଯାଉଛନ୍ତି । ଅଥଚ ସେମାନେ ବୁଝିପାରୁନାହାନ୍ତି ଏହାର ରହସ୍ୟ । ସେମାନେ ଯେ ବାହାରକୁ ସନ୍ନ୍ୟାସୀ, ଭିତରକୁ କାଳନେମୀ—ଏକଥା ଜମା ଜାଣିପାରୁ ନାହାନ୍ତି । ଏଇ ନ ଜାଣିପାରିବା ଯୋଗୁଁ ହିଁ ଦୁଃଖର ବାହୁ ଲମ୍ବି ଲମ୍ବି ଯାଉଛି । ଯୁଆଡ଼କୁ ଅନେଇ ଦେଲେ କେବଳଇ ଦୁଃଖ ।

ଯେଉଁ ସମୟରେ ଆମେ ଗତି କରୁଛେ, ସେଠି ଦୁଃଖ କାହାର ନାହିଁ ? ଘରକୁ ପଶିଗଲେ ଘରଣୀର ତୋଡ଼ବାଡ଼ । ପଇସା ନାହିଁ, ଡାଲି ନାହିଁ, ପିଲାଙ୍କ ଜାମାପଣ୍ଟ ନାହିଁ, ବହିପତ୍ର ନାହିଁ । ଘରଣୀ ପାଖରେ ତମେ ଯେମିତିକା ଗୋବରାପଣି ଲୋକ । ସେଥିରେ ପୁଣି ଘରଣୀର ନାକ ସୁଁ ସୁଁ—'ତମ ହାତଧରି ଟିକେ ଶାନ୍ତି ପାଇଲି ନାହିଁ ।' ଅଫିସକୁ ଗଲାବେଳକୁ ସେଠି ଭୂମି ତୁଫାନ, ଫାଇଲ ଫୋପଡ଼ା । କିଏ କାହା ଉପରେ ଚଢ଼ି ପାହାଚେ ଉପରକୁ ଉଠିଗଲାଣି । କିଏ କେଉଁଠି ଗାଳି ଖାଇଲାଣି । କିଏ ପାହାଚ ଚଢ଼ୁ ଚଢ଼ୁ ଖସିପଡ଼ିଲାଣି ତଳକୁ । ସବୁଠି ଦୁଃଖ । ଯୁଧିଷ୍ଠିରଙ୍କ ପରି ହେଲେ ଯାଇଁ ଦୁଃଖକୁ ଅତିକ୍ରମ କରିହେବ । ପଛକୁ ଫେରି ଚାହିଁବ ନାହିଁ । ଚାହିଁଲେ ଝଟକା ଖାଇବା କପାଳ ଲିଖନ ।

ହାୟ କପାଳ ! ବାଟ କାହିଁ ? ସବୁଆଡ଼େ କଟିକଟି ଅନ୍ଧାର । ନଈକୂଳକୁ ଗଲେ ବି ସେଠି ଖାଁ ଖାଁ । ଜଙ୍ଗଲ ଭିତରେ ଖେଣ୍ଟା ଗଛ । ତା' ଉପରେ ସାପ-କାତି । ଏଣେ ପୁଣି ଦେହ ଭିତରେ ନୂଆ ନୂଆ ରୋଗ ବସା ବାନ୍ଧୁଛି । କେତେ-ବେଳେ କିଏ ଧରି ପକାଉଛି ଦେହକୁ । ତେଣେ ପୁଣି ମାଟିତଳେ ପରୀକ୍ଷା ହେଲାଣି

ଶକ୍ତିଶାଳୀ ବୋମା ତ ସମୁଦ୍ର ଭିତରେ ବୋମା ଫୁଟି ବାଡ଼ବ ସୃଷ୍ଟି କଲଣି । କେଉଁଠି କିଏ ଦେଶ ଉପରେ ବୋମା ପକାଇଲାଣି ତ କେଉଁଠି ପୋକମାଛି ପରି ମଣିଷଗୁଡ଼ାଙ୍କୁ ହତ୍ୟା କରାଗଲାଣି । କେଉଁଠି ସନ୍ତ୍ରାସବାଦୀଏ ବନ୍ଧୁକ ଆଉ ଛୁରୀ ଧରି ନାଚିଲେଣି ତ ଆଉ କେଉଁଠି ରାବଣୀ ଶକ୍ତିର ଚାଲିଛି ପ୍ରମତ୍ତ ଲୀଳା । ସର୍ବତ୍ର ବିପଦ ରାକ୍ଷସ ମୁହଁ ବ୍ୟାଦାନ କରି ମାଡ଼ିଆସୁଛି । ଏଣେ ପୁଣି ଦେଶ ଭିତରେ ନାହିଁ ନଥିବା ଅବସ୍ଥା । କେଉଁଠି ଧର୍ମ ନାମରେ ରକ୍ତର ସୁଅ ଛୁଟିଲାଣି ତ କେଉଁଠି ଜାତି ଅଥବା ଭାଷା ନାମରେ ଛୁଟୁଛି ରକ୍ତର ସୁଅ । ଘରେ ବାହାରେ ସମଦଶା । କବାଟ ଝରକା ବନ୍ଦ କରିଦେଲେ ବି କେଉଁ ରନ୍ଧ୍ର ବାଟେ ପବନ ପଶିଆସୁଛି ସାଏଁ ସାଏଁ । ଯିଏ ଏସବୁ ଦଶା ସୃଷ୍ଟି କରୁଛନ୍ତି ସେମାନେ ଏବେ କେଉଁ ଭଲରେ ଅଛନ୍ତି କି ? ଖାଲି ଯାହା ଗୋଟାଏ ଭ୍ରାନ୍ତ ଅହମିକା ଆଉ ଉତ୍ତେଜନା । ମଣିଷ ଶ୍ରେଷ୍ଠ ଜୀବ— ଅମୃତର ସନ୍ତାନ । ସେ କଣ ଏହି ଧ୍ୱଂସ ପାଇଁ ଅଭିପ୍ରେତ ? ଆଉ କଣ କିଛି ନାହିଁ କରିବାକୁ ? ତାର ଜ୍ଞାନଗରିମା କଣ ସବୁ ହତ୍ୟା ଆଉ ଆତଙ୍କ ସୃଷ୍ଟି ପାଇଁ ? ରାଜକକ୍ଷର ପଶାପାଲିରେ ଜ୍ଞାନ ଯେମିତି ହୋଇଯାଇଛି ଗୋଟି । ଶକୁନି ଦଳ ପଶାକାଠି ଗଡ଼ାଇବାରେ ବ୍ୟସ୍ତ । ତେବେ ଶକୁନି କଣ ତା କୂଟଜାଲରୁ ମୁକ୍ତି ପାଇବ କି ? ମହାଭାରତରେ ଶକୁନି କଣ ରକ୍ଷା ପାଇଲା ? ସେ କାଳରେ ସିନା ଭାଇ ଓ ବାପାର କରୁଣ ମୃତ୍ୟୁ ପାଇଁ ଶକୁନି ନେଲା ପ୍ରତିଶୋଧ । ଏବେ କିନ୍ତୁ ନୂଆ ଶକୁନିମାନେ କାହା ବିରୋଧରେ ପ୍ରତିଶୋଧ ନେଉଛନ୍ତି ?

ବେଶି କହିବା ଭଲ ନୁହେଁ । ଅତି ଲେମ୍ବୁ ଚିପୁଡ଼ିଲେ ପିତା । ଏବେ ତ ସର୍ବଜନେ ପଡ଼ିଛି ସମଦଶା । କାଉ ଶାଗୁଣା ଉଡ଼ୁଛନ୍ତି ଆକାଶରେ । ତଳକୁ ଅଛି ସେମାନଙ୍କର ତୀକ୍ଷ୍ଣ ଦୃଷ୍ଟି । ଆମେ କଣ ଆଉ ଲୁଚି ରହିପାରିବା ? ସେମାନଙ୍କ ଦୃଷ୍ଟିକୁ ଏଡ଼େଇ ଦେଇପାରିବା ? ନା, ଏଥର ଆସନ୍ତୁ; ରାମ ଆଉ ସୁଗ୍ରୀବଙ୍କ ପରି ହାତ ଧରାଧରି ହୋଇ ଆଗେଇଯିବା । ପଥ ବହୁଦୂର । ଆଗରେ ଅଗନାଅଗନି ବନସ୍ତ । ବନସ୍ତ ପାରି ହେଲେ ସମୁଦ୍ର । ସେତୁ ବାନ୍ଧିବା ସମୁଦ୍ରରେ । ଯୋଡ଼ିବା ସମ୍ପର୍କର ନୂଆ ସେତୁ । ଦୁର୍ଦ୍ଦଶାରୁ ମୁକ୍ତ ହେବା । ଆସୁରିକ ଶକ୍ତିର ବିନାଶ କରି ସାତ୍ତ୍ୱିକ ଭାବକୁ ବିକାଶ କରିବା । ଦୁଃଖ ଆଉ ଲୁହକୁ ଆପଣାର କରି ଲୁହରେ ପଦ୍ମ ଫୁଟେଇବା । ଏତିକି କଣ ଆମେ କରିପାରିବା ନାହିଁ ? ଏହାହିଁ ଆଜି ସମଦୁଃଖୀ ମଣିଷଟିର ଅନ୍ତରର ପ୍ରଶ୍ନଟିଏ ।



# ନାରଦ ସମ୍ବାଦ

ନାରାୟଣଙ୍କ ନିର୍ଦ୍ଦେଶ ମାନି ବ୍ରହ୍ମା ସବୁକିଛୁ ସୃଷ୍ଟି କରିସାରିଲା ପରେ ତଥାପି କାହିଁକି ମନ ଭିତରେ ଶାନ୍ତି ପାଇଲେ ନାହିଁ । ଭାବି ଭାବି ଶେଷକୁ ଚାରୋଟି ପୁଅଙ୍କୁ ଜନମ ଦେଲେ ।

ଚାରି ପୁଅଯାକ ଲଙ୍ଗଳା । ଜନମରୁ ଯୁଆନ ।

ବ୍ରହ୍ମା କହିଲେ ବାବୁମାନେ, ବହୁତ କିଛି ଭାବି ଭାବି ତମକୁ ସୃଷ୍ଟି କରିଛି । ତୁମ୍ଭେମାନେ ଏଥର ସଂସାର ବାନ୍ଧ ।

ପୁଅମାନେ କହିଲେ—ବାପା ! ସେସବୁ ଝାମେଲା ଭିତରେ ଆମେ ପଶି ପାରିବୁ ନାଇ । ତମକୁ ଯଦି ଆମେ ବୋଝ ହୋଇପଡ଼ୁଛୁ ତେବେ ଆମେ ଯାଉଛୁ । କୁଆଡ଼େ ହେଲେ ପେଟ ଚାଖଣ୍ଡିକ କୌଣସିମତେ ଶାନ୍ତ କରି ଜୀବନ କଟେଇ ଦେବୁ । ହରିଓଁ ତତ୍‌ସତ୍‌ ।

ବିଚରା ବ୍ରହ୍ମା କଣ କରିବେ । ତାଙ୍କ ମୁହଁ ଉପରେ ଚାରିଟାଯାକ ପୁଅ ଟାଏଁ ଟାଏଁ କଥାଗୁଡ଼ା କହି ଦେଇ ପଳାଇଗଲେ । କି କାଳ ଏ ହେଲାରେ ବାପା, ମୁହେଁ ମୁହେଁ ବାପାକୁ ପୁଅର ଜବାବ !

ଇମିତି କିଛିଦିନ ବିତିଗଲା । ପୁଅ ଜନମ ପାଇଁ ନିଶା ତ ଲାଗିଛି । ଫେର ଗୋଟାଏ ପୁଅ ଜନମ ଦେଲେ । ଆଦରରେ ନାଁ ରଖିଲେ ନାରଦ ।

ଗୋଟିଏ ବୋଲି ପୁଅ । ପାଖକୁ ଡାକି ବ୍ରହ୍ମା ତା'ର ପିଠି ଆଉଁସିଦେଲେ । ଗେହ୍ଲେଇ ହୋଇ କହିଲେ—ବାବୁରେ ! ତୋ ବଡ଼ ଭାଇ ଚାରିଜଣଯାକ ମୋ ମୁହଁକୁ ଟିକିଏ ହେଲେ ଅନେଇଲେ ନାଇ । ଘରଛାଡ଼ି କଏ କୁଆଡ଼େ ପଳାଇଗଲେ । ତୁ ମୋର ସୁନାପୁଅ । କୋଳପୋଛା ପୁଅ । ମୋ ମାନ ସନମାନ ତୁ ରଖିବୁ । ତୁ ମୋତେ ଛାଡ଼ି କୁଆଡ଼କୁ ଯିବୁନି । ମୋଟେ ଅମାନିଆ ହେବୁନି । ବାହାସାହା ହେବୁ । ଘରସଂସାର କରିବୁ । ବୋହୂ ଘରକୁ ଆସିବ । ମୋ ଗୋଡ଼ ହାତ ଟିକେ ମୋଡ଼ା ଘସା କରିଦେବ । ମୋର ପୁଣି ନାତି ନାତୁଣୀ ହେବେ । କେତେ ଜାତିର

ଜଣେଇ, ବେଙ୍ଗ ବାଇଦ, ପିଆଁ କାଲି ଆଣିଦେବ । ବୁଢ଼ା ବଡ଼େ ସେଇମାନଙ୍କ ସହିତ ହସିଖେଳି ସମୟ କାଟିଦେବ ।

ନାରଦ ସାଙ୍ଗେ ସାଙ୍ଗେ କହିଲେ—ବାପା, ଆଉ ଥାଉ । ବହୁତ କହିଲଣି । ଆଉ କହିବା ଲୋଡ଼ା ନାଇ । ତମେ କଣ ବାୟା ହୋଇଗଲଣି କି ? ତମକୁ କଏ କହୁଥିଲା ଗୋଟାକ ପରେ ଗୋଟାଏ ପୁଅ ଜନମ ଦେବାକୁ ? ଜଣ ନା ବାହା କରିମି···ବୋହୂ ଆଣିମି···ନାତି ନାତୁଣୀ ଖେଳେଇମି । ଏଥର ଆଣୁଥାଅ । ମନେ ମନେ ଗୁଡ଼ ଖାଉଥାଅ । ହଁ, ମୁଁ ଆଗରୁ କହି ଦଉଚି । ତମ କାମ ତମେ କର । ଆମ କାମ ଆମେ କରିବୁ । ଏଇଟା ସ୍ୱାଧୀନ ଯୁଗ । ଆମ କାମ ଉପରେ ତମେ ହସ୍ତକ୍ଷେପ କରିବାକୁ କିଏ ? କୋଉଠୁ ଗୋଟାଏ ଆଣି ଆମ କାନ୍ଧରେ ଯୁଆଳି ପକାଇ ବାନ୍ଧିଦେବ । ତାପରେ ତମ ମନଇଚ୍ଛା ଆମକୁ ଖରା ବର୍ଷା ଶୀତରେ ହଳ ବୁଲଉଥିବ । ଚକଲ ଫୁଟଉ ଥିବ । ନାତ ମାରୁଥିବ । ମୁଁ ଜାଣେ, ସବୁ ଜାଣେ । ମୁଁ ଜମା ବାହା ହେବିନି । ହେଉ, ମୁଁ ବାହାରିଲି । ହରିଓଁ ତତ୍‌ସତ୍ ।

ଭଲ ହରିଓଁ ହରିଓଁ । ହଇହୋ କଷ୍ଟ କଲାବେଳକୁ ମୁଁ । ଆଉ ସବୁ କଥାକୁ ହରି । ସେ କିଏ ହୋ । ଗୁଡ଼ୁମ ହୋଇ ବସି ପଡ଼ିଲେ ବ୍ରହ୍ମା । ମୁଣ୍ଡ ଭିତରଟା ତାଙ୍କର ଭାଁ ଭାଁ ହୋଇ ଯାଉଚି । ପୁଅଗୁଡ଼ାଙ୍କ ବାବନାଭୂତ ହୋଇଚଲେ । ସବୁ ଆଶା ତାଙ୍କର ପାଣି ଫାଟିଗଲା ।

ବ୍ରହ୍ମା ଚନ୍ତାରେ ଖାଲି ଛଟପଟ ହେଲେ ।

ଏଣେ ନାରଦ ଘରଗୁଡ଼ି ଚମ୍ପଟ ଦୁ । ବୁରଆଡ଼େ ବୁଲି ବୁଲି ଶେଷକୁ ଯାଇଁ ନାରାୟଣଙ୍କ ପାଖରେ ପହଞ୍ଚିଗଲେ । ସେତେବେଳକୁ ତାଙ୍କର ଗୋଟାଏ ପ୍ରକୃତି ବଢ଼ିଗଲାଣି । ବେକାର ହୋଇ ଟଙ୍ଗ ଟଙ୍ଗ ବୁଲିବା ସାର । ଯା' ଘର କଳି ତା' ଘରେ ଭର୍ତ୍ତି କରିବା ଯେମିତି ତାଙ୍କର ମହାମନ୍ତ୍ର । ଯେଉଁଠି ନାଇ ସେଇଠି ଭୁସ୍‌କିନା ପହଞ୍ଚି ଯିବେ । ସ୍ଥାନ କାଳ ଜ୍ଞାନ ନାଇ । ଇମିତି କୌଶଳ କରି କଥାଟା ଫେନ୍ଦି କହିଦେବେ ନା—ଯାର ନାଇ ତାର ଅକଲ ଗୁଡ଼ୁମ ହେଇଯିବ । ଯିଏ ନାଇ ସିଏ ଉବବ—ସତ ହେଇଥିବ ପରି କଥାଟା !

ନାରାୟଣ ତ ସବୁବେଳେ ଅନନ୍ତ ଶଯ୍ୟାରେ । ପାଦ ପାଖରେ ଲକ୍ଷ୍ମୀ । ମୁଣ୍ଡ ପାଖରେ ସରସ୍ୱତୀ । ତାଙ୍କୁ କୋଉ ବେଳ ଅଛି ଯେ ଜଗତ କଥା ବୁଝିବା ପାଇଁ ? କେତେବେଳେ ଅନନ୍ତ ଶଯ୍ୟାରେ ତ କେତେବେଳେ ବୈକୁଣ୍ଠରେ । କେତେବେଳେ କେଉଁ ଡାକବଙ୍ଗଳାରେ ।

ନାରଦଙ୍କୁ ଦେଖି ନାରାୟଣ ଖୁବ୍ ଗୋଟାଏ ହେଣ୍ଟି ମାରି ଉଠିଲେ । ଆରେ ବାଃ, ଏତେଦିନେ ଜଣେ ମଉଜିଆ ଲୋକ ହାବୁଡ଼ି ଗଲେ । ଆଉ ଏଥର ବୋର୍ ଲାଗିବ ନାଇ । ସବୁବେଳେ ମୁହଁଟାକୁ ହାଣ୍ଡି ଭଳିଆ କରି ବସିବ ଗୋଟାଏ କଣ ? ଆରେ, ଟିକେ ମଉଜ କର, ହସ । ସରସ୍ୱତୀଙ୍କ ବୀଣାଟା ତ ଘସରା ହୋଇଗଲାଣି । ସବୁଦିନେ ସେଇ ଗୋଟାଏ ରକମର ଗୀତ ଶୁଣି ଶୁଣି ଢକ୍‌ଦାଣିଆ ଲାଗିଗଲାଣି । ସିଏ ତ ଆଗରୁ ଶୁଣିଥିଲେ ଯେ ନାରଦ ଜଣେ ମସ୍କୁରିଆ ଲୋକ । ତାଙ୍କ ସହିତ ଟିକିଏ ରସିକତା କଲେ ମନଟା ଭଲ ରହିବ, କାମ ଦାମ କରିବାକୁ ଇଚ୍ଛା ହେବ ।

ନାରାୟଣ କହିଲେ ନାରଦ ! ଆଉ ସବୁ ଖବର ଅନ୍ତର କଣ ? ତମ ବାପା ଆମର ସାଙ୍ଗ ଲୋକ । ଅନେକ ଦିନ ହେଲା ଦେଖାସାକ୍ଷାତ ହୋଇନ । ସେ ଏବେ କେମିତି ଅଛନ୍ତି ?

ଆଜ୍ଞା ! ବାପାଙ୍କ କଥା ଆଉ ପଚାରନ୍ତୁ ନାଇ । ସିଏ ତ ବୁଢ଼ାହୋଇ ଗଲେଣି । କିଛି ବୁଝାସୁଝା ନାଇ । ଖାଲି କଣ ନା ବାହା ହୋଇପଡ଼ । ତାଙ୍କ କଥା ନ ମାନିଲାରୁ ସେ ରାଗି ନାଲ ହୋଇଯାଉଛନ୍ତି । କଣ ଆମର ରୋଜଗାର ଅଛି ? ଯାହାକୁ ବାହାହେବ, ତା ମନ ନେଇ ତ ପୁଣି ଚାଲିବାକୁ ହେବ । କେମିତି ସବୁ ଖର୍ଚ୍ଚ ତୁଲେଇବ । ଏକଥା କହିବାରୁ ବାପା ତେଜ୍ୟପୁତ୍ର କରି ଦେଇଛନ୍ତି । ଏମିତି ଖାଲି ବୁଲୁଚି । ତୁଚ୍ଛା ବେକାର ।

ଆଚ୍ଛା ନାରଦ ! ତମର ତ ଗୋଟାଏ ବଢ଼ିଆ ଯାନ ଅଛି । ସେଇଟା କୁଆଡ଼େ ଦେଖି । ମୋତେ କେତେଜଣ ଆସି ତମ ଯାନ କଥା କହିଲେଣି । ସେଇଥିରେ ତମେ କୁଆଡ଼େ ଦିନରାତି ଘୂରିଆଡ଼େ ଖୁବ୍ ସ୍ପିଡ୍‌ରେ ବୁଲୁଚ । କେମିତିକା ଇଞ୍ଜିନ ଲଗେଇଚ କହୋ ? ସେଇଟା କଣ ମୋଟେ ଖରାପ ହେଉନ ? ଯୁଆଡ଼େ ତାଇ ସିଆଡ଼େ ସର୍ କରି ଚାଲିଯାଉଚ । ବଢ଼ିଆ ଯାନଟାଏ ଏକା । ପେଟ୍ରୋଲ କି ଡିଜେଲ ତ ଲଗାଉନ, ଇଞ୍ଜିନ୍ କେମିତି ଚାଲୁଚ ? କଏ ତିଆରି କରିଛି ?

ପ୍ରଭୁ ! ଆପଣ ତ ସବୁକଥା ଜାଣନ୍ତି । କେଉଁ କଥା ଆପଣଙ୍କୁ ଅମାଲୁମ । ଆପଣ ଯେଉଁ ଗୁପ୍ତଚର ବିଭାଗ ରଖିଛନ୍ତି ନା, ସ୍ୱର୍ଗ ମର୍ତ୍ତ୍ୟ ପାତାଳ ସବୁଆଡ଼େ ସେମାନେ ଖେଳି ହୋଇ ଯାଇଛନ୍ତି । ଯୁଆଡ଼େ ତାଇ ସିଆଡ଼େ ହରବର୍ଗୀ ପୋଷାକରେ ବୁଲୁଛନ୍ତି । ଟିକିନିଖି ସମ୍ବାଦ ସେମାନେ ଆପଣଙ୍କୁ ଯୋଗେଇ ଦେଉଛନ୍ତି । ସେଥିରେ ପୁଣି ଆପଣଙ୍କର ସ୍ୱତନ୍ତ୍ର ବିଭାଗ—ଖାସ୍ ଆପଣଙ୍କର ବିଶ୍ୱସ୍ତ । ସେମାନଙ୍କଠୁଁ ଆପଣ ତ ସବୁ ଖବର ପାଉଛନ୍ତି । ମୋତେ ଆଉ କଣ ପଚାରୁଛନ୍ତି ?

ନାରଦ ! ତମେ ଯାହା କହିଲ ଅକ୍ଷରେ ଅକ୍ଷରେ ସତ । ହେଲେ ତମେ ତ ଜାଣ ଯେ ସେମାନେ ହେଲେ ବେତନଭୋଗୀ କର୍ମବ୍ୟସ୍ତ । ଯେନକେନ ପ୍ରକାରେ ଗୋଟାଏ ଲେଖା ଲମ୍ବା ଖବର ପେଶ୍ କରି ଦଉଛନ୍ତି । ଖୋଲତାଡ଼ କଳ୍ପବେଲକୁ ସେଥିରୁ ଅନେକ ଘଟଣା ମନଗଢ଼ା ଜଣାପଡ଼ୁଛି । ସେମାନଙ୍କର କଣ ଯାଏଆସେ ? ଦାୟିତ୍ୱ ତୁଲେଇ ଦେଲେ ଗଲା । ସେଥିରେ ପୁଣି ନାନା ପ୍ରକାର ଦାବୀ—ଦରମା ବଢ଼ାଅ, ଘରଭଡ଼ା ଦିଅ, ଛୁଟି ପାଉଣା ଦିଅ, ଇମିତି କେତେ ନାଇ କେତେ ଆପତ୍ତି । ନଦେଲେ ହରତାଳ । ଆଉ ତମେ ହେଲ ଅବୈତନିକ ସାମ୍ବାଦିକ । ତମର ତ କିଛି ନିଆ ନାଇ ନା ପିଆ ନାଇ । ଯାହା ଦେଖ କି ଶୁଣ, ଠିକ୍ ଠିକ୍ କହିଦିଅ । ଚୁଗୁଲି କରିବା ତମ ଜାତକରେ ନାଇ । ମୋର ଧାରଣା ଯେ ତମ ସମ୍ବାଦଟା ଖାଣ୍ଟି । ଏଇଥି ପାଇଁ ତମକୁ ମୁଁ ମଝିରେ ମଝିରେ ପଚାରି ଦିଏ ।

ନାରଦ ଟିକେ ହସିଦେଲେ । ନାରାୟଣଙ୍କ ଖୋସାମୋଦିଆ କଥା ଶୁଣି ସେ କୁରୁକି ଉଠିଲେ । ମନେ ମନେ ଭାବିଲେ—ମୁଁ ତ ଆଉ ଯାଉ ତାଇ ସାମ୍ବାଦିକ ନୁହେଁ । ଇମିତି କେତେ ସମ୍ବାଦ ଜଣେଇ ନାରାୟଣଙ୍କୁ ଭୂଆଁ ବୁଲେଇ ଦେଇଚି । ଶିବଙ୍କୁ ତ ପାଣି ପିଆଇ ଦେଇଚି । ବାଣାସୁର ତ ଶିବଙ୍କ ଭକ୍ତ । ମନେ ମନେ ହେଣ୍ଡି ମାରୁଥିଲା ତା' ଝିଅ ଉଷାକୁ ଶିବଙ୍କ ପୁଅ ସହିତ ବାହାଘର କରିବ । ଯେମିତି ମୁଁ ଏକଥା ଜାଣିଚି ସେମିତି କୃଷ୍ଣଙ୍କ ପୁଅ ଅନିରୁଦ୍ଧଙ୍କୁ ଆଣି ଉଷା ସହିତ ମିଳେଇ ଦେଲି । ତାହିଁକି ତାହେଁ ତ ମସ୍‌ଗୁଲ । ଏଣେ ବାଣା ସବୁକଥା ଜାଣି ଅନିରୁଦ୍ଧଙ୍କୁ ବନ୍ଦୀ କରିଥିଲା । ମୁଁ ଧାଇଁଗଲି କୃଷ୍ଣଙ୍କ ପାଖକୁ । କୃଷ୍ଣ ଆଉ ବଳରାମ ରାଗରେ ଜରଜର ହୋଇ ଧାଇଁ ଆସିଲେ । କାହିଁରେ କଣ ଯାଦବସେନା । ଏପଟେ ମୁଁ ଦଉଡ଼ି ଗଲି କୈଳାସ । ଶିବଙ୍କୁ ଜଣେଇ ଦେଲି ସବୁ କଥା । ସିଏ ତ ଭୋଳାନାଥ । ଜଟା ଛିଣ୍ଡେଇ, ତ୍ରିଶୂଳ ଧରି, ଗୋଟାଏ ବୁଢ଼ା ଷଣ୍ଢ ଉପରେ ଚଢ଼ି ଧାଇଁ ଆସିଲେ । ସାଙ୍ଗରେ ଶିବଗଣ । ହେଲା ଭୟଙ୍କର ଯୁଦ୍ଧ । ଆରେ ବାପ୍ ! କି ପ୍ରଳୟଙ୍କର ଯୁଦ୍ଧ । କେହି ହଟିବାର ନୁହନ୍ତି । ପୃଥିବୀ ଯେମିତି ଧ୍ୱଂସ ହୋଇଯିବା ଉପରେ । ଦଉଡ଼ିଲି ମୋ ବାପାଙ୍କ ପାଖକୁ । ବାପା ଯେମିତି ମୋତେ ଦେଖିଦେଲେ ସେମିତି କହିଲେ—କିରେ ନାରଦ ! ଏତେଦିନ ହେଲା କୁଆଡ଼େ ବୁଲୁଥିଲୁ ? ଘର କଥା କଣ ଝଲ୍‌ଝୁଲ୍ ଭୁଲିଗଲୁ ?

ନାରଦ କହିଲେ—ବାପା ! ସବୁ ସରିଗଲା । ତମେ ଶୀଘ୍ର ଧାଇଁ ଚାଲ । ଶିବ ଆଉ କୃଷ୍ଣଙ୍କ ଲଢ଼େଇ । ଚକ୍ର ଆଉ ତ୍ରିଶୂଳ । ଷଣ୍ଢ ଆଉ ଗରୁଡ଼ । ଶିବଗଣ ଆଉ ନାରାୟଣୀ ସେନା । ତମେ ଆଉ ଡେରି କରନା । ସଅଳ ଚାଲ ।

ବ୍ରହ୍ମା ସଙ୍ଗେ ସଙ୍ଗେ ହଂସ ବାହନରେ ବସି ଚାଲିଲେ । ଯୁଦ୍ଧ ମଝିରେ ଭୁସ୍‌କିନା ଛିଡ଼ା ହୋଇଯାଇ କହିଲେ—ଯୁଦ୍ଧ ବନ୍ଦ କର । କଣ ହୋଇଛି ବୁଝାସୁଝା-

କରିବା । ନ ହେଲେ କୋର୍ଟ କଚେରୀ ପଡ଼ିଛି । ମକଦ୍ଦମା କରିବା । ଆଇନକୁ ହାତକୁ ନେବା ଭଲ ନୁହେଁ ।

ଯୁଦ୍ଧ ବନ୍ଦ ହୋଇଗଲା । ତ୍ରିଦିନ ବେଳକୁ ଏସବୁର ନାଟର ଗୋବର୍ଦ୍ଧନ ସ୍ୱୟଂ ନାରଦ ।

ନାରଦ ନଜର କରାମତି ଜାଣନ୍ତି । ମିଛ ସତ ଲଗେଇ କଥା ମୋଟେଇ ଦବା କାଇଦା ତାଙ୍କୁ ଭଲ ଜଣା ।

ବିଷ୍ଣୁ କହିଲେ ନାରଦ ! ତମେ ତ ମୋର ପାର୍ଶ୍ୱଲୋକ । ତମକୁ ମୁଁ କେତେ ବିଶ୍ୱାସ ନ କରେ କହିଲ ?

ନାରଦ କହିଲେ—ଆଜ୍ଞା, ମୁଁ ଭଲ କରି ଜାଣେ । ମୋତେ ଛାଡ଼ି ଆପଣ କଣ ଅସ୍ଥ ହୋଇ ରହିପାରିବେ ? ମୋ ବ୍ୟତୀତ କିଏ ଆପଣଙ୍କୁ ରାଇଜଯାକର ସମ୍ବାଦ ଦେଇ ପାରିବ ? ହଁ ଆପଣ ପରା ମୋ ଠେଙ୍କି ବାହନ କଥା କହୁଥିଲେ । ସେଇଟାକୁ ମୁଁ କଳେ ତିଆରି କରିଛି । ମୁଁ ଏକଥା କାହାକୁ କହେ ନାଇ । କାହିଁକି ନା ସମସ୍ତେ ଜାଣିଗଲେ ପରେ ଏଇମିତିକା ଯାନ ତିଆରି କରିଦେବେ । ମୋର ଆଉ କଣ ସ୍ୱାତନ୍ତ୍ର୍ୟ ରହିବ ? ଆଉ ଆପଣ ଯେମିତିକା ନା ସମସ୍ତଙ୍କୁ ଫୁସ୍‌କନା କହିଦେବେ । ମୁଁ ଭକୁଆ ହୋଇ ଅନେଇଥିବି ।

ବିଷ୍ଣୁ କହିଲେ—ନାରଦ; ତମେ ଜାଣିଚ ନା ମର୍ତ୍ତ୍ୟରେ ତମ ଯାନଠାରୁ ଅଦ୍ଭୁତ ବଢ଼ିଆ ବଢ଼ିଆ ଯାନ ତିଆରି ହେଲାଣି । ଚଟ୍‌କନା ସେଇ ଯାନସବୁ କୁଆଡ଼େ ନାଇ କୁଆଡ଼େ ବୁଲିଯାଉଛି । ଗ୍ରହ ଗ୍ରହାନ୍ତରକୁ ଲୋକେ ଗଲେଣି । ଆମ ଏଇ ବୈକୁଣ୍ଠପୁରକୁ ଆସିଯିବେ ବୋଧହୁଏ ।

ହଁ ହଁ ମୁଁ ଜାଣିଚି । ଭଲକରି ଜାଣିଚି । ମଣିଷଗୁଡ଼ାକ ପାଗଳ ହୋଇଗଲେଣି । ସବୁ କଥାରେ ହୁମୁଦୁମୁ । ଆପଣଙ୍କ ସୃଷ୍ଟିକୁ ଧ୍ୱଂସ କରିଦେବାକୁ ଉନ୍ମତା ହେଉଛନ୍ତି । ଇଏ କହୁଚି ମୁଁ ବଡ଼ । ସିଏ କହୁଚି ମୁଁ ବଡ଼ । ଖାଲି ସବୁ ଆଡ଼େ ହଣାକଟା, ପୋଡ଼ାଜଳା, ଯୁଦ୍ଧ ।

ବିଷ୍ଣୁ କହିଲେ ନାରଦ—ତମେ ଏହା ଭିତରେ ମର୍ତ୍ତ୍ୟକୁ କେବେ ଯାଇଥିଲ ? କଣ କଣ ସବୁ ଦେଖିଲ ?

ନାରଦ କହିଲେ—କେବେ କଣ, ଏଇ ଏବେ ତ ମୁଁ ସିଧା ସିଧା ମର୍ତ୍ତ୍ୟରୁ ଆସୁଚି । ସାରା ମର୍ତ୍ତ୍ୟମଣ୍ଡଳଟା ବୁଲି ବୁଲି ମୋ ମୁଣ୍ଡ ଭିତରଟା ଭାଁ ଭାଁ

କହୋଇଚନ୍ତି । ଆଉ ଚନ୍ଦ୍ରଯାନର ଦାଉ । ଯିବନି, ଯାଏଁ ଟିକେ ପ୍ରଭୁଙ୍କୁ ଦର୍ଶନ କରି ଆସେ ।

ବିଷ୍ଣୁ କହିଲେ—ନାରଦ ! ତମେ ତ ସବୁ ଅଞ୍ଚଳ ବୁଲି ଆସିଥିବ । କଣ କଣ ଦେଖିଲ ଆଉ ଶୁଣିଲ ଟିକେ କହିଲ ।

ଆଜ୍ଞା ! କଣ ଆଉ କହିବି ? ମୋର ଭାଷା ନାହିଁ । ସବୁଆଡ଼େ ଆପଣଙ୍କ ବିରୋଧରେ ଯୋରଦାର ଆନ୍ଦୋଳନ ଚାଲିଛି । ଆପଣଙ୍କୁ ଯାହା ସବୁ କହୁଛନ୍ତି ନା, ସେଗୁଡ଼ାକ କାନରେ ଶୁଣି ହେବ ନାହିଁ । ଆପଣଙ୍କୁ କେହି ଖାତର କରୁ ନାହାନ୍ତି । ଆପଣ କୁଆଡ଼େ ପାଓ୍ୱାରଲେସ୍ । ସମସ୍ତେ ଟଙ୍କା ପଇସା ଯେମିତି ହେଉ ଲୁଣ୍ଠେଇ ଘରେ ପୂରେଇବାକୁ ବ୍ୟାକୁଳ ହେଉଛନ୍ତି । ସବୁ କଥାରେ ମିଶା । ସବୁ କାମରେ ଠକାମି । ଧର୍ମଭାବ ନାହିଁ । ମାନବ୍ୟଧର୍ମ ନାହିଁ । ନୀତି ନାହିଁ । ଆଦର୍ଶ ନାହିଁ । ସିଂହାସନ ପାଇବା ପାଇଁ ସବୁଠି ଛଳାପଞ୍ଝା । କେହି କେହି ନେତାଳିଆ ଲୋକ କହୁଛନ୍ତି ଯେ ଆପଣଙ୍କୁ ଜବରଦସ୍ତ ବାହାର କରିଦେଇ ଆପଣଙ୍କ ସିଂହାସନକୁ ମାଡ଼ି ବସିବେ । ଅନାସ୍ଥା ପ୍ରସ୍ତାବ ଆଗତ କରି ଗୃହୀତ କରାଇ ନେବେ । ଏସବୁ ଦେଖି ଶୁଣି ମୋ କାନମୁଣ୍ଡ ଭାଁ ଭାଁ ହୋଇ ଯାଉଛି । ମୋର ବାହିକ ଭୟ ହେଉଛି କାଳେ ସେଇ ହବଗିଲା ଲୋକଗୁଡ଼ାକ ଆପଣଙ୍କ ଉପରେ ଚଢ଼ାଉ କରିଦେବେ । ଆପଣ ଟିକେ ଏଣିକି ହୁସିଆର ହୋଇ ଯିବା ଆସିବା କରିବେ । ଖାଇବା ପିଇବା କରିବେ । କଣ କହୁ ମିଶେଇ ଦେଇପାରନ୍ତି । ହଁ; ଆଉ ଗୋଟିଏ କଥା, ମାଆ ଲକ୍ଷ୍ମୀ କିମ୍ବା ସରସ୍ୱତୀଙ୍କୁ ସାଙ୍ଗରେ ଜମା କୁଆଡ଼କୁ ନେବେନି ।

ଆରେ ନାରଦ ! ତମ କଥା ଶୁଣି ମୋତେ କେମିତିକା କେମିତିକା ଲାଗୁଛି ! ସତେ କଣ ମର୍ତ୍ତ୍ୟବାସୀମାନେ ଇମିତି ହୋଇଗଲେଣି ? ମୁଁ ତ ଏଇ କେତେ ବର୍ଷ ହେଲା କିଛି ଖବର ଅନ୍ତର ଜାଣିନାଇ । ମୋ କର୍ମଚାରୀମାନେ ଯାହା ସବୁ କହୁଥିଲେ । ଇମିତିକା କଥା ତ ସେମାନେ ମୋତେ ଜମା କହି ନାହାନ୍ତି । ସେଇତ ସବୁ ଫାଇଲ ପତ୍ର ଗଦା ହୋଇଛି କେଉଁଥିରେ ଏକଥାର ଉଲ୍ଲେଖ ନାଇ । ହଉ, ତମେ ଗୋଟାଏ କାମ କର । ତମେ ମର୍ତ୍ତ୍ୟକୁ ଯାଇ ମୋର ସାତଦିନ ପାଇଁ ଟୁର ପ୍ରୋଗ୍ରାମ କରିଦିଅ । ଦିନକୁ ଚାରିପାଞ୍ଚଟି ସଭାର ବ୍ୟବସ୍ଥା କରିବ । ସକାଳ ଆଠଟାରେ ଗୋଟାଏ, ଦଶଟାରେ ଗୋଟାଏ, ବାରଟାରେ ଲଞ୍ଚ ଓ ବିଶ୍ରାମ, ଦୁଇଟାରେ ଗୋଟାଏ, ସନ୍ଧ୍ୟା ଛଅଟାରେ ଗୋଟାଏ, ରାତି ଆଠଟାରେ ଗୋଟାଏ । ତାପରେ ରାତି ଭୋଜନ ଓ ବିଶ୍ରାମ । ଆମେ ଲୋକମାନଙ୍କୁ ଭେଟି ସେମାନଙ୍କ

ସମସ୍ୟା ବୁଝିବା । ହଁ, ଆଉ ଗୋଟାଏ କାମ କରିବ । ସାକ୍ଷାତକାର ପାଇଁ ସ୍ୱତନ୍ତ୍ର ଆୟୋଜନ କରିବ । ଆମର ଦେବରକ୍ଷୀ ଓ ନାଗ୍ରସୁଣୀ ସେନାଙ୍କୁ ଖବର ଦିଅ, ସେମାନେ କଡ଼ା ପହରା ଦେବେ । ଜଣ ଜଣଙ୍କୁ ପରୀକ୍ଷା କରି ସାକ୍ଷାତ କରିବାକୁ ପଠାଇବେ । ଯଦି କେହି ଠେଲା ପେଲା କରନ୍ତି, କଳା ପତାକା ଦେଖାନ୍ତି, ସେମାନଙ୍କୁ ଘାବାଡ଼ କରିଦେବାକୁ କହିଦିଅ । ଯେଉଁମାନେ ଖତରନାକ ସେମାନଙ୍କୁ ହାଜତରେ ପୂରିଦେବାକୁ ନିର୍ଦ୍ଦେଶ ଦେଇଦିଅ । ଆମର ଖାଦ୍ୟପେୟର ବ୍ୟବସ୍ଥା କରିବାକୁ ଆଗରୁ ଖବର ଦେଇଦିଅ । ଜଣ ଜଣ ମେନୁ ହେବ, ସେକଥା ମଧ୍ୟ ଜଣେଇ ଦିଅ ।

ନାରଦ କହିଲେ—ଅଜ୍ଞା, ଏଇଟା ବଢ଼ିଆ କାମ ହେବ । ଆପଣ ଲୋକଙ୍କ ପାଖକୁ ଯିବେ, ଲୋକଙ୍କ ସହିତ ମିଶିବେ, ସେମାନଙ୍କ ଦୁଃଖ ଶୁଣିବେ । ତେଣିକି ସେମାନେ ଯିବେ କୁଆଡ଼େ ? ଆପଣଙ୍କ ନାଁରେ ସ୍ଲୋଗାନ ଗୁଞ୍ଜିବ, ଖଞ୍ଜଣି ବାଜିବ, ଜୟ ଜୟକାର ପଡ଼ିବ । ଆପଣ ଯେତେବେଳେ ବାକ୍ସ ବସେଇବେ ଆଉ ଖାଲି ପଡ଼ିବ ନାଇଁ । ଏକବାର ଫୁଲ ହୋଇଯିବ । ଆଉ ସମସ୍ତଙ୍କର ଅମାନତ ଉଡ଼ିଯିବ । ଅଜ୍ଞା ! ମୋ କଥା ଟିକେ ମନେ ରଖିଥିବେ । ମୁଁ ତ ବାହାସାହା ହେଲିନି ବୋଲି ବାପା ମୋ ଉପରେ ଖାଲି ଦାନ୍ତ କଡ଼ମଡ଼ କରୁଛନ୍ତି । ଆପଣଙ୍କୁ ତ ଥରେ ମୋ ମନ କଥା କହିଲି ଯେ ଆପଣ ମୋତେ ମାଙ୍କଡ଼ ମୁହଁ ଦେଇ ଯାହା ଅପମାନ ଦେଲେ ନା, ଆଉ ବାହାହେବାକୁ ମନ ନାଇଁ । ଛାଡ଼ନ୍ତୁ ସେ କଥା । ଆପଣ ଏଥର ସିଂହାସନ ପାଇଗଲେ ମୋତେ ଆପଣଙ୍କର ପି. ଏ. କରିଦେବେ । ମୁଁ ସବୁ ଠିକ୍ କରିଦେବି । ଆପଣ ତ କାହାକୁ କିଛି ମାଗିପାରିବେ ନାଇଁ । ମୁଁ କିନ୍ତୁ ଇମିତିଆ କାଇଦା କରିଦେବି ଯେ ବାପଧନ ଯିବେ କୁଆଡ଼େ । ଆଗେ ଭୋଟ । ତା'ପରେ ଯାଇ କଥାବାର୍ତ୍ତା ।

ହଉ ନାରଦ, ଆଜିଠାରୁ ତମେ ମୋର ପି. ଏ. ହୋଇଗଲ ବୋଲି ଜାଣ । ତମେ ଶୀଘ୍ର ମର୍ତ୍ତ୍ୟକୁ ଯାଅ । ସବୁ ସମ୍ବାଦ ରଖ । ମୋ ପ୍ରୋଗ୍ରାମ ଠିକ୍ କରି ଜୋରସୋରରେ ପ୍ରଚାର କରେଇ ଦିଅ । ଯୁବା ଟୋକାଙ୍କୁ ଯେତେ ପାରୁଚ ସେତେ ଆମ ଆଡ଼କୁ ଟାଣି ଆଣ । ହଁ, ତମେ ଆଉ ଗୋଟାଏ କାମ କରିବ । ବରୁଣ, ବାୟୁ, ଅଗ୍ନି, ଯମ, ଭୋଳାନାଥ, ଚଣ୍ଡୀ—ସମସ୍ତଙ୍କୁ ଟିକେ ଖବର ଦେଇଦେବ । ସମସ୍ତେ ଯେଝା ଯେଝା ଦଳବଳ ନେଇ ପହଞ୍ଚିଯିବେ । ଇମିତି ଗୋଟାଏ ଠିକଣା ମାଡ଼ ଦେବା ଯେ ମର୍ତ୍ତ୍ୟବାସୀଙ୍କ ବାପାର ନାଁ ଆସିବ ନାଇଁ । ନାରଦ, ଆଉ ବେଶିଦିନ ନାହିଁରେ । ସମୟ ପାଖେଇ ଆସିଲାଣି । ଯୋଗ ନିଦ୍ରାରେ ଟିକେ ଶୋଇ ପଡ଼ିଥିଲି ।

ହଁ; ତମେ ଟିକେ ଲକ୍ଷ୍ମୀ ଆଉ ସରସ୍ୱତୀ ଦୁ'ଜଣଙ୍କୁ ବୁଝେଇ ଦେଇଯିବ । ମୁଁ ସାଙ୍ଗ ଦନ ପାଇଁ ଅନ୍ୱେଷଣ ରହିବ । ସେମାନେ କାଳାତିକ୍ରମଣ କରିବେ ନାଇ । ବୈକୁଣ୍ଠ-ପୁରକୁ ଟିକେ ସମ୍ଭାଳି ନେବେ ।

ନାରଦ ଏଥର ଗୁଡ଼ୁ ଫୁଲେଇ ଢେଙ୍କି ବାହନରେ ବସି ମର୍ତ୍ତ୍ୟ ଅଭିମୁଖେ ଯାତ୍ରା କଲେ । ତାଙ୍କ କଣ୍ଠରୁ ବାହାରୁଥାଏ—

ଜୟ ନାରାୟଣଙ୍କର ଜୟ
ଜୟ ବୈକୁଣ୍ଠ ପାର୍ଟିର ଜୟ
ଜୟ ଢେଙ୍କି ଚିହ୍ନର ଜୟ
ଜୟ କଳିମୁଣିର ଜୟ ।



# ଧରଣୀ ପୂଜା

ଏବେ ଯୁଆଡ଼େ ନାଇ ସିଆଡ଼େ ଗୋଟାଏ ହୋ ଉଠିଛି ଧରଣୀ ପୂଜା କରିବା ପାଇଁ । ଅବଶ୍ୟ ଏଇ ନୂଆ ପୂଜା ପାର୍ବଣ କଥା ଉଠୁଛି ତାକୁ ବିଶେଷ କରି ଆରମ୍ଭ କରି ଦେଇଛନ୍ତି ସହରର ଅଭିଜାତ ମଣିଷମାନେ । ସେମାନେ ତ ପୂଜା କରୁ ନାହାନ୍ତି, କେବଳ ସଭାସମିତିରେ ଗଜରା ଫୁଲମାଳ ପକେଇ ଭୂମିର ବନ୍ଦନା କାନ୍ଦୁଛନ୍ତି । ଧରଣୀକୁ ପୂଜା ନ କଲେ କୁଆଡ଼େ ଧରଣୀ ଆଉ ଫଳବତୀ ହେବ ନାଇ । ଧରଣୀ ରାଗିଗଲେ ଭୂମିକମ୍ପ ହୋଇଯିବ — ଜଗତ ସବୁ ଓଲଟପାଲଟ ହୋଇଯିବ । ବାସୁକୀ ମୁଣ୍ଡ ହଲାଇ ଦେବ । ସବୁ ସରିଯିବ ନିମିଷକେ । ଧରଣୀ କେଉଁ ମହାଶୂନ୍ୟ ଭିତରେ କୁଆଡ଼େ ମିଳେଇ ଯିବ । ତେଣୁ ଏଇ ଆଗଚଲା ଆଗକୁହା ମଣିଷମାନେ ହୁରି ହେମାଳ ପକାଇ ଦେଉଛନ୍ତି । କାରଣ ସେଇମାନଙ୍କ ଜୀବନ ମହାର୍ଘ । ସେଇମାନଙ୍କର ବେଶି କିଛି ନଷ୍ଟଭ୍ରଷ୍ଟ ହୋଇଯିବ । ରାମା ଦାମା ଶାମାଙ୍କ ଜୀବନର ଗୋଟାଏ ମୂଲ୍ୟ କ'ଣ ? ସେମାନଙ୍କର ଏବେ କଣ ଖସିଯିବ କି ? ଘରଯାକ ଗୋଟେଇ ଆଣିଲେ ତ ମୁଠାଏ ବି ପୁରିବ ନାଇ । ସେମାନେ କାହିଁକି ମାଙ୍କୁନାରେ ଧରଣୀ ପୂଜା କରିବାକୁ ଯାଇ ଦେଖେଇ ହେବେ ? ସେମାନଙ୍କ ଜୀବନ କୋଉ ମହାର୍ଘ କି ? ଅଲୋଡ଼ା ଜୀବନ ସେମାନଙ୍କର । ସେମାନଙ୍କୁ କିଏ ଲୋଡ଼େ ? କଣ କିଏ ପଚାରେ କି ? ଶାସନରେ, ଧର୍ମରେ, ସଂସ୍କୃତିରେ, ସାହିତ୍ୟରେ, ରାଜନୀତିରେ କିଏ କଣ ସେମାନଙ୍କ ପରାମର୍ଶ ନିଏ କି ? ଅଥଚ ସେଇମାନେ ଗଢ଼ିଛନ୍ତି ଏଇ ଧରଣୀ ଉପରେ ସବୁଜ ସଂସାର । ସେଇମାନେ ପାଳିଛନ୍ତି ଇନ୍ଦ୍ରଦ୍ୟୁମ୍ନ ପୁଷ୍କରଣୀର କୂର୍ମ । ସେଇମାନଙ୍କ ଲୁହ ଆଉ ଲହୁରେ ହସିଉଠିଛି ପୃଥିବୀ । ଇମିତି ଗୋଟାଏ କଣ ଅଛି ଯେ ଯେଉଁଥିରେ ସେମାନଙ୍କ ହାତ ବାଜି ନାଇ ? ସେମାନେ ଗଢ଼ନ୍ତି ମଥୁରା କଟକ । ଅଥଚ ସେ କଟକର ଛଟକରୁ ରହି ଯାଆନ୍ତି ଦୂରରେ ସେମାନେ । ମଥୁରା ସେମାନଙ୍କୁ ଗିଳି ପକାଇବାକୁ ଆଁ କରିଥାଏ । ବ୍ରଜପୁରର ଗାଈଗୋଠ ସେମାନଙ୍କର ଭଲ । କଣ୍ଟାବୁଦା, ଝାଟି ଜଙ୍ଗଲ ସେମାନଙ୍କର ଭଲ । ନଈନାଳ ପାଣିକାଦୁଅ ଖରାବର୍ଷା ସବୁ ସେମାନଙ୍କର ଆପଣାର । ସେମାନେ ହଳ କରନ୍ତି, ଗାଈ ଦୁହାଁନ୍ତି, ରାସ୍ତା ତିଆରି କରନ୍ତି, କୋଠା ଗଢ଼ନ୍ତି, କାରଖାନା ଚଳାନ୍ତି, ମାଟି ହାଣନ୍ତି, ଦେଉଳ ତିଆରି କରନ୍ତି । ସବୁ କରନ୍ତି । ହେଲେ ବଡ଼ ଦେଉଳରେ ସେମାନଙ୍କର ନାଁ ନଥାଏ । ପୋଲ ତିଆରି

କରନ୍ତୁ । ଅଥଚ ସେଠି ମାର୍ବଲ ଫଳକ ଝୁଲେ ନେତାଙ୍କ ନାମରେ, ରଜା ମହାରାଜାଙ୍କ ନାମରେ । ସେମାନେ ତେଣୁ ଧରଣୀ ପୂଜାରୁ କଅଣ ପାଇବେ ?

ଏଇ ମାଟିର ସନ୍ତାନମାନେ ଜାଣନ୍ତି ଯେ ଧରଣୀ ସେମାନଙ୍କର ମାଆ । ଅବଶ୍ୟ ଏକଥା ସେମାନଙ୍କୁ କେହି ଶିଖେଇ ଦେଇ ନାହିଁ । ଆପେ ଆପେ ସେମାନେ ଜାଣିଯାଇଛନ୍ତି ଏଇ କଥା । ସେମାନେ ଶାସ୍ତ୍ର ପଢ଼ି ନାହାନ୍ତି କି ପୋଥି ଦେଖି ନାହାନ୍ତି । ତଥାପି ସେମାନେ ଧରଣୀକୁ ମାଆ ରୂପେ ମାନନ୍ତି । ସେଇ ମାଆ କୋଳରେ ସେମାନେ ଶୋଇ ପଡ଼ନ୍ତି ଆଖିବୁଜି ଆନନ୍ଦରେ । ମାଆର ବାଲିଆ, ମାଟିଆ, କାଦୁଆ ଦେହରେ ସେମାନେ ଆନନ୍ଦ ପାଆନ୍ତି । ମାଆ ଦେହର କାଦୁଅ ସେମାନଙ୍କର ସୁବାସିତ ଚନ୍ଦନ । ସେମାନେ ଜମା ଜାଣନ୍ତି ଦୁଇଟି କଥା—ତଳେ ମାଆ ବସୁନ୍ଧରା, ଉପରେ ଧର୍ମ ଦେବତା । ବାସ୍, ଏଇ ବିଶ୍ୱାସ ଭିତରେ ସେମାନଙ୍କର ଜୀବନଯାତ୍ରା । ସିଏ ଜମା ତାର ଆଦରର ମାଆକୁ ବିଭତ୍ସ କରେ ନାହିଁ । ମାଆ ଉପରେ ଧର୍ଷଣ କରେ ନାହିଁ । ଇଚ୍ଛାପସ୍ ପର ଆଦୌ ଭୁଲ କରେ ନାହିଁ । ସିଏ ଯେତେବେଳେ ଲଙ୍ଗଳ ନେଇ ମାଆ କୋଳକୁ ଚଷିବାକୁ ଯାଏ ସେତେବେଳେ ସେ ଆଗ ମାଆକୁ ପୂଜା କରେ, ମୁଣ୍ଡ ନୁଆଁଇ ଦଣ୍ଡବତ ହୁଏ । ଅଥର୍ବ ବେଦରେ ତାକୁ ତେଣୁ କୁହାଯାଇଛି ସିଏ ଜଣେ ଋଷି । କୃଷକହିଁ ଋଷି । କୃଷିହିଁ ସ୍ୱା ଏକ ରମଣୀୟ କବିତା । ଭୂମିରୁ ଶସ୍ୟ ଉତ୍ପାଦନ କରିବା ହିଁ ସଫଳ କାବ୍ୟ । ତେଣୁ ସେ ଭୂଇଁକୁ ପୂଜା କରେ । ଭୂଇଁ ଉପରେ ଯଜ୍ଞ କରେ । ଏଇ ଯଜ୍ଞରୁ ଘିଅ ଧୂଆଁ ଆକାଶକୁ ଯାଏ । ସିଏ ପୁଣି ମେଘ ହୋଇ ମାଟିରେ ପଡ଼େ । ମାଟିର ଦେହ ଉଲୁସି ଉଠେ । ଶସ୍ୟରେ ଭରିଯାଏ ଧରଣୀ । ଆମ ଓଡ଼ିଶାରେ ରଜ ଉତ୍ସବ ପାଳିତ ହୁଏ ଆଡ଼ମ୍ବର ସହକାରେ । ସବୁସ୍ତରର ମଣିଷ ଏଇ ଉତ୍ସବରେ ଧାଇଁ ଧାଇଁ ନାଚନ୍ତି । ଏଇଟି ଗାଁର ଉତ୍ସବ । ମାଟି-ମଣିଷର ଉତ୍ସବ । କୃଷକର ଉତ୍ସବ । ଏଇଦିନ ଧରଣୀ ପୂଜା ହୁଏ । ରଜ ତିନିଦିନ ଯାକ ମାଟିକୁ କେହି ଖୋଳନ୍ତି ନାହିଁ । ବୃକ୍ଷବାସ ସବୁ ବନ୍ଦ । ଏପରିକି ଭୂଇଁ ଉପରେ ଖାଲି ଗୋଡ଼ରେ ଚାଲନ୍ତି ନାହିଁ । ଗଛରୁ ଡାଳ ପତ୍ରଟିଏ ଭାଙ୍ଗନ୍ତି ନାହିଁ କି ଛିଣ୍ଡାନ୍ତି ନାହିଁ । ଇଏ କଣ ଧରଣୀ ପ୍ରତି କମ୍ ସମ୍ମାନର କଥା ! ରଜ ଶେଷଦିନ ଭୂମି ପୂଜା କରାଯାଏ । ଏହାକୁ କୁହାଯାଏ ଭୁଇଁ ଦଅଁଣ ବା ଭୂମି-ଦଳନ । ଯଥାବିଧି ପୂଜା କରି ଧରଣୀ ଦେହରେ ବୃକ୍ଷ କରାଯାଏ ।

ଏବେ ଏସବୁ ଅଳ୍ପେ ଅଳ୍ପେ ମିଳେଇ ଯିବାକୁ ବସିଲାଣି । ପାଠୁଆ ଲୋକେ କହୁଛନ୍ତି, ମାଟି ତ ମାଟି, ସିଏ ପୁଣି ଗୋଟାଏ ମାଆ କଣ ? କେବଳ ଅନ୍ଧବିଶ୍ୱାସ । ମାଟିର ଗୋଟାଏ ପୂଜା ! ଏକଥା କିନ୍ତୁ ସାଧାରଣ ମଣିଷ କହେନାହିଁ । ସିଏ

କାରଣ ମାଟି ତାର ମାଆ । ଯେଉଁ ଦେଉଁଠି ଥାଉ ନା କାହିଁକି ମାଟି କେବେ ମନା କରେନାହିଁ । ମାଟି ତା' କୋଳକୁ ଆଉଜେଇ ନିଏ । ତାର ଉଷୁମୁଳିଆ ଗନ୍ଧରେ ତାକୁ ବଶୀଭୂତ କରିଦିଏ । ତା' କୋମଳ ଗୁଳ୍ମ ଉପରେ ଶୁଆଇ ପକାଇ ନାନାବାସ୍ନା ଗୀତ ଗାଏ । ଅଥର୍ବ ବେଦରେ ଯେଉଁମାନେ ଋଷି କହୁଥିଲେ ଯେ ସତ୍ୟ, ଋତ, ଦୀକ୍ଷା, ତପ, ବ୍ରହ୍ମ ଓ ଯଜ୍ଞ—ଏଇ ଛଅଟି ଗୁଣ ଧାରଣ କରିଛି ପୃଥିବୀକୁ । ସତ୍ୟ ହେଉଛି ପ୍ରଜାଙ୍କ ବଳ ଓ ରାଷ୍ଟ୍ରର ପ୍ରଧାନ ସମ୍ପତ୍ତି । ଋତ ହେଉଛି ନ୍ୟାୟଯୁକ୍ତ କଠୋର ନିୟମ ପାଳନ । ଦୀକ୍ଷା ହେଉଛି ଦୃଢ଼ସଙ୍କଳ୍ପ । କଷ୍ଟ ସହିବା ଗୁଣ ହେଉଛି ତପ ବା ତପସ୍ୟା । ଆତ୍ମିକ ଓ ସାମାଜିକ ଜୀବନରେ ନିପୁଣ ହୋଇ ଜାଗ୍ରତ ହେବା ହିଁ ବ୍ରହ୍ମ । ନିଃସ୍ୱାର୍ଥ କର୍ମ ବା ତ୍ୟାଗମୟ କର୍ମ ହେଉଛି ଯଜ୍ଞ । ଏହି ଛଅଟି ଗୁଣ ନହେଲେ ଜଣେ ଧରଣୀକୁ ପୂଜା କରିବ କେମିତି ? ସେ କଣ ଧରଣୀକୁ ମାଆ ଜ୍ଞାନ କରିପାରିବ ? ଏହି ପୂଜାଟା 'ମାର ତାଳି, ଉଠା ଥାଳି' ପରି ହୋଇଯିବ । ଆମକୁ ମନେ ରଖିବାକୁ ହେବ—ମାଆ ହେଉଛି ଭୂମି ଏବଂ ଆମେସବୁ ପୃଥିବୀର ପୁତ୍ର । ଅଥର୍ବ ବେଦରେ ତେଣୁ କୁହାଯାଇଛି—'ମାତା ଭୂମିଃ ପୁତ୍ରୋଅହଂ ପୃଥିବ୍ୟାଃ ।' ଋଗ୍‌ବେଦରେ ମଧ୍ୟ କୁହାଯାଇଛି 'ପୃଥିବୀ ମାତାଃ'—ପୃଥିବୀ ହିଁ ମାଆ । ବୈଦିକ ଋଷି କହନ୍ତି—'ସା ନୋ ଭୂମିର୍ବିସୃଜତାଂ ମାତା ପୁତ୍ରାୟ ମେ ପୟଃ' । ସେ ହିଁ ମୋର ମାତୃଭୂମି । ସେ ମୋର ମାଆ । ମୁଁ ତାର ପୁତ୍ର । ସେ ମୋତେ ଦୁଗ୍ଧ ପ୍ରଦାନ କରନ୍ତୁ । ତେଣୁ ବୈଦିକ ଋଷି ମାତୃଭୂମିକୁ ପ୍ରଣାମ କରେ--'ପୃଥିବ୍ୟା ଅକରଂ ନମଃ' । ମାତୃଭୂମିକୁ ସେତିକି ପ୍ରାର୍ଥନା କରାଯାଉଥିଲା ମଣିଷମାନଙ୍କୁ ଦୀର୍ଘଜୀବୀ କରିବାପାଇଁ, ବିଶାଳ କର୍ମକ୍ଷେତ୍ର ପ୍ରଦାନ କରିବାପାଇଁ, ଶତ୍ରୁ ଉଚ୍ଛେଦ କରିବାପାଇଁ । ମଧୁର ଶସ୍ୟ ଉତ୍ପନ୍ନ ପାଇଁ ମଧ୍ୟ ପୃଥିବୀକୁ ପ୍ରାର୍ଥନା କରାଯାଉଥିଲା । ବୈଦିକ ଋଷି ପାଖରେ ପୃଥିବୀ ହେଉଛି ମାଆ ଓ ବର୍ଷା ହେଉଛି ପିତା । ମାତୃଭୂମି ବହୁ ଭାଷାଭାଷୀ ଓ ଧର୍ମାବଲମ୍ବୀମାନଙ୍କୁ ଗୋଟିଏ ପରିବାର ରୂପରେ କୋଳରେ ଧାରଣ କରିଅଛି । ତେଣୁ ମାତୃଭୂମି ହୃଦୟରେ କୌଣସି ପ୍ରକାର ବେଦନା ଦେବାକୁ ସେଦିନର ଋଷି କୁଣ୍ଠା ପ୍ରକାଶ କରୁଥିଲେ । ଏବେ କିନ୍ତୁ ସମସ୍ତ ବଦଳି-ଯାଇଛି । ଅତୀତର ଋଷି ପରମ୍ପରା ନାହିଁ । ଅତୀତର ଭୂମି ପୂଜା ମଧ୍ୟ ନାହିଁ ।

ଏବେ ଧରଣୀ ପୂଜା କରିବାକୁ କାହିଁକି ଆମେ ବାହାରି ଅଛୁ ? ବା କଣ ଏହି ପୂଜାର ଅର୍ଥ ? ଏହି ପୂଜା ଦ୍ୱାରା କଣ ଧରଣୀ ଧନ୍ୟା ହୋଇଯିବ ? ହଁ; ଆମେ ଗୋଟାଏ ଚେତନା ସୃଷ୍ଟି କରିବାକୁ ଯାଉଛୁ । ଆମକୁ କିଛି ବିଜ୍ଞାନୀ ସତର୍କ-ବାଣୀ ଶୁଣାଇବାରେ ଲାଗିଛନ୍ତି—'ଧରଣୀକୁ ସମ୍ମାନ ।' ନ ହେଲେ ସମସ୍ତେ ମୂଳରୁ ଯିବ । ଧରଣୀ ରହିବ ନାହିଁ କି କେହି ମଧ୍ୟ ରହିବେ ନାହିଁ । ପରିବେଶ ବିଜ୍ଞାନୀଙ୍କ

କଥା ଶୁଣି ଶୁଣି ମୁଣ୍ଡ ଘୂରିଯାଉଛି । ସତେ କଣ ଏଇ ବସୁଧା ପୃଥିବୀ ଧ୍ୱଂସ ହୋଇଯିବ ? ହାୟ ହାୟ, ଆମେସବୁ ଯିବା କୁଆଡ଼େ ?

ଯେତକ ଏସବୁ ଫାଲ୍‌ତୁ କଥା । ଘୋଡ଼ାମାଡ଼ ଗୋଟାଏ କୋକୁଆ ଭୟ । କୂଟ-କପଟିଆ କୃଷ୍ଣ ରୂପରେ ଏହି ବଇଜ୍ଞାନିକମାନେ ଆମକୁ ଶୁଣାଉଛନ୍ତି—କୋକୁଆ ଆଇଲା, କୋକୁଆ ଆଇଲା—ହେଇ ଗିଳି ପକେଇଲା—ହେଇ ନେଇଗଲା । ଆରେ ବାବା ତମେଇ ସବୁ ନାଟର ଗେରଫ୍‌ତାର । 'ହିଗୁଣ ରକ୍ଷ୍ୟ କରେ ଧର/ମୃଗୀ ଜନ୍ତୁ ଏ ନବନ୍ଧର'—ପରି ତମେସବୁ କରୁଛ । ଏଣେ ତମେ ଜ୍ଞାନର ଗାରମା ଦେଖେଇ ଆଣବିକ ବୋମା ଉପରେ ବୋମା ତିଆରି କରୁଛ । ମାଆ ଧରଣୀ କୋଳରେ ତମେ ତାକୁ ପରୀକ୍ଷା କରି ମାଆର ଗ୍ଭଣ୍ଡିକୁ ଫଟେଇଉଛ । ମାଆ ଉପରେ ବଳ ଗ୍ରୁଡ଼ ଧର୍ଷଣ କରୁଛ । ମାଆର ଗ୍ଭଣ୍ଡିକୁ ଦୂଲୁବେଇ ଦେଉଛ । ମା'ର ଦେହକୁ କାଟି, ଖୋଳି, ତାଡ଼ି ନାରଖାର କରୁଛ । ମାଆର ଗ୍ଭଣ୍ଡିରୁ ସବୁ ରସ ନିଗାଡ଼ି ପକାଉଛ । ମାଆର ଦେହସାରା ବିଷ ଚହଟାଇ ଦେଉଛ । ବାହାପିଆ ଗ୍ରଜନୀତିବାଲାଙ୍କ ହାତରେ ତମେ ସଖୀକଣ୍ଢେଇ ସାଜିଛ । ତମର କୋଉ ହିମ୍ମତ ଅଛି ଯେ ସେମାନଙ୍କ କଥାକୁ ଖଣ୍ଡିଦେବ ? ତମେ ତ ଦରମାଖିଆ ଭୃତ୍ୟ । ତମର ସ୍ୱାଧୀନତା କାହିଁ ଯେ ! ତମେ ହ'ଇଯାକ ମିଳିଯାଇ ଦୁନିଆଁଟାକୁ ହାରକାନ୍ଦ ଦେଖାଉଛ । ତମ ସାଙ୍ଗକୁ ମିଳିଯାଇଛନ୍ତି ପାଳଧରିବାକୁ ଶିଳ୍ପ କାରଖାନାର ମାଲିକମାନେ, ଟଙ୍କା ଥଳି ଧରି ହଲଉଛନ୍ତି ତମ ଆଗରେ । ତମେସବୁ ମାଉଛ ଗୋଟାଏ ହୋରେ । ତମକୁ କଏ ଭଜିବ ? ତମେ ତ ସମସ୍ତଙ୍କ ଆଖିକୁ ଝଲମଲ କରିଦେଉଛ । ତିନିଜଣଯାକ ମିଳି-ଯାଇଛ ହାତ ଧରାଧରି ହୋଇ । ଆଉ ଯେଉଁ ଉଙ୍ଗ ଗୋଳମାଳ—ହେଃ, ସେମାନଙ୍କର କଣ କଳକି ଅଛି ? ବର୍ଷା ଯୁଆଡ଼େ ଛତା ସେଇଆଡ଼େ । ଆଉ ପୁଣି ଧରଣୀ ପୂଜା ଗୋଟାଏ କଅଣ ? କଏ କରିବ ? କାହାକୁ କହୁଛ ? ମଳମୁଣ୍ଡିଆ ମାଟିର ମଣିଷମାନେ ତ କାଳେ କାଳେ ଧରଣୀକୁ ମାଆ ରୂପେ ପୂଜା କରିଆସିଛନ୍ତି । ତମେ ଏବେ ଅଳପୂଟୁଳି ଖୋଲ୍ ମାଆର ପୂଜା କର । ମାଆର ଲୁହକୁ ଦେଖ । ତମର ଅବା ବେଳ କାହିଁ ଯେ ! ଧରଣୀ ଯଦି ଧ୍ୱଂସ ହୋଇଯାଏ ତମର କଅଣ ହୋଇଯାଉଛି କି ? ତମର ଯେ ଖେଳ ଆମର ସେ କାଳ । ତମେ ଏବେ ମଙ୍ଗଳ ଗ୍ରହ ଚନ୍ଦ୍ର ଗ୍ରହ କି ଆଉ କେଉଁ ଗ୍ରହରେ ଜାଗା ଖଣ୍ଡେ ଖଣ୍ଡେ ମାଡ଼ିବସିବଣି । ଏଠି କଅଣ କିଛି ଅଘଟଣ ଘଟିଗଲେ ତମେସବୁ ମାରିବ ଡିଆଁ ସିଆଡ଼କୁ । ମଲାବାଲା ଏଇ ଗ୍ରମା ଦାମା ଶାମା କପିଳାମାନେ ।

ଏଇଥିପାଇଁ କହୁଛି ଧରଣୀପୂଜା ଗୋଟାଏ ଭେଳିକି । ଏଥିରେ କୋଉ ଆନ୍ତରିକତା ଅଛି ଯେ ! ଯଦି ଆନ୍ତରିକତା ଅଛି ପ୍ରଥମେ ଏଇ ସିଆଣିଆ ଲୋକ-

ମାନଙ୍କୁ ବୁଝେଇଦିଅ । ସେଇମାନେ ବୁଝିଗଲେ ସବୁ ଠିକ୍ ହୋଇଯିବ । ସେମାନେ ତ ବୁଝିକି ଅବୁଝା । ଏଇ ଅବୁଝାପଣିଆ ଯୋଗୁଁ ଯାବତ କଳହ ଜିଦ ବଢ଼ିଯାଉଛି । ଏହି ଜିଦ ଯୋଗୁଁ ଯାବତ ଗଣ୍ଡଗୋଳ ସୃଷ୍ଟି ହେଉଛି । ଧରଣୀକୁ ପୂଜା କରିଦେଲେ ଯେ ସବୁ ହୋଇଗଲା; ଏକଥା ଆଦୌ ନୁହେଁ । ଧରଣୀକୁ ଭଲପାଇବାକୁ ହେବ । ଧରଣୀ ଆମର ମାଆ । ଆମେ ଧରଣୀର ସନ୍ତାନ । ମାଆକୁ ବଳାତ୍କାର କରିଦେଲେ ସେ କଣ ଆମକୁ ଆଶୀର୍ବାଦ ଦେବ କି ? ଖାଲି ତତଲା ନିଃଶ୍ୱାସ ଛାଡ଼ିବ । ବିଜ୍ଞାନ ଆଉ ଶିଳ୍ପୀକରଣ ନାମରେ ଯାବତୀୟ ଅତ୍ୟାଚାର କରାଯାଉଛି ଧରଣୀ ଉପରେ । ତାହାର ସବୁଜ ଦେହକୁ ଶ୍ମଶାନ କରିଦେଇ ତା' ଉପରେ ବଡ଼ ବଡ଼ ଅଟ୍ଟାଳିକା ଆଉ କାରଖାନା ଠିଆ ହେଉଛି । ଆମେସବୁ ପାଲଟି ଯାଉଛୁ ଭସ୍ମାସୁର । ଯିଏ ବର ଦେଇଛି ତାରି ଉପରେ ଆଗେ ହାତ ଦେଇ ପରୀକ୍ଷା କରିବାକୁ ଧାଉଁଛୁ । ଆମେ ଧରଣୀକୁ ଧ୍ୱଂସ କରିବାକୁ ଆଗେଇ ଯାଉଛୁ । ମାଶୁନାଠାରେ କହୁଛୁ 'ଧରଣୀ ପୂଜା କର' । ଏଥିପାଇଁ ପୁଣି ଆମେ ଖର୍ଚ୍ଚ କରୁଛୁ ଅଜସ୍ର ମୁଦ୍ରା ।

ଧରଣୀ ପୂଜା ହେଉ—ମନା ନାଇ । ଏଥିରେ ପ୍ରକାଶ ପାଉ ଆନ୍ତରିକତା । ଧରଣୀକୁ ରକ୍ଷା କରାଯାଉ । ତାକୁ ସବୁଜ ସୁଷମାରେ ପୁଣି ଥରେ ସଜେଇ ଦିଆଯାଉ । ଧରଣୀ ଠିକ୍ ରହିଲେ ଆମେ ଠିକ୍ ରହିବା, ଆମର ସ୍ୱାସ୍ଥ୍ୟ ଠିକ୍ ରହିବ । ଧରଣୀର ଶ୍ରେଷ୍ଠ ଜୀବ ମଣିଷ କଅଣ ଏ ଦିଗରେ କିଛି ଦୃଷ୍ଟିପାତ କରିବ ନାହିଁ ? ଏତିକି ଆଜିର ବକ୍ତବ୍ୟ ।



# ପରିବେଶ ସମ୍ପର୍କରେ

ଏବେ ଏଇ କେତେଦିନ ହେଲା ହଠାତ୍ କମ୍ବୁକଣ୍ଠୀ ନାଦଟା ଗୁଞ୍ଜି ଯାଉଛି—କେବଳ ଓଡ଼ିଶାରେ ନୁହେଁ, ଭାରତରେ ନୁହେଁ, ସାରା ବିଶ୍ୱରେ । ସବୁଆଡ଼େ ଗୋଟାଏ ଆର୍ତ୍ତନାଦ ଶୁଭୁଛି—ପରିବେଶ ଦୂଷିତ ହୋଇଗଲା— ପ୍ରକୃତିରାଣୀ କ୍ଷୁଣ୍ଣ ହୋଇଗଲା—ଜଳବାୟୁ ଉତ୍କ୍ଷିପ୍ତ ହୋଇଗଲା—ଏହାକୁ ସମ୍ଭାଳ, ଏହାକୁ ରକ୍ଷାକର; ନହେଲେ ମାନବଜାତି ଧ୍ୱଂସ ପାଇଯିବ । ଏଇ ଆର୍ତ୍ତନାଦଟା ଏବେ ସମସ୍ତଙ୍କୁ ଯେମିତି ଚହଲେଇ ଦେଇଛି । କଣ ଯେମିତି ହୋଇଯିବ ଏଇ ପୃଥିବୀର—ଆମ ଧରଣୀ ମାତାର । ଭଲ କଥା ଖୁବ ଭଲକଥା । ଏତେ ଦିନକେ ଚିଆଁ ଲାଗିଚି, ନିଦ ଭାଙ୍ଗିଚି । ତେବେ କଥାଟା ହେଉଚି ଏଇ ଚିଆଁ କଣ ଦେହକୁ କାଟିଲାଣି କି ? କେହି କେହି ହାମବଡ଼ା ଆଗଚଲା ହୁଏତ କହୁଥିବେ ଏଇଟା ଗୋଟାଏ କୋକୁଆ ଭୟ । ଏସବୁ ଜହ୍ନାଠି ରାଜ୍ୟ ଗୁଲ୍ ଗପ । କୋକୁଆକୁ ମାରିବାକୁ ଯାଇ ଯଦୁବଂଶୀଆଙ୍କ ପରି ସମସ୍ତେ ମରିବେ । କୋକୁଆ କେବେ ନ ଥିଲା କି ନ ଥିବ । ତଥାପି ଇଏ ବି ନାକର କଥା ନୁହେଁ । ଚତୁର ଲୋକେ ଇମିତି ଗୋଟିଏ ଗୋଟିଏ କଥା କହି ଦିଅନ୍ତି ଯେ ଅନ୍ୟମାନେ ସେଇଥିରେ ଭୁଆଁ ବୁଲୁଥାଆନ୍ତି । ଆଗଚଲା ଆଉ ବୁଦ୍ଧିଆମାନେ ଏଇମିତି ଯୁଗେ ଯୁଗେ କହି ଆସିଛନ୍ତି । ସେମାନେ ଟିକିଏ ଉପର ଥାକର ମଣିଷ କିନା, ସେଇଥିପାଇଁ କହନ୍ତି । ଆଉ ସେଇମାନଙ୍କ କଥାକୁ ସାନ ସାନ ମଣିଷମାନେ ଅମୃତ ପିଇଲା ପରି ପିଇଯାଆନ୍ତି ।

ପରିବେଶଟା ଇମିତି କଣ ଦୂଷିତ ହୋଇଗଲା ଯେ ଚାରିଆଡ଼େ ହୁରି ହେମାଳ ପଡ଼ିଯାଇଚି । ଏହାକୁ କିଏ ଦୂଷିତ କରୁଚି ? କିଏ ପୁଣି କହୁଚି ଦୂଷିତ ହୋଇଗଲା ? କାହାକୁ ଏକଥା କୁହାଯାଉଛି ? ଏଇ ସବୁ କଥାଗୁଡ଼ାକୁ ତଳେଇ କରି ବିଚାର କଲେ ସବୁ ରହସ୍ୟ ପଦାରେ ପଡ଼ିଯିବ । ଏହା ସତ୍ୟ ଯେ ପରିବେଶ ଭଲ ରହିଲେ ଜଳବାୟୁ ଭଲ ରହିବ, ମଣିଷମାନେ ଭଲ ରହିବେ, ରୋଗ ବଳିଷ୍ଠ ହେବ ନାଇ, ଭଲ ଭଲ ଚିନ୍ତା କରିବାକୁ ମନ ହେବ । ଏଇ ଯେମିତି ଆମ ଭାରତବର୍ଷରେ ସୁଦୂର ଅତୀତରେ ଆରଣ୍ୟକ ସଭ୍ୟତା ଥିଲା । ଅରଣ୍ୟକୁ ଉପାସନା କରାଯାଉଥିଲା । ଅରଣ୍ୟ ଭିତରେ ମୁନିଋଷିମାନେ ବାସ କରୁଥିଲେ, ଯଜ୍ଞ କରୁଥିଲେ, ତପସ୍ୟା କରୁଥିଲେ, ନୂଆ ନୂଆ ଜ୍ଞାନ ଲାଭ କରୁଥିଲେ, କେତେ କେତେ

ଗ୍ରନ୍ଥସବୁ ଲେଖୁଥିଲେ । ଅରଣ୍ୟ ଥିଲା ତପୋବନ । ଏଇ ଅରଣ୍ୟ ସଂସ୍କୃତି ସହିତ ଜନପଦ-ସଂସ୍କୃତିର ଗୋଟାଏ ନିବିଡ଼ ସମ୍ପର୍କ ଗଢ଼ି ଉଠିଥିଲା । ରାଜା, ଋଷି ଓ ସାଧାରଣ ମଣିଷ ସମସ୍ତେ ଏକ ଭାବବନ୍ଧକୁ ବୁଝିଯାଇଥିଲେ । ଗୋଟାଏ ଉଚ୍ଚ ଆଧ୍ୟାତ୍ମିକ ପରମ୍ପରା ସୃଷ୍ଟି ହୋଇଥିଲା । ଏଇ ପରମ୍ପରାରେ ଗଛକୁ ଦେବତା ମନେକରି ପୂଜା କରାଯାଉଥିଲା । ଗଛ ଦେବତା ହେଲା କି ନାହିଁ, ବର ଦେଲା କି ନାଇ, ସେଇଟା ବଡ଼ କଥା ନଥିଲା; ବଡ଼ କଥା ଥିଲା ଗଛର ଉପାସନା ମାଧ୍ୟମରେ ଗଛଗୁଡ଼ିକୁ ସଂରକ୍ଷଣ କରିବା । ଗଛଟିଏ ଲଗାଇବା ତେଣୁ ହୋଇଯାଉଥିଲା ପୁଣ୍ୟ କାର୍ଯ୍ୟ । ଆମ ଗାଁ ଗହଳରେ ସାଧାରଣ ସରଳ ମଣିଷ ବର ଓ ଗଛର ବାହାଘର କରନ୍ତି । ବଉଳ ଅମାବାସ୍ୟା ଦିନ ଆମ୍ବଗଛ ମୂଳରେ ଚକା ପକାନ୍ତି, ଆମ୍ବ ଗଛକୁ ପୂଜା କରନ୍ତି । ଜାମୁ ଗଛକୁ କାଟନ୍ତି ନାଇ କି ଜାମୁ ଗଛର ଡାଳପତ୍ର ଜାଳନ୍ତି ନାଇ । ଇମିତି କେତେ କଥା । ଏଇଆକୁ ଆମେ ପଶ୍ଚିମୀ ପାଠୁଆଯାକ ଅନ୍ଧବିଶ୍ୱାସ ବୋଲି ଉପହାସ କରିଦେଉଛୁ । ଅଥଚ ଏହା ଭିତରର ତାତ୍ପର୍ଯ୍ୟକୁ ବୁଝୁନାହୁଁ ।

ଏବେ ଆଉ ସେକାଳ ନାଇ । ଏଇଟା ନୂଆ କାଳ, ନୂଆ ଯୁଗ । ସେ କାଳର ଋଷି କଣ୍ଠର ମନ୍ତ୍ର ନାଇ କି ସଂହିତା ନାଇ । 'ସର୍ବେ ଭବନ୍ତୁ ସୁଖୀନଃ ସର୍ବେ ସନ୍ତୁ ନିରାମୟାଃ' ସ୍ୱସ୍ତିବଚନ ନାଇ । ଏ କାଳରେ ଅଛି ଯନ୍ତ୍ର ଦାନବର ଘର୍ଘର ନାଦ । ମନ୍ତ୍ର ଯାଇଛି, ଯନ୍ତ୍ର ଆସିଛି । ଯନ୍ତ୍ର ହୋଇ ଯାଉଛି ଆମର ଦେବତା । ସବୁଠି ଆମେ ନାଲି ଅକ୍ଷରରେ ଲେଖି ଦେଉଚୁ 'ଓଁ ଶୁଭ ଲାଭ' । ଏଇ ଲାଭ ବଢ଼େଇ ଦେଉଛି ଆମ ଲୋଭକୁ । ସେଇ ଲୋଭଟା ଖାଲି ଉଡ଼ୁଚି । ଆକାଶ ସମୁଦ୍ର, ଗିରି ବନ ଜନପଦ ସବୁ ଲଙ୍ଘନ କରି ଉଡ଼ୁଛି । ଇଏ ପୁଣି ଆମକୁ କରି ଦେଉଛି ଏକା ଏକା । ସେଥିରେ ଆଉ କିଏ ଅଂଶୀଦାର ହେଉ; ଏକଥା ସିଏ ଜମା ଚାହେଁ ନାଇ । ଏକୁଟିଆ ସେମିତି ଏଇ ବିପୁଳ ପୃଥ୍ୱୀକୁ ସିଏ ଭୋଗ କରିବ । ଏଇ ଯେଉଁ ବ୍ୟବସ୍ଥା ସୃଷ୍ଟି ହୋଇଛି ସେଥିରେ କିଏ କଣ କାହାକୁ କହିବ ? କହିଲେ ବା କିଏ ଶୁଣିବ ? ଶୁଣିବାକୁ ବା ବେଳ କାହାର ଅଛି ? ସମସ୍ତେ ସୁନା ମିରିଗ ଧରିବାକୁ ଦଉଡ଼ୁଛନ୍ତି । କାହା ହାବୁଡ଼ରେ ପଡ଼ିଗଲେ ରାତାରାତି ବଡ଼ଲୋକ—ମାନେ କୁବେର । ସମସ୍ତେ ଯକ୍ଷ ଖୋଜିବାରେ ବ୍ୟସ୍ତ । କେତେବେଳେ ସିଏ ଆସିଯିବ ଯେ ଓଜାଡ଼ି ଦେଇଯିବ ସୁନାକଳସ । ଇମିତି ଏକ ପରିସ୍ଥିତିରେ ପରିବେଶ କଥା କିଏ କହିବା, କାହାକୁ କହିବା, ଶୁଣିବ କିଏ ?

ହଁ, କହିବାକୁ ହେବ । କହିଲେ କୁଳ କୁଟୁମ୍ବକୁ ଲାଜ, ନ କହିଲେ କୁଳ ବୁଡ଼ି ଯାଉଚି । ବୁଡ଼ାଯାଉଥାଉ । ଲୋକେ କିଏ ଶୁଣିଲେ ଭଲ, ନ ଶୁଣିଲେ ନାଇ । ଶୁଣିଲେ ଭଲ ଏଇଆ ଯେ ଅନ୍ତତଃ କେତେକ ସତର୍କ ହେବେ । ନ ଶୁଣିଲେ ଏଇଆ ହେବ ଯେ ଅନ୍ତତଃ ପ୍ରଳୟ ନିକଟତର ହୋଇଯିବ ।

ଆମ ପରିବେଶକୁ କିଏ ସବୁ ଦୂଷିତ କରି ଦେଉଛି ? କେଉଁମାନେ ଏଥିପାଇଁ ଦାୟୀ ? ପ୍ରଥମ କଥା ହେଲା ଯନ୍ତ୍ରର ପ୍ରସାର ବା ଶିଳ୍ପର ପ୍ରସାର । ବିଗତ ଶତାବ୍ଦୀର ମଧ୍ୟଭାଗରୁ ଶିଳ୍ପୀକରଣ ପ୍ରତି ଗୋଟାଏ ଅହେତୁକ ମମତା ପ୍ରକାଶପାଇ ଆସିଲା । ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କରେ ଏହାର ହେଲା ପ୍ରମତ୍ତ ଅଭିଯାନ । ଭାରତବର୍ଷର ମଧ୍ୟ ଶିଳ୍ପର ହେଲା ଉନ୍ମେଷ । ବିଂଶ ଶତାବ୍ଦୀରେ ବୈଜ୍ଞାନିକମାନେ ସବୁ ବିଦ୍ୟା ବୁଦ୍ଧିକୁ ଖଟେଇଲେ ଶିଳ୍ପର ବିକାଶ ପାଇଁ । ହୁ ହୁ କରି ସବୁ ଦେଶରେ ବଡ଼ ବଡ଼ ଶିଳ୍ପ କାରଖାନା ପ୍ରତିଷ୍ଠା ଲାଭ କରିଗଲା । କେତେ ପ୍ରକାରର ଶିଳ୍ପ । ଗୋଟାଏ ପାଗଳାମି ପ୍ରକାଶ ପାଇଲା ଏଥିପ୍ରତି । ଶିଳ୍ପକୁ ନେଇ ମଧ୍ୟ ସୃଷ୍ଟି ହୋଇପଡ଼ିଲା ଏକ ସ୍ୱତନ୍ତ୍ର ଉପଭୋଗୀ ଗୋଷ୍ଠୀ—ଯାହାଙ୍କୁ କୁହାଗଲା ପୁଞ୍ଜିବାଦୀ, ବୁର୍ଜୁଆ । ଏମାନେ ଲାଭ ଓ ଲୋଭର ବଶବର୍ତ୍ତୀ ହୋଇ ବହୁ ମାରାତ୍ମକ କାରଖାନାମାନ ପ୍ରତିଷ୍ଠା କଲେ । ଆମ ଦେଶରେ ଗାନ୍ଧିଜୀ ଏପରି ଶିଳ୍ପ ପ୍ରସାରକୁ ବିରୋଧ କଲେ । ଯନ୍ତ୍ରର ଦାସ ମଣିଷ ନ ହେଉ ବୋଲି ସେ କହିଲେ । ଯନ୍ତ୍ରର ଧୂଆଁ ସହିତ ଧୂଆଁ ନ ହେବାକୁ ସେ ଉଦ୍‌ବୋଧନ ଦେଲେ । ତାଙ୍କ କଥାକୁ କେହି ଶୁଣିଲେ ନାଇ—ନା ଭାରତରେ ନା ପୃଥିବୀରେ । ତାଙ୍କ କୁଟୀର ଶିଳ୍ପ ପୁଡ଼ାପୁଟୁଳା ବାନ୍ଧି ବିଦାୟ ନେଇଗଲା । ଯନ୍ତ୍ର-ଶିଳ୍ପ ସହସ୍ର ବାହୁ ବିସ୍ତାର କରି ସମଗ୍ର ପୃଥିବୀକୁ ଗ୍ରାସ କରିବାକୁ ଆଗେଇ ଆସିଲା । ଅଥଚ ଆମେ ଆରଚଲିଯାକ ବଡ଼ ପାଟି କରି କହିଲୁ—ଭଲ ହେଲା । ଆମେ ନୂଆ ପଦାର୍ଥ ପାଇଲୁ । କେତେ ରକମର ବିଳାସ ସାମଗ୍ରୀ ପାଇଲୁ । ଆମ ଆଖି ଝଲସି ଗଲା । ଆମେ ଧନ୍ୟ ଧନ୍ୟ କଲୁ ବିଜ୍ଞାନର, ଯନ୍ତ୍ରର, ଶିଳ୍ପର । ଆମ ହାତକୁ ଆସିଲା ପ୍ରଚୁର ପଇସା । ଶସ୍ୟ ଜମିକୁ ପୋତି ତା' ଉପରେ ପ୍ରତିଷ୍ଠା କଲୁ କଳକାରଖାନା । ସରକାର ବାହାଦୂରମାନେ ଏଥିପାଇଁ ଅନୁମତି ଦେଲେ । ଶିଳ୍ପ ବଢ଼ିଲା । ଶିଳ୍ପରୁ ଯେଉଁ ବାଷ୍ପ ବାହାରିଲା ସେସବୁ ଗଲା କୁଆଡ଼କୁ ? ବାୟୁମଣ୍ଡଳକୁ ତାହା ଦୂଷିତ କଲା ନାହିଁକି ? ମାଟିକୁ ଦୂଷିତ କଲା ନାହିଁକି ? ଶିଳ୍ପ ପାଇଁ ଆମେ ଜଙ୍ଗଲକୁ ନିର୍ମମ ଭାବରେ ଧ୍ୱଂସ କଲୁ ନାହିଁକି ? ସେହି ପରିମାଣରେ ଆମେ ଜଙ୍ଗଲ ତିଆରି କଲୁକି ? ପୁଣି ଏଣେ ବିଳାସ ବ୍ୟସନ ବଢ଼ିଯିବାରୁ ଦରକାର ହେଲା ମୂଲ୍ୟବାନ କାଠ । ଏଥିପାଇଁ ଆମେ ଜଙ୍ଗଲ କାଟିଲୁ କି ନାହିଁ ? ଯେଉଁମାନେ ଜଙ୍ଗଲ ରକ୍ଷା କରିବାକୁ ରହିଲେ ସେମାନେ ରକ୍ଷାକଲେ ନା ଲକ୍ଷପତି କୋଟିପତି ହେଲେ ? ଏହାର ହିସାବ କେହି ରଖିଛି କି ? ମାରି ମାରି ଭଣ୍ଡାରିଆକୁ ମାରି ନ୍ୟାୟରେ ଯେଉଁ ଗରିବ ଆଦିବାସୀ ମଣିଷଟିଏ ଜୀବିକା ପାଇଁ କାଠଖଣ୍ଡେ କି ବାଉଁଶ ଖଣ୍ଡେ କାଟିଆଣେ ତାକୁ ଧରାଯାଏ, ଆଇନର ଜାଲ ଭିତରକୁ ଫିଙ୍ଗି ଦିଆଯାଏ । ତେବେ ପ୍ରଶ୍ନ ହେଉଛି ଯେ ସେଇ ଲୋକଟିକୁ ଗଛ କାଟିବା ପାଇଁ ଲଗାଇଲା କିଏ ? ବିଚରା ଆଦିବାସୀଟି ବଞ୍ଚିବା ପାଇଁ ସାମାନ୍ୟ କେତୋଟି ଟଙ୍କା

ଯୋଗୁ ଗଛ କାଟି ଆଣିଲେ ନେପଥ୍ୟରେ ଥିବା ବଡ଼ଲୋକ ପାଖକୁ । ସିଏ କନ୍ତୁ ମଲା । ଏଣେ ବଡ଼ଲୋକ ଖସିଗଲା । ଏବେ ବୁଝାଯାଉଛି ଆମ ରାଜ୍ୟରେ ଶତକଡ଼ା ୧୮ ଭାଗରୁ ଜଙ୍ଗଲ କମ୍ ଅଛି । ୪୨ ଭାଗ ରହିଲେ ଯାଇଁ ପରିବେଶ ଠିକ୍ ରହିବ । ଏବେ ଏଇ ୨୪ ଭାଗ ଜଙ୍ଗଲ କେମିତି ହେବ ? ହେବ ବା ଯାହା କିଛି ଅଛି ତାହା ଅଳ୍ପ କେଇ ବର୍ଷ ମଧ୍ୟରେ ସମ୍ପୂର୍ଣ୍ଣ ସରିଯିବ ? ଆମକୁ ଅମ୍ଳଜାନ ଯୋଗାଇବାରେ ଓ ବାୟୁମଣ୍ଡଳକୁ ପରିଷ୍କାର ରଖିବାରେ ଗଛର ଭୂମିକାକୁ ବୁଝାଇବା ଦରକାର ନାଇ । ଏକଥା କିଏ ନ ବୁଝିଛି ଯେ ବୁଝାଇବାକୁ ହେବ ତାକୁ ? ଜଙ୍ଗଲରୁ ଟିକେ ଗାଁକୁ ଏବେ ଦୃଷ୍ଟି ଦିଅନ୍ତୁ ତ ! ଗାଁଗୁଡ଼ାକ ଗଛଶୂନ୍ୟ ହୋଇ କେତେ ଶ୍ରୀହୀନ ହୋଇ ନ ଯାଉଛି ? ଏବେ ଦେଖିବେ ଗାଁ ଗାଁରେ ଅଷ୍ଟପ୍ରହରୀ, ମେଳା ମହୋତ୍ସବ ଧୁମ୍‌ଧାମ୍‌ରେ ଚାଲିଛି । ଏହି ଉପଲକ୍ଷେ ରାସ୍ତାକଡ଼ରେ ଅଥବା ଅନାବାଦୀ ଗୋଚର ଜାଗାରେ ଥିବା ଗଛଗୁଡ଼ିକୁ ନିର୍ମମ ଭାବରେ କାଟି ନେଇ ଜାଳେଣି କରାଯାଉଛି । ଆଉ କେହି ଗଛ ଲଗାଉଛି କି ? ଗାଁ ପାଖରେ ଯେଉଁସବୁ ଛୋଟ ଛୋଟ ଝାଟି ଜଙ୍ଗଲ ଥିଲା ସେସବୁ ଆଉ ଅଛି କି ? ମନେହେଉଛି ଜଙ୍ଗଲ ଆଉ ଗଛର ଯେମିତି କେହି ମାଆ ବାପା ନାହାନ୍ତି । କର୍ମକୁ ଆଦର କେବଳ ବୁଢ଼ି ଲୋକଙ୍କୁ ବିକଳ ହୋଇ ଚାହିଁ ରହିଛନ୍ତି ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରୁ ଉଚ୍ଚଶକ୍ତି ସମ୍ପନ୍ନ ବୋମା ତିଆରି କରିବାକୁ ଆମେ ଲାଗିଲୁ । ଯେଉଁ ଦେଶ କରିପାରିଲା ନାହିଁ ସେହି ଦେଶ ପଛୁଆ ହୋଇଗଲା । ଆଣବିକ, ପାରମାଣବିକ, ଉଦ୍‌ଜାନ ଆଦି ବୋମା ଯେମିତିକି ହୋଇଗଲା ଦେଶର ମର୍ଯ୍ୟାଦା ଓ ଗୌରବ । ଯାହାର ଯେତେ ଅଧିକ ଶକ୍ତିଶାଳୀ ବୋମା ରହିଲା ତାର ସେତେ ବେଶି ବଡ଼େଇ ହେଲା । ଏଇ ଯେଉଁ ବୋମାସବୁ ମାଟିତଳେ ଓ ସମୁଦ୍ର ଭିତରେ ପରୀକ୍ଷା କରାଯାଉଛି ସେସବୁରେ ବିଷାକ୍ତ ଗ୍ୟାସ କୁଆଡ଼କୁ ଯାଉଛି ? ଏହା କଣ ବାୟୁମଣ୍ଡଳକୁ ଦୂଷିତ କରୁନାହିଁ କି ? ମାଟି ଓ ପାଣି କଣ ଦୂଷିତ ହେଉ ନାହିଁ କି ? କାହିଁ ବଡ଼ପଣ୍ଡାମାନେ ତ କିଛି କହୁ-ନାହାନ୍ତି ? ବୈଜ୍ଞାନିକମାନେ ତ ବୁଦ୍ଧିର ଖେଳ ଖେଳୁଛନ୍ତି । ସେମାନେ ତ ରାଜନୀତିକ ବଡ଼ପଣ୍ଡାମାନଙ୍କ ହାତର ପଶୀ କଣ୍ଢେଇ । ଯେତେସବୁ ରାସାୟନିକ ପଦାର୍ଥ ତିଆରି ହେଉଛି ସେସବୁ କଣ ବାୟୁମଣ୍ଡଳ ଓ ପରିବେଶ ଉପରେ କିଛି ପ୍ରଭାବ ପକାଉ ନାହିଁ ?

ଇଏତ ସବୁ ବଡ଼ ବଡ଼ କଥା । ଏସବୁକୁ ଛାଡ଼ିଦେଲେ ଆହୁରି କେତେ ଛୋଟ ଛୋଟ କଥା ଅଛି । ଏଇ ଯେମିତି ଚାଷ ଜମିରେ ସାର ଆଉ ଔଷଧ ଦେବା କଥା । ପ୍ରାୟ ୧୯୬୦ ମସିହା ପରଠାରୁ ଆମ ରାଜ୍ୟରେ ଏଇ ବ୍ୟବସ୍ଥା ଉପରେ ଗୁରୁତ୍ୱ

ଢଆଡାନ୍ତି । କୃଷକମାନେ ଜମିରେ ସାର ଦେଲେ, ଔଷଧ ପକାଇଲେ । ପାରମ୍ପରିକ ଖତ, ଗୋବର ପକେଇବା ଛାଡ଼ିଲେ । ଧର୍ଣ୍ଣିରୁ ଆଉ ସବୁଜ ବୃକ୍ଷ ଛାଡ଼ିଲେ । ଫଳରେ ଜମି ହେଲା ଲକ୍ଷ୍ମୀ ଆ । ଅଧିକ ସାର ଓ ଔଷଧ ପକାଇବା ଦ୍ୱାରା ମାଟି, ପାଣି, ପବନ ବିଷାକ୍ତ ହେଲା କି ନାହିଁ ? ଯେଉଁ ଫସଲ ଉତ୍ପନ୍ନ ହେଲା ତାହା ମଧ୍ୟ ବିଷାକ୍ତ ହେଲା କି ନାହିଁ ? ଏବେ ଆମେରିକାରେ କିନା ସାରରେ ଉତ୍ପନ୍ନ ଖାଦ୍ୟ ସାମଗ୍ରୀକୁ ବ୍ୟବହାର କରିବାକୁ କୁହାଗଲାଣି । ଆମେ କଣ ସେ ବାଟ ପ୍ରତି ଚିନ୍ତା କଲୁଣି କି ? ମାଛ ଚାଷ ପାଇଁ ଯେଉଁ ଖାଦ୍ୟ ପକାଗଲା ତଦ୍ୱାରା ମାଛକୁ ରୋଗ ହେଉଛି କି ନାହିଁ ? ସେସବୁ କୃତ୍ରିମ ଖାଦ୍ୟ ଦ୍ୱାରା ଜଳ ଦୂଷିତ ହେଉଛି କି ନାହିଁ ? ଏଇମିତି କହି ବସିଲେ ପୋଥିଏ କଥା ହେବ । ଏଇସବୁ ଗୋଟିଏ ଗୋଟିଏ କଥାକୁ ଧରି ଆମ ପରିବେଶକୁ ଦେଖିବା ଏବଂ ଭାବିବା ଯେ ଆମେ ଆମ ପରିବେଶକୁ ଠିକ୍ ରଖି ପାରିବା ନା ନାହିଁ ।

ଏବେ ସହର ବଜାର ଓ ଗାଁରେ ସମସ୍ତେ ପରିବେଶକୁ ଦୂଷିତ କରିବାରେ ବ୍ୟସ୍ତ । ପରିବେଶକୁ ସୁରକ୍ଷା କରିବାପାଇଁ ସେମିତିକା କାହାରି ଆଗ୍ରହ ନାହିଁ । ସହରରେ ଜନବସତି ଅଞ୍ଚଳରେ ସରକାର ବାହାଦୂର ଓ ବଡ଼ ବଡ଼ ଅଧିକାରୀବୃନ୍ଦ ମିଲ୍ କରିବାକୁ ଅନୁମତି ଦେଉଛନ୍ତି । କିଏ ନ ଦେଖୁଛି ସେସବୁ ଅଞ୍ଚଳର ଅବସ୍ଥା କି କଦାକାର ହୋଇଯାଉଛି ? କହିଲେ ବା ଶୁଣୁଛି କିଏ ? କଳକାରଖାନାରୁ ନର୍ଦ୍ଦମା ପାଣି ବାହାରି ପରିବେଶକୁ ବିକୃତ କରି ଦେଉଛି । ବାୟୁମଣ୍ଡଳକୁ ମଧ୍ୟ ଦୂଷିତ କରୁଛି ଧୂଆଁ ଓ ଧୂଳି । ଏସବୁ ସହିତ ଆଉ ଗୋଟିଏ କଥା ସମସ୍ତେ ଲକ୍ଷ୍ୟ କରିଥିବେ । ସେଇଟା ହେଲା ଶବ୍ଦ ପ୍ରଦୂଷଣ । ଜନଗହଳି ଦୋକାନ ବଜାର ସଭାସମିତି ବିବାହବ୍ରତ ଇତ୍ୟାଦିରେ ମାଇକ୍ ଲଗାଯାଇ କେତେ ରକମର ବିକୃତ ଧ୍ୱନି ସୃଷ୍ଟି ନ ହେଉଛି ? କେତେ ଗାଡ଼ି ପ୍ରତିମୁହୂର୍ତ୍ତରେ ଯିବା ଆସିବା କରୁଛି ? ଏସବୁ ଗାଡ଼ିରୁ ବାଷ୍ପ ବାହାରୁଛି କି ନାହିଁ ? ଗାଡ଼ି ଚାଲିବା ଦ୍ୱାରା ଧୂଳି ଉଡ଼ୁଛି କି ନାହିଁ ? ଇମିତି ଅବସ୍ଥା ହୋଇଛି ଯେ ପରିବେଶକୁ ଆଉ ଠିକ୍ ରଖିବା ସମ୍ଭବ ନୁହେଁ । ବୈଜ୍ଞାନିକମାନେ କହିଲେଣି ଏସବୁ ପ୍ରଭାବରୁ ସୂର୍ଯ୍ୟଙ୍କ ଚାରିପଟେ ଗୋଟାଏ ଘନ ବଳୟ ସୃଷ୍ଟି ହୋଇଯାଉଛି । ଏହି ବଳୟ ଭେଦକରି ସୂର୍ଯ୍ୟଙ୍କ ପାଖରୁ ଯେଉଁ ଅଲଟ୍ରା ଭାଇଓଲେଟ ରଶ୍ମି ଆସିବା କଥା ତାହା ଆସିପାରୁ ନାହିଁ । ଅଙ୍ଗାରକାମ୍ଳ ଆଉ ବଳୟକୁ ଭେଦ କରି ଯାଇପାରୁ ନାହିଁ । କ୍ରମେ କ୍ରମେ ପୃଥିବୀରେ ଅଙ୍ଗାରକାମ୍ଳ ଓ ଯବକ୍ଷାରଜାନ ବୃଦ୍ଧି ପାଇ ଯାଉଛି । ପୁଣି ପୃଥିବୀ ସୂର୍ଯ୍ୟଙ୍କ ନିକଟବର୍ତ୍ତୀ ହୋଇ ଯାଉଛି । ଏହା ଫଳରେ ପୃଥିବୀର ବାୟୁମଣ୍ଡଳ କ୍ରମେ ଉତ୍ତପ୍ତ ହୋଇଯାଉଛି । ଋତୁ ପରିବର୍ତ୍ତନରେ ଦେଖା ଯାଉଛି ଘୋର ବ୍ୟତିକ୍ରମ । ଇମିତି ଅବସ୍ଥା ଆସିବ

ପୃଥିବୀ ମରୁଭୂମିରେ ପରିଣତ ହୋଇଯିବ । ଭୂପୃଷ୍ଠ ତଳୁ ଯେମିତି ଜଳ ଉତ୍ତୋଳନ ନିଷ୍କାସିତ ହେଉଛି ଏହାଦ୍ୱାରା କୁଆଡ଼େ ପଚାଶ/ଷାଠିଏ ବର୍ଷ ପରେ ଭୂପୃଷ୍ଠ ତଳୁ ଜଳ ସରିଯିବ । କୋଇଲା, ସୁନା, ପେଟ୍ରୋଲ ଆଦି ଦ୍ରବ୍ୟ ମଧ୍ୟ ସରିଯିବ । ଭୂପୃଷ୍ଠର ଭିତର ଖାଲ ଶୂନ୍ୟ ହୋଇଗଲେ ଘନ ଘନ ଭୂମିକମ୍ପ ହେବ । ଏହିସବୁ ଯେଉଁ ଅବସ୍ଥା ହେବାକୁ ଯାଉଛି ଏହାକୁ କିପରି ରୋକାଯାଇ ପାରିବ ? କାହାର ଏହି ଦାୟିତ୍ୱ ? ଅବଶ୍ୟ ସମସ୍ତଙ୍କର ଏହି ଦାୟିତ୍ୱ । ମୁଖ୍ୟତଃ ଦେଶର ରାଜନୀତିକ ନେତା ଓ ପ୍ରଶାସନର । ସେଇମାନେ ଏସବୁ ପରିସ୍ଥିତି ପାଇଁ ଦାୟୀ । ଏ ଅବସ୍ଥାର ସ୍ରଷ୍ଟା ସେଇମାନେ । ସେମାନେ ସଚେତନ ହେବେ ଓ ଅନ୍ୟମାନଙ୍କୁ ସଚେତନ କରାଇବେ । ତେବେ ଯାଇଁ ପରିବେଶ ଠିକ୍ ରହିବ । ପୃଥିବୀ ଧ୍ୱଂସମୁଖରୁ ରକ୍ଷାପାଇବ । ନହେଲେ ଶ୍ରେଷ୍ଠ ଜୀବ ମଣିଷ ହେବ ଏଇ ଧରଣୀ ମାତାର ଧ୍ୱଂସର କାରଣ । ଏଇଥିପାଇଁ ଭାଗବତର ପଦ କହୁଛି—'ଆପଣା ହସ୍ତେ କହ୍ନା ଛେଦି/କେ ତାର ଅଛି ପ୍ରତିବାଦୀ' । ତେଣୁ ସାଧୁ ସାବଧାନ । ବେଳହୁଁ ସାବଧାନ । ନେଡ଼ିଗୁଡ଼ କହୁଣୀକୁ ବୋହିଗଲେ ଆଉ ଉପାୟ ନ ଥିବ ।



# ରାଜନୀତି ଓ ଧର୍ମ

ରାଜନୀତି ନୂଆକଥା ନୁହେଁ । ପ୍ରାଚୀନକାଳରୁ ରାଜନୀତି ଆପଣାର କାର୍ଯ୍ୟ ବିସ୍ତାର କରିଆସିଛି । ମଣିଷ ଜାତିର ଇତିହାସରେ ରାଜା ସୃଷ୍ଟି ହେବାଠାରୁ ରାଜନୀତିର ହୋଇଛି ଜନ୍ମ । ସେତେବେଳେ ତାହା ଥିଲା ରାଜାଙ୍କର ନୀତି—ଅର୍ଥାତ୍ ରାଜାଙ୍କର ରୁଚି ଓ ଆଦର୍ଶକୁ ନେଇ ଯେଉଁ ବିଧିବିଧାନ ପ୍ରଚଳିତ ହୁଏ ରାଜନୀତି । ରାଜା ଜଣେ ବ୍ୟକ୍ତି । ସେହି ବ୍ୟକ୍ତି ଯେଉଁ ରାଜ୍ୟରେ ଶାସନ କରନ୍ତି ସେହି ରାଜ୍ୟରେ ତାଙ୍କର ନୀତି କାର୍ଯ୍ୟକାରୀ ହୁଏ । ଅନ୍ୟ ରାଜ୍ୟରେ ତାହା ହୁଏତ ଯଥାର୍ଥ ଆଦର୍ଶରୂପେ ଗୃହୀତ ହୋଇ ନପାରେ । ରାଜାଙ୍କୁ କେନ୍ଦ୍ର କରି ଯେଉଁ ଶାସନ ବ୍ୟବସ୍ଥା ପ୍ରଚଳିତ ହୁଏ ତାହାହିଁ ରାଜତନ୍ତ୍ର । ଏହା ରାଜ୍ୟରୁ ରାଜ୍ୟକୁ, ଦେଶରୁ ଦେଶକୁ ଭିନ୍ନ ଭିନ୍ନ ହୋଇଥାଏ । ଗୋଟିଏ କଥା ଏଥିରେ ସତ୍ୟ ଯେ ଲୋକଙ୍କର ଏହି ବ୍ୟବସ୍ଥାରେ କୌଣସି ଭୂମିକା ନଥାଏ । ରାଜାହିଁ ମୁଖ୍ୟ । ତାଙ୍କର ମୁଖର ବାଣୀ ହିଁ ରାଜ୍ୟର ଆଇନ । ସେ ଜଣକୁ ଦଣ୍ଡ ଦେଇପାରନ୍ତି, ମୁକ୍ତି ମଧ୍ୟ ଦେଇପାରନ୍ତି । ସେ କାହାର ଅଧୀନ ନୁହଁନ୍ତି । ସମସ୍ତେ ତାଙ୍କର ଅଧୀନ । ସେ ଯେତେ ଅତ୍ୟାଚାରୀ, ସ୍ୱେଚ୍ଛାଚାରୀ ଓ ନୀତିହୀନ ହେଲେ ମଧ୍ୟ ତାଙ୍କୁ କେହି କିଛି କହିପାରନ୍ତି ନାହିଁ । ତାଙ୍କର ଧର୍ମ ହିଁ ହୁଏ ରାଜ୍ୟର ଧର୍ମ । ତେଣୁ ସେ ନର ରୂପରେ ମହତୀ ଦେବତା । ଏପରି ଚିନ୍ତା ବୈଦିକ ଯୁଗରେ ନଥିଲା । ବୈଦିକ ଯୁଗ ଭାରତୀୟ ଧର୍ମ ଓ ସଂସ୍କୃତିର ମୂଳପିଣ୍ଡ । ତାହାହିଁ ସନାତନ ସଂସ୍କୃତି । ସେହି ସଂସ୍କୃତିରେ ରାଜା ସ୍ୱାଧୀନ ନୁହେଁ । ପ୍ରଜାଙ୍କୁ ନେଇ ରାଜା । ବ୍ରହ୍ମବେତ୍ତା ଋଷିଙ୍କୁ ନେଇ ରାଜା । ଋଷିର ଉପଦେଶ ରାଜାଙ୍କ ପକ୍ଷରେ ଥିଲା ଏକାନ୍ତ ଗ୍ରାହ୍ୟ । ରାଜା ସିଂହାସନର ନୁହେଁ, କ୍ଷମତାର ନୁହେଁ, ଉପଭୋଗର ନୁହେଁ; ପ୍ରଜାଙ୍କର, ତ୍ୟାଗର, କଲ୍ୟାଣର । ରାଜା ମଧ୍ୟ ସତ୍ୟର ଓ ଧର୍ମର । ରାଜା ଯଦି ଅସତ୍ୟ ଓ ଅଧର୍ମର ଉପାସକ ହୋଇଯାଏ ତେବେ ରାଜ୍ୟ ନଷ୍ଟ ହୋଇଥାଏ, ରାଜା ମଧ୍ୟ ନଷ୍ଟ ହୋଇଯାନ୍ତି । ତେଣୁ ମନୁ-ସଂହିତାରେ କୁହାଯାଇଛି—

ଧର୍ମ ଏବ ହତୋ ହନ୍ତି ଧର୍ମୋ ରକ୍ଷତି ରକ୍ଷିତଃ
ତସ୍ମାଦ୍ଧର୍ମୋ ନ ହନ୍ତବ୍ୟୋ ମା ନୋ ଧର୍ମୋ ହତୋଽବଧୀତ୍ ।

ନଷ୍ଟ ଧର୍ମ ହିଁ ବିନାଶ କରେ । ରକ୍ଷିତ ଧର୍ମ ରକ୍ଷା କରେ । ଧର୍ମ ହିଁ ବୃଷ ସଦୃଶ । ଯିଏ ଏହାକୁ ନଷ୍ଟକରେ ସିଏ ହୁଏ ବୃଷଳ । ଯେତେବେଳେ ରାଜା ଅଷ୍ଟାଦଶ ବ୍ୟସନର ବଶୀଭୂତ ହୋଇଯାଏ ସେତେବେଳେ ତାର ପତନ ଘଟେ । କାମଜ ଓ କ୍ରୋଧଜ ଭେଦରେ ଏହା ଦ୍ୱିବିଧ । ମୃଗୟା, ପଶାଖେଳ, ଦିବାନିଦ୍ରା, ପରଦୋଷ କଥନ, ସ୍ତ୍ରୀ ସମ୍ଭୋଗ, ମଦ୍ୟପାନ, ନୃତ୍ୟଗୀତବାଦ୍ୟ, ବୃଥା ପର୍ଯ୍ୟଟନ ଆଦି ଦଶଟି କାମଜ ବ୍ୟସନ ଏବଂ ଖଳତା, ଦୁଃସାହସ, ଦ୍ରୋହ, ଈର୍ଷା, ଅସୂୟା, ପରସ୍ୱାପହରଣ, ଆକ୍ରୋଶମୂଳକ ତିରସ୍କାର ବା ଅସ୍ୱୀକାରଲଳନ ପୂର୍ବକ ତିରସ୍କାର ବା ଅସ୍ୱୀକାରଲଳନ ପୂର୍ବକ ପ୍ରହାର ଆଦି ଆଠଟି କ୍ରୋଧଜ ବାସନା । ବାସନାଧୀନ ହୋଇଗଲେ ରାଜାର ମହତ୍ତ୍ୱ ଚାଲିଯାଏ । ସେ ହୁଏ ଅହଙ୍କାରୀ । ଏହି ଅହଙ୍କାର ଯୋଗୁ ବେଣ, ନହୁଷ, ସୁଦାସ, ଯଜନ, ସୁମୁଖ ଓ ନିମି ପରି ରାଜା ନଷ୍ଟ ହୋଇ-ଯାଇଥିଲେ । ଅଥଚ ବେଦର ଋଷି ରାଜାଙ୍କୁ ବାରମ୍ବାର ଚେତେଇ ଦେଇଛନ୍ତି ଯେ ସେ ପ୍ରଜାଙ୍କ ପାଇଁ ପ୍ରାଣ ଓ ମନକୁ ଧାରଣ କରିଅଛନ୍ତି । ତେଣୁ ରାଜା ଦେଶଦ୍ରୋହୀ ବ୍ରତହୀନ ପ୍ରବଞ୍ଚକ ଓ ମିଥ୍ୟାବାଦୀଙ୍କୁ ବିନାଶ କରନ୍ତୁ । ଯେତେବେଳେ ରାଜା ଏହା କରି ନ ପାରେ ସେତେବେଳେ ତାର ବ୍ୟକ୍ତିତ୍ୱ ଲୋପ ପାଏ । ସେ ଆଉ ଧର୍ମକୁ ରକ୍ଷା କରିପାରେ ନାହିଁ । ସେ ହୋଇଯାଏ ହୀନବଳ । ଏପରି ଅବସ୍ଥାରେ ସଦାଚାରୀ, ଜିତେନ୍ଦ୍ରିୟ ପୁରୁଷ ବ୍ରହ୍ମବେତ୍ତାମାନେ ଲାଞ୍ଛିତ ହୁଅନ୍ତି । ଫଳରେ ରାଷ୍ଟ୍ର ହୋଇଯାଏ ବିପନ୍ନ । (ଅଥର୍ବ)

ରାଜା ବା ଶାସକ ନିର୍ଦ୍ଦିଷ୍ଟ ଗୋଷ୍ଠୀର ନୁହଁନ୍ତି, ସମସ୍ତଙ୍କର । ସମସ୍ତଙ୍କ ଅନ୍ତଃସ୍ଥଳରେ ସେ ବାସକରେ । ଦେଶବାସୀଙ୍କ ସୁଖଦୁଃଖରେ ସେ ଭାଗୀ ହୁଏ । ଉନ୍ନତ ଓ ବିଳାସୀ ହୋଇ ଜନତାଙ୍କଠାରୁ କେବେହେଲେ ବିଚ୍ଛିନ୍ନ ହୁଏନାହିଁ । ( ଋକ୍—୧୦, ୧୭୩, ୧ ) । ତାଙ୍କଠାରେ ଶତ୍ରୁ-ମିତ୍ର ଓ ନିଜ-ପର ଭାବ ରହେ-ନାହିଁ । ରାଷ୍ଟ୍ରବସ୍ତୁର ସେ ସୁବଣ୍ଟନ କରନ୍ତି । ( ଅଥର୍ବ—୩, ୪, ୨ ) ।

ଯେଉଁଠି ରାଜା ରାଷ୍ଟ୍ର ସମ୍ପତ୍ତିକୁ ନିଜେ ଉପଭୋଗ କରେ, ପ୍ରଜାଙ୍କୁ ଗୌଣ ମନେ କରେ, ସେଠି ରାଜଧର୍ମ ଲୋପ ପାଇଯାଏ । ଏସବୁ ଭିତରେ ଗୋଟିଏ କଥା ବଳିଷ୍ଠ ହୋଇଯାଏ ଯେ ରାଜା ଧର୍ମଛଡ଼ା ହୋଇଗଲେ ଯେ କୌଣସି ଅନ୍ୟାୟ, ଅଧର୍ମ ଓ ପାପ କରିବାକୁ ପଛାଏ ନାହିଁ । ରାଜାଙ୍କୁ ନେଇ ଧର୍ମ । ରାଜା ଯେଉଁ ଧର୍ମ ଗ୍ରହଣ କରେ ପ୍ରଜାମାନେ ସେହି ଧର୍ମକୁ ସମ୍ମାନ ଦିଅନ୍ତି । ବୈଦିକ ଯୁଗରୁ ରାଜା-ମାନେ ଧର୍ମକୁ ସମ୍ମାନ ଦେଉଥିଲେ । ଜନସାଧାରଣ ମଧ୍ୟ ଧର୍ମରେ ଚାଲୁଥିଲେ । ରାଜା ରାମଚନ୍ଦ୍ର ଓ ରାମରାଜ୍ୟ ଏଥିପାଇଁ ଭାରତବର୍ଷରେ ଆଦର୍ଶ ହୋଇ ରହିଛି । ଏହା

ଏମନ୍ତ ଏକ ଆଦର୍ଶ ଯେ ଏବେ ତାହାକୁ କଳ୍ପନା କରିବା ସମ୍ଭବ ହେଉନାହିଁ । ବ୍ୟକ୍ତି ସ୍ୱାର୍ଥ ଓ ଉପଭୋଗ-ତୃଷା ଏତେ ପ୍ରବଳ ହୋଇଯାଇଛି ଯେ ରାମରାଜ୍ୟ ଆକାଶ କୁସୁମ ପରି ମନେ ହେଉଛି ।

ଭାରତବର୍ଷରେ ରାଜତନ୍ତ୍ର ଭିତରେ ଥିଲା ଗୋଟାଏ ଆଦର୍ଶ । ଏହା କେବଳ ରାଜତନ୍ତ୍ର ନଥିଲା; ଥିଲା ପ୍ରଜାତନ୍ତ୍ରର ଅଭିମୁଖୀ । କାଳକ୍ରମେ ଏହି ମନୋଭାବ ଲୋପ ପାଇଗଲା । ବିଶେଷତଃ ଭାରତବର୍ଷକୁ ଯବନ ଆକ୍ରମଣ କରିବା ଓ ଭାରତରେ ଯବନ ଶାସନ ପ୍ରତିଷ୍ଠା ପରେପରେ ରାଜତନ୍ତ୍ର ଅତୀତର ସକଳ ପୁଣ୍ୟଆଦର୍ଶକୁ ହରାଇବସିଲା । ଏକ ଉପଭୋଗୀ ବିଳାସୀ ଶାସନତନ୍ତ୍ରର ପ୍ରଭାବ ବିସ୍ତାର କରିବାକୁ ଲାଗିଲା । ଧର୍ମରେ ତେଣୁ ଦେଖାଦେଲା ଅବକ୍ଷୟ । ଯେତିକି ଯେତିକି ରାଜା ହୋଇଗଲେ ବିଳାସୀ ଓ ଉପଭୋଗୀ ସେତିକି ସେତିକି ଜନସାଧାରଣ ହେଲେ ଉପେକ୍ଷିତ ଓ ଧର୍ମ ହେଲା ଅବହେଳିତ । ପୁଣି ଧର୍ମ ଭିତରେ ସାଂପ୍ରଦାୟିକ (Sectarian) ମନୋଭାବ ବୃଦ୍ଧିଲାଭ କଲା । ସନାତନ ହିନ୍ଦୁଧର୍ମ ସାଂପ୍ରଦାୟିକ ନୁହେଁ; ମାନବିକ ଓ ବିଶ୍ୱଜନୀନ । ଅଥଚ ଏହି ମୂଳଦର୍ଶନ କ୍ରମେ ହ୍ରାସ ପାଇବାକୁ ଲାଗିଲା । ତଥାପି ଏହାର ଆଦର୍ଶ ସମ୍ପୂର୍ଣ୍ଣ ଲୋପ ପାଇଯାଇ ନାହିଁ । ରାଜତନ୍ତ୍ରରୁ ଧର୍ମ ଗୁଡ଼ିଗଲା ପରେ ଜନଜୀବନରେ ମଧ୍ୟ ଧର୍ମ ପ୍ରତି କାହିଁକି ଗୋଟାଏ ଅନାସ୍ଥା ଭାବ ଦେଖାଦେଲା । ମନ୍ଦିର ଭାଙ୍ଗିବା, ଦେବମୂର୍ତ୍ତି ଭାଙ୍ଗିବା ଓ ପୋଡ଼ିବାରୁ ବୋଧହୁଏ ଜନସାଧାରଣ ଉପଲବ୍ଧି କଲେ ଯେ ଧର୍ମ ବୋଲି କିଛି ନାହିଁ, ଭଗବାନ ମଧ୍ୟ ମିଛ । କାରଣ ଯେଉଁମାନେ ଭାଙ୍ଗିଲେ କିମ୍ବା ପୋଡ଼ିଲେ ସେମାନଙ୍କର କିଛି ହେଲାନାହିଁ । ସେମାନେ ବରଂ ଅତ୍ୟାଚାର କଲେ, ଶୋଷଣ କଲେ ଓ ବିଳାସରେ ରହିଲେ । ଅତ୍ୟାଚାର, ଶୋଷଣ ଓ ପୀଡ଼ନରୁ ବ୍ୟକ୍ତିବାଦର ହେଲା ଉନ୍ମେଷ ଏବଂ ଏହି ବ୍ୟକ୍ତିବାଦରୁ ରାଜପୂଜା ପ୍ରମୁଖ ହୋଇଗଲା । ଭାରତବର୍ଷରେ ମୁସଲମାନ ଓ ମୋଗଲ ଶାସନ ବେଳକୁ ବ୍ୟକ୍ତି ପୂଜାର ହେଲା ଉନ୍ମେଷ ଓ ପ୍ରତିଷ୍ଠା । ଗୋଟାଏ ସଙ୍କୀର୍ଣ୍ଣ ଧର୍ମଧାରଣା ସେମାନଙ୍କୁ ହିଂସ୍ର ଓ ପ୍ରମତ୍ତ କରିଦେଲା । ଏହିପରି ମଧ୍ୟ ଇଂରେଜମାନେ ଭାରତବର୍ଷକୁ ଅଧିକାର କଲାପରେ ଦେଖାଗଲା ଯେ ସେମାନେ ମଧ୍ୟ ମୁସଲମାନ ଓ ମୋଗଲଙ୍କ ପରି ହେଲେ ହିଂସ୍ର । ଶୋଷଣ ଓ ଉପଭୋଗ ସେମାନଙ୍କର ମଧ୍ୟ ଲକ୍ଷ୍ୟ ହେଲା । ଯାବନିକ ଓ ପାଶ୍ଚାତ୍ୟ ମନୋବୃତ୍ତି ଆମକୁ ମଧ୍ୟ କ୍ରମେ କ୍ରମେ ପ୍ରଭାବିତ କଲା । ଆମେ ସେମାନଙ୍କ ସହିତ ହାତ ମିଳାଇଲୁ; ହେଲୁ ହିଂସ୍ର ଓ ଉପଭୋଗୀ । ଆମେ ଶିକ୍ଷା ନାମରେ ଯାବତୀୟ ଅପକର୍ମ କଲୁ । ଆମର ନିଜସ୍ୱ ବୁଦ୍ଧିବୃତ୍ତି ରହିଲା ନାହିଁ । ଧାରକରା ବୁଦ୍ଧିରେ ଡିଣ୍ଡିମ ପିଟିଲୁ । ଆମେ କହିଲୁ ଧର୍ମ ଗୋଟାଏ କଣ ? ଭଗବାନ ଗୋଟାଏ କଣ ? —ସେବୁ ମଧ୍ୟ,

ଏସବୁ ମିଥ୍ୟା । ଯେତେବେଳେ ସିଏ ଦୁର୍ବଳ ସେତେବେଳେ ସେ ଧର୍ମ ଏବଂ ଭଗବାନଙ୍କ କଥା କହେ । ସବଳ ଏସବୁକୁ ଖାତିର କରେ ନାହିଁ ।

ରାଜତନ୍ତ୍ରକୁ ହଟାଇ ଭାରତବର୍ଷରେ ଗଣତନ୍ତ୍ର ପ୍ରତିଷ୍ଠା କରାଗଲା । ଏଠିକୁ ଯବନ ଆସିଲେ, ପଠାଣ ଆସିଲେ, ମୋଗଲ ଆସିଲେ । ସେମାନେ ରହିଗଲେ ଏଇଠି । ପୁନଶ୍ଚ ଏଠିକୁ ଆସିଲେ ଇଂରେଜମାନେ, ଫରାସୀମାନେ, ଓଲନ୍ଦାଜମାନେ । କେତେ କଏ ଆସିଲେ, କେତେ କଏ ଗଲେ । ହିନ୍ଦୁମାନେ କିନ୍ତୁ ଏଇଠି ଥିଲେ । ଅଛନ୍ତି ଓ ରହିବେ ମଧ୍ୟ । ସେମାନେ ଗୋଟିଏ ପୁଣ୍ୟ ଦେଶର ଦାୟାଦ । ଅନ୍ୟମାନେ ଦାୟାଦ ହେବାକୁ ଚେଷ୍ଟା କରଛନ୍ତି, ମନ ଭିତରେ ରହିଯାଉଛି ଗୋଟାଏ ବିରାଟ 'କିନ୍ତୁ' । ଏହି 'କିନ୍ତୁ' ହିଁ ସେମାନଙ୍କୁ ସଂଘର୍ଷ ଭିତରକୁ ଠେଲି ଦେଉଛି । ସେମାନଙ୍କ ଭିତରେ 'ବିଶ୍ୱାସ' ସୃଷ୍ଟି କରାଉ ନାହିଁ । ଏ ଦେଶର ଯେଉଁମାନେ ପାରମ୍ପରିକ ଦାୟାଦ, ଯେଉଁମାନଙ୍କ ରକ୍ତ ଅବିମିଶ୍ର, ସେମାନେ ହିଁ ବ୍ୟସ୍ତ ହୋଇ ପଡ଼ୁଛନ୍ତି, ଦେଶ କଥା ଭାବୁଛନ୍ତି, ଧର୍ମ କଥା ଚିନ୍ତା କରୁଛନ୍ତି । କାରଣ ସେମାନେ ଏଇ ମାଟିର ସନ୍ତାନ । ସେମାନେ କେଉଁଠୁ ଏ ମାଟିକୁ ଆସି ନାହାନ୍ତି । ସେମାନେ ବାହାରୁ, ୟୁରୋପରୁ, କାସ୍ପିୟାନ ହ୍ରଦ କୂଳରୁ ଆସିଛନ୍ତି ବୋଲି କେତେକ ପାଶ୍ଚାତ୍ୟ ପଣ୍ଡିତ କହିଛନ୍ତି । ସେଇ କଥାକୁ ମଧ୍ୟ ଆମ ଶିକ୍ଷିତ ପଣ୍ଡିତ-ମାନେ ଗ୍ରହଣ କରି ନେଇଛନ୍ତି । 'ଯାହା ଶିଖାଇଛି ଜଟାଧାରୀରେ ବଇରାଗୀ' ନ୍ୟାୟରେ ଆମ ଶିକ୍ଷିତ ଲୋକଙ୍କ ଧାରଣା । କେହି ତ କେବେ ଭାବୁ ନାହାନ୍ତି ଯେ ଯେଉଁ ଆର୍ଯ୍ୟମାନେ ଭାରତବର୍ଷରେ ବେଦ ବେଦାନ୍ତ ପରି ମନୀଷ ଜ୍ଞାନର ଚରମ ଉପଲବ୍‌ଧିକୁ ପ୍ରକାଶ କରି ଦେଇଗଲେ, ସେମାନେ ଯଦି ପଶ୍ଚିମରୁ କେଉଁ ସ୍ଥାନରୁ ଆସିଥିଲେ, ସେସବୁ ସ୍ଥାନରେ କାହିଁକି ଏପରି କିଛି ଜ୍ଞାନର ବିକାଶ ହେଲା ନାହିଁ ? ଗୋଟାଏ ଦୁଇଟା ଶବ୍ଦକୁ ମିଳାଇ ଦେଇ ଆମେ କହୁ ଯେ ଆର୍ଯ୍ୟମାନେ ବାହାରୁ ଆସିଥିଲେ । ହାୟ ଆମର ଜ୍ଞାନ ! ଆମର ଦଉଡ଼ !!

ଏବେ ଭାରତବର୍ଷରେ ଗଣତନ୍ତ୍ର ପ୍ରତିଷ୍ଠିତ । ବହୁଦଳ, ବହୁ ମତ । ଲକ୍ଷ୍ୟ କିନ୍ତୁ ସମସ୍ତଙ୍କର ଭାରତବର୍ଷର ଶାସନ ଗାଦି । ଏବେ ଆଉ ରାଜା ନାହାନ୍ତି । ରାଜାଙ୍କ ଅନ୍ତେ ତାଙ୍କ ପୁଅ ଗାଦିରେ ବସୁନାହିଁ । ଜନତା ନିର୍ବାଚନ ମାଧ୍ୟମରେ ପ୍ରତିନିଧି ପଠାଉଛନ୍ତି ରାଷ୍ଟ୍ରସଭକୁ । ନିର୍ବାଚନରେ ଯିଏ ଜିତୁଛି ସିଏ ରାଷ୍ଟ୍ରସଭାକୁ ଯାଉଛି । ସିଏ ହେଉଛି ଲୋକ ପ୍ରତିନିଧି । ଯେଉଁ ଦଳ ସଂଖ୍ୟାଗରିଷ୍ଠ ହେଉଛି ସିଏ ଶାସନ ଡୋରି ହାତକୁ ନେଉଛି । ଏହି ଦଳର ସଦସ୍ୟମାନଙ୍କ ମଧ୍ୟରୁ କେହି ମନ୍ତ୍ରୀ ହେଉଛି, ଅନ୍ୟ କେହି କେବଳ ପ୍ରତିନିଧି ହୋଇ ରହୁଛି । ଆହୁରି କେତେ ଦଳ

ଅଛନ୍ତି । ସେମାନେ କେବଳ ବିରୋଧୀ ହୋଇ ରହୁଛନ୍ତି । ସେମାନେ ନାନାତନ୍ତ୍ରର, ନାନା ଦର୍ଶନର । ତାହାର ଢେର ବାହାରେ ତ ତାହାର ଊର୍ଦ୍ଧ୍ୱରେ—ମାନେ ସମ୍ପୂର୍ଣ୍ଣ ଓଲଟ ବୃକ୍ଷ । ସବୁ ଦଳ ନିଜ ନିଜ ହାତରେ ଚଉଦ ପା' । ପ୍ରତ୍ୟେକ ଦଳ ଠିକ୍ କହୁଛୁ ବୋଲି ଭାବୁଛି ଓ ପ୍ରଚାର କରାଉଛି । ଦଳେ ଲୋକ ଅଛନ୍ତି ମାଧିଆ ବାଇ କି ଯୋଗିଆ ବାଇ ପରି ଥେଇ ଥେଇ ହୋଇ ନାଚୁଛନ୍ତି । ସେମାନେ କିଛି ବୁଝନ୍ତି ନାହିଁ । ନେତା ଯାହା କହନ୍ତି ତାକୁ ଋଷିବାଣୀ ପରି ମାନି ନିଅନ୍ତି । ଏବକା ରାଜନୀତି ଆଉ ରାଜାଙ୍କର ନୀତି ନୁହେଁ, ଜନତାର ନୀତି ନୁହେଁ, ମୁଷ୍ଟିମେୟ ଜନ ପ୍ରତିନିଧିଙ୍କ ନୀତି । କଙ୍କଡ଼ାକୁ ଗୋଲଘାଣି ସୁହାଇଲା ପରି ଯାହା ସେମାନଙ୍କୁ ସୁହାଏ ତାହାହିଁ ହୋଇଯାଏ ନୀତି । ଏମାନେ ରାଜା ନୁହନ୍ତି, ଅଥଚ ରାଜାଙ୍କ ଠାରୁ, ମହାରାଜାଙ୍କ ଠାରୁ ଆହୁରି ବଳୁଆର, ଆହୁରି ଉପଭୋଗୀ, ଆହୁରି ଖିଆଲି । ଏମାନଙ୍କ ବିଳାସ ବ୍ୟସନ ଦେଖିଲେ, ଠାଟ ଦେଖିଲେ, କିଏ କହିବ ଯେ ଏମାନେ ରାଜା ନୁହନ୍ତି ? ଏମାନେ ନୂଆ ରାଜା । ଏମାନଙ୍କ ସଂଖ୍ୟା ବିପୁଳ । ବଢ଼ି ବଢ଼ି ଚାଲିଛି ଏମାନଙ୍କ ସଂଖ୍ୟା । ଏମାନଙ୍କ ହାତରେ ଶାସନ ଡୋର । ଶାସନର ପଣ୍ଡାମାନେ ଏମାନଙ୍କ ହାତର କଣ୍ଢେଇ । 'ଅଦୃଶ୍ୟ ରଜ୍ଜୁ କରେ ଧରି/ମର୍ତ୍ତ୍ୟେ ନଚାଏ ନରହରି' ପରି ଏମାନେ ସମସ୍ତଙ୍କୁ ନଚାଉଛନ୍ତି । ଗଣ କିଛି ବୁଝେନାହିଁ କିମ୍ବା ବୁଝୁନାହିଁ । କେବଳ ଗୋଟାଏ ହୋ'ରେ ମାତୁଛନ୍ତି । ନୂଆ ରାଜାମାନଙ୍କର ଅପରିଣାମଦର୍ଶିତା ଯେ ଭାରତବର୍ଷର ବିପର୍ଯ୍ୟୟର କାରଣ ହୋଇଯାଉଛି, ଏକଥା କିଏ କେହି ଚିନ୍ତା କରୁଛନ୍ତି ? ସେମାନେ ନୀତିହୀନ, ଆଦର୍ଶହୀନ, ଚରିତ୍ରହୀନ ହେଲେ ମଧ୍ୟ ରାଜା । ତେଣୁ ସେମାନେ ପୂଜ୍ୟ ଓ ସେମାନଙ୍କ କଥା ଗ୍ରାହ୍ୟ । ଯେତେଦିନ ପର୍ଯ୍ୟନ୍ତ ଏହି କଥାକୁ ଭାରତର ଜନସାଧାରଣ ନ ବୁଝିଛନ୍ତି ସେତେଦିନ ପର୍ଯ୍ୟନ୍ତ ଭାରତ-ଆତ୍ମାର ମୁକ୍ତି ନାହିଁ ।

ଭାରତର ଆତ୍ମା—ଧର୍ମ । ଏହାହିଁ ସନାତନ ଧର୍ମ । କୌଣସି କାଳେ ଏହା ସାମ୍ପ୍ରଦାୟିକ ନୁହେଁ, ହିଂସ୍ର ନୁହେଁ । ବିଶ୍ୱ ଏହାର ପରିବାର । ଏହା ଉଦାର ଓ ମହାନ୍ । ମଧୁମୟ ଏହାର ବାଣୀ, ଅମୃତମୟ ଏହାର ଆବେଦନ । ଭୂମାର ଏହା ପ୍ରତୀକ । କୌଣସି କାଳେ ଧର୍ମକୁ ନେଇ ଭାରତ କାହାରି ଉପରେ ଆକ୍ରମଣ କରିନାହିଁ । ଆକ୍ରମଣ ଓ ଅଧିକାର ଏହାର ଲକ୍ଷ୍ୟ ନୁହେଁ । ଏହାର ଲକ୍ଷ୍ୟ ମଣିଷକୁ ଅମୃତପୁତ୍ର ଭାବରେ ବିଚାର କରି ତା' ଭିତରେ ଦେବତ୍ୱର ବିକାଶ କରାଇବା । ଅଥଚ ଆକ୍ରମଣକାରୀ ଧର୍ମ ଓ ସମ୍ପ୍ରଦାୟ କବଳରେ ପଡ଼ି ଭାରତର ଆତ୍ମା ବିପର୍ଯ୍ୟସ୍ତ ହୋଇଯାଇଛି । ଫଳରେ ବସ୍ତୁବାଦ ଓ ଉପଭୋଗ ହୋଇଯାଇଛି ଆଜିର ଆଦର୍ଶ । ରାଜନୀତି ଏହି ଆଦର୍ଶର ହୋଇଛି ଉଦ୍‌ଗାତା । ତେଣୁ ସନାତନ ଧର୍ମ କଥା କହିଲେ

ବିରୁଡ଼ି ବସାରେ ହାତ ଦେଲାପରି ହେଉଛି । ଧର୍ମନିରପେକ୍ଷତା ନାମରେ ହିନ୍ଦୁଧର୍ମ ଓ ସନାତନ ଧର୍ମକୁ ଅବହେଳା କରାଯାଉଛି । କେହି ସନାତନ ଧର୍ମ କଥା କହିଲେ, ହିନ୍ଦୁ ଶବ୍ଦ ଉଚ୍ଚାରଣ କଲେ ସେ ସାମ୍ପ୍ରଦାୟିକ ହୋଇଯାଉଛି । ଏହା ହିଁ ବିଚିତ୍ର ବିଭ୍ରାଟ । ଏହି ବିଭ୍ରାଟ ଭିତରେ ଆଜିର ନୂଆ ପିଲାମାନେ ପଡ଼ିଯାଇଛନ୍ତି । ସାରା ଦେଶଟା ମଧ୍ୟ ପଡ଼ି ଛଟପଟ ହେଉଛି ।

ସନାତନ ଧର୍ମର ବାଣୀ—'ସ୍ୱଧର୍ମେ ନିଧନଂ ଶ୍ରେୟ ପର ଧର୍ମ ଭୟାବହ' । ସ୍ୱଧର୍ମ ହିଁ ଭାରତର ସନାତନ ବାଣୀ । ଆଜି କିନ୍ତୁ ସ୍ୱଧର୍ମ-ଚେତନା ଲୋପପାଇଯାଉଛି । ଗୋଟାଏ ପରମୁଖାପେକ୍ଷୀ ମନୋଭାବର ଶିକାର ହୋଇଛନ୍ତି ଭାରତର ଲୋକେ । ବିଶେଷତଃ ଆପଣାର ସ୍ୱକୀୟ ସୁବିଧା ଓ ସୁଯୋଗ ଖୋଜୁଥିବା ତଥାକଥିତ ବୁଦ୍ଧିଜୀବୀମାନେ ଏହାର ବେଶି ଶିକାର ହୋଇଛନ୍ତି । ତେଣୁ ସେମାନେ ରାମ ଓ କୃଷ୍ଣଙ୍କ ଇତିହାସକୁ ଗଳ୍ପ ମଧ୍ୟକୁ ଟାଣିବାକୁ ଚେଷ୍ଟା କରନ୍ତି । ଇତିହାସ ଭିତରେ ଆଣି ବିକୃତ ମତ ଦିଅନ୍ତି । ବିଭ୍ରାନ୍ତ କରନ୍ତି ଗଣ-ମାନସକୁ । ଅଥଚ ରାମ ଓ କୃଷ୍ଣ ଇତିହାସ ନୁହଁନ୍ତି, ଇତିହାସ ଅତିକ୍ରାନ୍ତ ସନାତନ ଚେତନାର ଉଜ୍ଜ୍ୱଳ ନିଦର୍ଶନ । ଗଣତାନ୍ତ୍ରିକ ପ୍ରଜାତନ୍ତ୍ର ଓ ନିର୍ବାଚନ ବ୍ୟବସ୍ଥାରେ ଦେଶଟା ଫାଙ୍କ ଫାଙ୍କ ହୋଇଯାଉଛି । ଗୋଟିଏ ଗୋଟିଏ ଗୋଷ୍ଠୀକୁ ସ୍ୱତନ୍ତ୍ର ସୁବିଧା ଦିଆଯିବା ଫଳରେ, ସେ ହୁଏତ ଭୋଟ ବ୍ୟାଙ୍କର ସ୍ଥାୟୀ ଜମା ହୋଇଯାଉଛି, ମାତ୍ର ଦେଶର ଗତି ଯେ ଅନ୍ଧକାର ଭିତରକୁ ଆଗେଇ ଚାଲୁଛି, ଏ କଥାକୁ କେହି ବିଚାରୁ ନାହାନ୍ତି । ଧର୍ମ-ନିରପେକ୍ଷତା ହୋଇଯାଉଛି ହିନ୍ଦୁଧର୍ମର ପରିପନ୍ଥୀ । ହିନ୍ଦୁଧର୍ମର ସ୍ୱାର୍ଥଦ୍ୱେଷୀ କ୍ଷମତାଲିପ୍ସୁ ବ୍ୟକ୍ତିମାନଙ୍କ ଚକ୍ରାନ୍ତରେ ସେହି ଧର୍ମ ବିଦୀର୍ଣ୍ଣ ହୋଇଯାଉଛି । ଧର୍ମର ମହାସ୍ରୋତ ମଧ୍ୟକୁ ସମସ୍ତଙ୍କୁ ଆଣି ଏକ ମହାନ୍ ଉଦାର ଧର୍ମଭାବ ସୃଷ୍ଟି କରିବା ଏବଂ ଧର୍ମଭିତ୍ତିକ ସମାଜବାଦ ପ୍ରତିଷ୍ଠା କରିବା ଦିଗରେ ଆଦୌ ଆନ୍ତରିକତା ପ୍ରକାଶ ପାଉନାହିଁ । ଭାରତବର୍ଷରେ ମଧ୍ୟ କେହି ଚିନ୍ତା କରୁ ନାହିଁ ଯେଉଁ ସାମ୍ୟବାଦୀ ରାଷ୍ଟ୍ର ଋଷିଆ ଦୀର୍ଘକାଳ ଧରି ପୃଥିବୀରେ ଅଖଣ୍ଡ ପ୍ରଭାବ ପକାଇଥିଲା ତାହାର ବିରାଟ ପରିବର୍ତ୍ତନ ଘଟିଗଲା ଓ ସେଠାରେ ସାମ୍ୟବାଦର ବିଲୋପ ହୋଇଗଲା । ବିଶ୍ୱ ରାଜନୀତିରେ ଯେଉଁ ଘଟ ପରିବର୍ତ୍ତନ ହେଉଛି ତାହାକୁ ମଧ୍ୟ କେହି ବୁଝୁ ନାହାନ୍ତି । ସଙ୍କୀର୍ଣ୍ଣ ସ୍ୱାର୍ଥ ଭାରତବର୍ଷକୁ ଅଚ୍ଛନ୍ନ କରି ଦେଉଛି । ଗୋଟାଏ ଅହେତୁକ ଭୟ ସଞ୍ଚାର ହୋଇଯାଉଛି । ଏହି ଭୟ ହିଁ ସତ୍ୟକୁ ସତ୍ୟ କହିବାରେ ପ୍ରେରଣା ଦେଉନାହିଁ । ଭୟରୁ ମୁକ୍ତ ନ ହେଲେ ଭାରତର ଆତ୍ମାର ମୁକ୍ତି ନାହିଁ । ଭାରତର ଆତ୍ମାର ମୁକ୍ତି ନ ହେଲେ ଦେଶର ପ୍ରଗତି ନାହିଁ । ଏକ ମହାନ୍ଧକାର ଭିତରକୁ ଦେଶକୁ ନେଇଯିବା ସାର ହେବ । ଅବଶ୍ୟ ଏହା ସତ୍ୟ ଯେ ଯେତେବେଳେ ଧର୍ମରେ ଗ୍ଲାନି

ଦେଖାଦିଏ, ଅଧର୍ମ ପ୍ରବଳ ହୁଏ, ସେତେବେଳେ ଭଗବାନଙ୍କର ଅବତାର ଘଟେ । ଦୁଷ୍ଟ ଓ ଅତ୍ୟାଚାରୀମାନଙ୍କୁ ବିନାଶ କରି ସେ ଧର୍ମକୁ ସ୍ଥାପନ କରନ୍ତି । ସାଧୁ ଓ ଧାର୍ମିକ ଲୋକଙ୍କୁ ରକ୍ଷା କରନ୍ତି । ଭାରତବର୍ଷରେ ସାମ୍ପ୍ରତିକ ପରିସ୍ଥିତିକୁ ଲକ୍ଷ୍ୟ କଲେ ମନେହେଉଛି ଯେ ଏ ଦେଶର ଲୋକେ ଆଉ ଧର୍ମକୁ ରକ୍ଷା କରିପାରିବେ ନାହିଁ । ଭଗବାନଙ୍କର ଆବିର୍ଭାବ ଘଟିବ । ହୁଏତ ଏ ଦେଶର ଲୋକମାନଙ୍କ ଭିତରେ ସେ ଆବିର୍ଭୂତ ହୋଇ ପ୍ରକୃତ ସନାତନଧର୍ମକୁ ପୁନଃ ପ୍ରତିଷ୍ଠା ଦେବେ— ଏକଥା କହିଲେ ବୋଧହୁଏ ସତ୍ୟର ଅପଲାପ ହେବନାହିଁ ।



# ପଲ୍ଲୀରେ ପକ୍ଷାଘାତ

ଭାରତବର୍ଷର ସଂସ୍କୃତି କହିଲେ ପଲ୍ଲୀ ସଂସ୍କୃତିକୁହିଁ ବୁଝାଏ । ପଲ୍ଲୀ ଭାରତର ହୃତ୍‌ସ୍ପନ୍ଦ । ପଲ୍ଲୀ ବହୁଳ ଦେଶ ଭାରତବର୍ଷ । ପଲ୍ଲୀର ଜୀବନଯାତ୍ରା, ଧର୍ମଧାରଣା, ରୀତିନୀତି, ଚାଲିଚଳଣି ଯୁଗ ଯୁଗ ଧରି ଭାରତର ସଂସ୍କୃତିକୁ ଗଢ଼ି ଆସିଛି । ଇତିହାସର ରଥଚକ୍ର ତଳେ ଭାରତବର୍ଷର ଐତିହ୍ୟ ଓ ପରମ୍ପରା ପେଷି ହୋଇ ଯାଇଛି । କାଳକ୍ରମେ ନାନା ଐତିହାସିକ, ସାଂସ୍କୃତିକ ଓ ରାଜନୈତିକ ପରିବର୍ତ୍ତନ ମଧ୍ୟ ଦେଇ ଭାଙ୍ଗି ପଡ଼ୁଛି ପଲ୍ଲୀର ସଂସ୍କୃତି । ପଲ୍ଲୀର ଭଗ୍ନ ବୁକୁ ଉପରେ ଗଢ଼ି ଉଠିଛି ନଗର ସଭ୍ୟତା । ହଜିଯାଇଛି ପଲ୍ଲୀର ସ୍ୱପ୍ନ ଓ ସରଳତା ମିଳେଇ ଯାଇଛି ପଲ୍ଲୀର ସଂସ୍କୃତି । ଆଉ ସୁନ୍ଦର ନୁହେଁ ପଲ୍ଲୀର ବଣ ପାହାଡ଼ ଶସ୍ୟକ୍ଷେତ୍ର । ପଲ୍ଲୀର ସବୁଜ ସୁଷମା ଆଉ ନାହିଁ । ଗୋଠବାହୁଡ଼ା ଗାଈଆଳ ଟୋକାର ମନମତାଣିଆ ଗୀତ ଆଉ ଶୁଭୁନାହିଁ । ଶୁଭୁନାହିଁ ମଧ୍ୟ ଶଗଡ଼ିଆର 'ରାମ ଯେ ଲକ୍ଷ୍ମଣ' ସଙ୍ଗୀତର ମଧୁର ମୂର୍ଚ୍ଛନା । ଲୋପ ପାଇଗଲାଣି ଫସଲ କଟାର ଗାନ । ନଖାପଠାଉ ଶ୍ରୀ ନାହିଁ । ଜହ୍ନି ଫୁଲର ଠୋ ଠା ନାହିଁ । ଖୁଦୁରୁକୁଣୀର ପୁଚଖେଳ ନାହିଁ । କାର୍ତ୍ତିକ ପୂର୍ଣ୍ଣିମାର ଡାଙ୍ଗ ଖରବା ନାହିଁ, ମୁରୁଜପକା ନାହିଁ, 'ଆ କା ମା ବଇ/ପାନ ଗୁଆ ଦେଇ' ନାହିଁ । ଗାଁର ଆଲୁଅ ଆଉ ମନୋହର ନୁହେଁ କି ଅନ୍ଧାର ମଧ୍ୟ ତାହାଠାରୁ ଆହୁରି ସୁନ୍ଦର ନୁହେଁ । ସେଠି କି ଘରେ ଘରେ ଆଜି ବିଜୁଳିବତୀର ରୋଷଣି—ଦାଣ୍ଡେ ଦାଣ୍ଡେ ନାଲି ସଡ଼କ । ଭାଗବତ ଘରେ ତାଲା । ଠାକୁର ମନ୍ଦିରରେ ନୂଆ ନୂଆ ମାର୍ଫତଦାର । ଦିଅଁଙ୍କ ପୂଜାବିଧି ଶୂନ୍ୟ । ମାଲିମକଦ୍ଦମା ସାର । ଘରେ ଘରେ ରେଡ଼ିଓ ଏବଂ ଟିଭି । ଶଗଡ଼ ନାହିଁ; ଅଛି ମୋଟରସାଇକେଲ, ସ୍କୁଟର, କାର୍, ଜିପ୍‌ର ନୂଆ ଭେଳିକି । କ୍ଲବ୍ ଘର, ଯୁବକ ସଂଘ, ନାରୀ ସେବା ସଦନ, ସ୍କୁଲ, କଲେଜର ଶୋଭାଯାତ୍ରା । ନୂଆ ହାଉ । ନୂଆ ବାସନା । ଗାଁକୁ ଖୋଜିଲେ ଆଉ ଗାଁ ମିଳୁନାହିଁ । ସରଳତା ନାହିଁ । ବିରକ୍ତିକର ଜଟିଳତା । ବିଶ୍ୱାସ ନାହିଁ; ଅବିଶ୍ୱାସର ମାତ୍ରା । ସବୁ ଥାଇ ବି ଯେପରି କିଛି ନାହିଁ । କାହାରି କାହା ସହିତ ସମ୍ପର୍କ ନାହିଁ । ନୂଆ ନୂଆ ସଂଘର୍ଷ ଯେମିତି କି ଗାଁକୁ ଭାଙ୍ଗି ଖଣ୍ଡ ଖଣ୍ଡ କରି ଦେଇଛି । ଗାଁ ହୋଇଯାଉଛି ଖଣ୍ଡ ଖଣ୍ଡ ସାହିରେ ପରିଣତ । ସବୁ ସାହିରେ ନୂଆ ନୂଆ ମୁରବି । ସବୁଠି ଯେମିତି 'ମୁଁ' 'ମୁଁ'ର ଯୁଦ୍ଧପାଇଁ ଆହ୍ୱାନ ।

ପ୍ରାଚୀନ ଭାରତରେ ନଗର ଥିଲା; ପଲ୍ଲୀ ମଧ୍ୟ ଥିଲା । ଉଭୟଙ୍କର ସମ୍ପର୍କ ଥିଲା ନିବିଡ଼ । ଅଥଚ ଉଭୟଙ୍କ ମଧ୍ୟରେ ଥିଲା ଦୂରତା । ନଗର ସେଠି ପଲ୍ଲୀକୁ ଗ୍ରାସ କରୁନଥିଲା । ପଲ୍ଲୀ ମଧ୍ୟ ନଗର ନିକଟରେ ଯାଚଞ୍ଚା ହେଉ ନଥିଲା । ବରଂ ପଲ୍ଲୀର ସଂସ୍କୃତି ନଗରକୁ ପ୍ରଭାବିତ କରୁଥିଲା । ପଲ୍ଲୀର ଯାହା ଆବଶ୍ୟକତା ତାହା ପଲ୍ଲୀରେ ହିଁ ମେଣ୍ଟି ଯାଉଥିଲା । ସେତେବେଳେ ଅର୍ଥବାଦ ବା ବସ୍ତୁବାଦ ପଲ୍ଲୀ-ସଂସ୍କୃତିର ଆଧାର ନ ଥିଲା; ଆଧାର ଥିଲା ଆଧ୍ୟାତ୍ମିକବାଦ । ଭାରତବର୍ଷକୁ ବହୁ ବିଦେଶୀ ଶାସକମାନେ ଆକ୍ରମଣ କଲେ ଓ କ୍ରମେ ଭାରତବର୍ଷକୁ ଗ୍ରାସ କରି ନିଜ ନିଜର ଆଧିପତ୍ୟ ବିସ୍ତାର କଲେ । ସେ କାଳର ରାଜାମାନଙ୍କର କ୍ଷମତା-ଦ୍ୱନ୍ଦ୍ୱ ବହିଃଶକ୍ତିକୁ ନିମନ୍ତ୍ରଣ କରିଆଣିଲା ଓ ବିଦେଶୀ ଶକ୍ତି ସମୂହ ସୁଯୋଗ ଲାଭକଲେ ଭାରତରେ ପ୍ରତିଷ୍ଠା ଅର୍ଜନ କରିବା ପାଇଁ । ସେମାନେ ମଧ୍ୟ ଶାସନ ପ୍ରତିଷ୍ଠା ସହିତ ନିଜ ନିଜର ସଂସ୍କୃତି, ଆଚାର ବିଚାର ଓ ରୀତିନୀତିକୁ ଆରୋପ କଲେ । ନଗର ହେଲା ସେମାନଙ୍କର ଭିତ୍ତି-କେନ୍ଦ୍ର । ତେଣୁ ନଗର ଜୀବନରେ ପ୍ରଥମେ ହେଲା ପରିବର୍ତ୍ତନ ଓ ରୂପାନ୍ତର । ଏହି ରୂପାନ୍ତର ମଧ୍ୟ ଗ୍ରାମ୍ୟ ଜୀବନକୁ ସଂକ୍ରମିତ ହେଲା । ନୂତନ ଶାସନ ପଦ୍ଧତିରେ କିଛି କିଛି ସୁବିଧାବାଦୀ ଓ ଉପଭୋଗୀ ଲୋକ ଯୋଗଦେଇ ସେହି ବିଦେଶୀ ଶାସକଙ୍କ ନୀତି ଓ ସଂସ୍କୃତିକୁ ପଲ୍ଲୀରେ ଚଳାଇଲେ । ଏହି ଉପଭୋଗୀ ସଂସ୍କୃତି ମୁଣ୍ଡଟେକି ଉଠିଲା । ବସ୍ତୁବାଦ ଭିତରେ ନିଜର ସ୍ଥିତି ସନ୍ଧାନ କଲେ ଅର୍ଥକୌଳିନ୍ୟ ଭିତ୍ତିର ମଣିଷ । ଅର୍ଥବାଦ ଓ ଭୋଗବାଦକୁ ନେଇ ଗଢ଼ି ଉଠିଲା ଶ୍ରେଣୀ ସମାଜ । ଏହି ସମାଜରେ ଦଳେ ହେଲେ ଥିଲାବାଲା ଏବଂ ଆଉ ଦଳେ ହେଲେ ନ ଥିଲାବାଲା । ଥିଲାବାଲାମାନେ ଧର୍ମର ବ୍ୟୁହ ରଚନା କରି ନଥିଲାବାଲାମାନଙ୍କୁ ନିଜର ଅନୁଗତ କରି ରଖିଲେ । ତେଣୁ ରାଜ-ପ୍ରଶସ୍ତି ହୋଇଗଲା ଅସ୍ଥିମଜ୍ଜାଗତ । ରଜା ତ ରଜା, ଗ୍ରାମୀଣ ସଂସ୍କୃତିରେ ଯିଏ ଟିକେ ଉଚ୍ଚପାହାଚର ଥିଲାବାଲା ହୋଇଗଲା, ସିଏ ମଧ୍ୟ ନିଜକୁ ରଜା ଭଳିଆ ମନେକଲା । ତାକୁ ମଧ୍ୟ ସ୍ତୁତି କରାଗଲା । ଏକ ନୂତନ ସ୍ତୁତିବାଦ ଦେବତାରୁ ମଣିଷ ପର୍ଯ୍ୟନ୍ତ ବ୍ୟାପିଗଲା । ଗ୍ରାମୀଣ ଜୀବନରେ ନାନା କିସମର ରାଜାଙ୍କର ଆବିର୍ଭାବ ଘଟିଲା । ଏହି ସାମାଜିକ ଅବସ୍ଥା ମୋଗଲ-ଶାସନ ଦେଇ ଗତି କରିଆସିଲା ଇଂରେଜ ଶାସନ ପର୍ଯ୍ୟନ୍ତ । ଏ ସମୟରେ ନୂଆ ନୂଆ ଆଇନ୍ ତିଆରି ହେଲା, ଶାସନ-ବ୍ୟବସ୍ଥାର ରୂପାନ୍ତର ଘଟିଲା । ପୋଲିସ-ସଂସ୍ଥା ଓ ବିଚାର-ବିଭାଗ କାର୍ଯ୍ୟ ବିସ୍ତାର କଲା । ଶାସକଙ୍କୁ ନିରାପଦ ରଖିବା ପାଇଁ ଏହି ଦୁଇଟି ବିଭାଗ ହୋଇଗଲା ଦୁଇଟି ବଳିଷ୍ଠ ଭୁଜ । ବହୁ ପୂର୍ବରୁ ଶକ, ହୁନ୍, ମୋଗଲ, ପଠାଣ ଯେତେ ସବୁ ଆସିଥିଲେ ସେମାନେ ଏଇଠି ପୁରୁଷାନୁକ୍ରମେ ରହିଗଲେ । ସେମାନେ ହୋଇଗଲେ ନବ୍ୟ ଭାରତୀୟ ଓ ନବ୍ୟ ଭାରତୀୟରୁ ହେଲେ ଭାରତୀୟ । ଗ୍ରାମ୍ୟ ଜୀବନରେ

ସେମାନଙ୍କର ସୁଯୋଗମୈତ୍ର ବନ୍ଧୁ ସମ୍ପର୍କ ମଧ୍ୟ ଗଢ଼ି ଉଠିଲା । ସେମାନଙ୍କ ଚେର ଥାଉ ବିଦେଶୀ ମାଟିରେ ରହିଲା ନାହିଁ । ଇଂରେଜମାନେ କିନ୍ତୁ ଏ ଦେଶର ମାଟିରେ ମିଶିଲେ ନାହିଁ । ସେମାନଙ୍କ ଚେର ରହିଗଲା ଇଂଲଣ୍ଡରେ । ଏଠି ଶାସନ କଲେ; ଅଥଚ ଏଠିକାର ଅର୍ଥ ନେଇ ଇଂଲଣ୍ଡକୁ ପୁଷ୍ଟ କଲେ । ବ୍ରିଟିଶ ରାଜା ଓ ପାର୍ଲାମେଣ୍ଟ ହେଲ ଏମାନଙ୍କର ଉଦ୍ଦେଶ୍ୟ । ଏ ମାଟିର ହୋଇ ନ ପାରିବାରୁ ଜନସାଧାରଣଙ୍କ ପ୍ରତି ଯେଉଁ ଶୋଷଣ କଲେ ତାହାଦ୍ୱାରା ସେମାନେ ବ୍ୟସ୍ତ ହେଲେ ନାହିଁ । ବରଂ ସେମାନେ ପୈଶାଚିକ ଉଲ୍ଲାସ ଅନୁଭବ କଲେ । ସେମାନେ ପୁଣି ଏ ଦେଶର ଠିକଣା ଲୋକଙ୍କୁ ବାଛି ନେଲେ, ଯେଉଁମାନେ ସେମାନଙ୍କ ବାହୁଗ୍ରସ୍ତାରେ ରହି ଶୋଷଣର ରଥ ଚକକୁ ନିର୍ବିରୋଧ ଭାବରେ ଚଳାଇଲେ । ଏହି ସମୟରୁ ଏକ ନୂତନ ଅର୍ଥକୌଳିନ୍ୟ ପ୍ରଭାବ ବିସ୍ତାର କଲା ଓ ଏହି ସଂସ୍କୃତିକୁ ଅବଲମ୍ବନ କରି ଗଢ଼ି ଉଠିଲା ଏକ ନୂତନ ବାବୁ-ସମାଜ । ଏମାନେ ନଗର ଜୀବନକୁ ଆପଣା ଆପଣାର କେନ୍ଦ୍ର କରିନେଲେ । ପଲ୍ଲୀରୁ ଯାଇ ସେମାନେ ନଗରରେ ରହିଲେ । ପଲ୍ଲୀକୁ ଶୋଷଣ କଲେ । ପଲ୍ଲୀରେ ଭେଦ ସୃଷ୍ଟି କଲେ । ଇଂରେଜ ସାହାବଙ୍କ ପରି ନିଜ ନିଜକୁ ସାହାବ ମନେ କଲେ । ତାମସ କାଉ ପରି ଦେହରେ ମୟୂର ପୁଚ୍ଛ ଖୋସିଲେ । ଅଥଚ ମୟୂର ହୋଇ ପାରିଲେ ନାହିଁ ।

ସ୍ୱାଧୀନତା ସଂଗ୍ରାମବେଳେ ମହାତ୍ମା ଗାନ୍ଧୀ ପଲ୍ଲୀ ଉପରେ ଦୃଷ୍ଟି ପକାଇଲେ । ପଲ୍ଲୀକୁ ସେ ସଂଗଠିତ କଲେ ଓ ପଲ୍ଲୀକୁ ଦେଲେ ନୂତନ ମନ୍ତ୍ର । ପଲ୍ଲୀର ଆତ୍ମାକୁ ଉଦ୍‌ଘାଟନ କଲେ । ପଲ୍ଲୀ ଜୀବନ ହେଲା ଶିହରିତ । ପ୍ରକାଶ ପାଇଲା ନୂତନ ଜୀବନ ସ୍ପନ୍ଦନ । ଅନ୍ଧାର ଭିତରେ ପାହାନ୍ତ ଉଷାର ସଙ୍କେତ ମିଳିଲା । ନଗରର ପ୍ରଜ୍ଞା ଓ ପଲ୍ଲୀର ହୃଦୟ ମିଶି ଦ୍ୟୋତିତ ହେଲା ନୂତନ ଶକ୍ତି । ଭାରତ ହେଲା ସ୍ୱାଧୀନ । ଇଂରେଜମାନେ ଏ ଦେଶ ଛାଡ଼ି ଚାଲିଗଲେ । ଅଥଚ ଏଠି ଛାଡ଼ି ଦେଇଗଲେ ସେମାନଙ୍କ ବୁର୍ଜ୍ୱାବାଦ । ଆମ ପରମ୍ପରା ଓ ବୁର୍ଜ୍ୱାବାଦ ହଜିଗଲା ଅନ୍ଧାର ଭିତରେ । ଆମେ ଆଉ ଆମର ନୁହୁଁ, ଆମ ସଂସ୍କୃତିର ନୁହୁଁ, ଆମ ସଭ୍ୟତାର ନୁହୁଁ । ଆମେ ସାହେବ ହେଲୁ, ବାବୁ ହେଲୁ । ପୁଣି ଆମେ ଭାରତର ହେବାକୁ ଚେଷ୍ଟା କଲୁ । ଏକ ବିଚିତ୍ର ଖେଚରୁଡ଼ି ଅବସ୍ଥା ସୃଷ୍ଟି ହେଲା । ଆମେ ସ୍ୱର୍ଗକୁ ଯାଇପାରୁ ନାହୁଁ କିମ୍ବା ମର୍ତ୍ତ୍ୟର ହୋଇପାରୁ ନାହୁଁ । ତ୍ରିଶଙ୍କୁ ପାଲଟି ଯାଉଛୁ ଧୀରେ ଧୀରେ । ସ୍ୱାଧୀନତା ଲାଭ ପରେ ଆମେ ସ୍ୱାଭିମାନ ହରାଇ ଦେଇଛୁ । ଆମ ଭିତରେ ଗୋଲାମ ରକ୍ତ । ଆମ ଚିନ୍ତାରେ ଗୋଲାମ ଚିନ୍ତା । ପାଶ୍ଚାତ୍ୟ ବସ୍ତୁବାଦର ସ୍ୱର୍ଣ୍ଣ ମୃଗ ପଛରେ ଆମେ ଗୋଡ଼ାଉଛୁ । ଆମେ ଇଂଲଣ୍ଡର ହେବାକୁ ଚାହୁଁଛୁ; ଚାହୁଁଛୁ ପୁଣି ଆମେରିକାର ହେବାକୁ । ରୁଷିଆର ହେବାକୁ ଚାହୁଁଛୁ; ଚାହୁଁଛୁ ପୁଣି ଚୀନ୍‌ର ହେବାକୁ । ଆମେ ଏକାଧାରରେ

ଗଣତନ୍ତ୍ରୀ, ସମାଜବାଦୀ ଓ କମ୍ୟୁନିଷ୍ଟ । ଅଥଚ ଆମେ କିଛି ହୋଇପାରୁ ନାହୁଁ । ଆମେ କେବଳ ଧାଉଁଛୁ—ଖୁବ୍ ଜୋର୍‌ରେ ଧାଉଁଛୁ । ପଲ୍ଲୀକୁ ନଗର କରୁଛୁ । ନଗରକୁ ଆହୁରି ଆହୁରି ସମ୍ପ୍ରସାରଣ କରୁଅଛୁ । ଗୋଟାଏ ଉପଭୋଗ ଲାଳସା ଆମକୁ କରିଦେଇଛି ମୋହଗ୍ରସ୍ତ । ସବୁଠି କ୍ଷମତାର ଦୌଡ଼ାଦୌଡ଼ି- କୁକୁଡ଼ା ଲଢ଼େଇ । ସବୁଠି ନୂତନ ଆଭିଜାତ୍ୟ ଓ ଅର୍ଥନୈତିକ୍ୟର ସଂଘର୍ଷ । ରାଜନୀତି ଏହି କ୍ଷମତା-ଦୌଡ଼ରେ ପ୍ରଧାନ ଅସ୍ତ୍ର । ଯିଏ ଏହାକୁ ଧରି ପାରିଲା ସିଏ ହେଲା ସର୍ବମାନ୍ୟ ।

ନଗରରୁ ରାଜନୀତି ବଢ଼ି ପାଣି ପରି ମାଡ଼ିଆସିଲା ପଲ୍ଲୀକୁ । ପଲ୍ଲୀ ମଣିଷ କୃତକୃତ୍ୟ ହେଲା । ପାଞ୍ଚବର୍ଷରେ ଥରେ ଲେଖା ଭାଭ ନଦ ଗର୍ଜିଲା । ପଲ୍ଲୀ-ମଣିଷ ପାଇଲା କେତେ ଆଦର, କେତେ ନମସ୍କାର । ଅଥଚ ଶକୁନ ପରି ରାଜନୀତି ଗ୍ରାସିଦେଲା ପଲ୍ଲୀର ପ୍ରୀତିକୁ, ମମତାକୁ । ପୁରୁଣା ସଂସ୍କୃତି ଲୋପ ପାଇଲା । ପୁରୁଣା ବସ୍ତ୍ର ଖସିଗଲା । ଭାଗବତ-ସଂସ୍କୃତି ଓ ଭାଗବତ ଘର ମଳିଆ ହୋଇଗଲା । ଗାଁର ପାରମ୍ପରିକ ପଞ୍ଚାୟତ ଭାଙ୍ଗିଗଲା । ନୂଆ ପଞ୍ଚାୟତ ଆସିଲା । ରାଜନୀତି ଭିତରେ ଏହି ପଞ୍ଚାୟତ ବ୍ୟବସ୍ଥା ହଜି ହରାଇଦେଲା । ଦଳକୁ ନେଇ ହେଲା ରାଜନୀତି । ଦଳ ମୁଖ୍ୟ । ଦଳ ଦଳ ଭିତରେ ହେଲା ସଂଘର୍ଷ । ଗାଁ ଫାଟିଲା । ସଦ୍ଭାବ ଗଲା । ଜାତି ମୁଣ୍ଡଟେକି ଉଠିଲା । ଏଇ ଗୋଳିଆପାଣି ରାଜନୀତିକୁ କଙ୍କଡ଼ା ପରି ସୁହାଇଲା । ଗ୍ରାମଗୋଷ୍ଠୀ ଯୋଜନାର ଯେଉଁ ସ୍ରୋତ ପଲ୍ଲୀ ଅଞ୍ଚଳକୁ ପ୍ରବାହିତ ହେଲା ତାହା କେତେକ ମୁଷ୍ଟିମେୟ ଲୋକଙ୍କୁ ଧନୀ କଲା । ବେକାର ଯୁବକମାନେ ମଧ୍ୟ ଆଉଜିଗଲେ ରାଜନୀତିଜ୍ଞ ଦଳ ପାଖରେ । କ୍ଷମତାସୀନ ଦଳରେ ବେଶି ସଂଖ୍ୟାରେ ସାମିଲ ହେଲେ । ଉଦ୍ଦେଶ୍ୟ ହେଲା ଉପଭୋଗ ଓ ଅର୍ଥପ୍ରାପ୍ତି । ଆଦର୍ଶ ରହିଲା ନାହିଁ, ନୀତି ରହିଲା ନାହିଁ । ଗୋଟାଏ ଉଦଗ୍ର ଉପଭୋଗ-ତୃଷ୍ଣା ଯେପରି ସେମାନଙ୍କୁ ଆଚ୍ଛନ୍ନ କରିଦେଲା । ସେମାନଙ୍କୁ ଲୋକେ ଭୟ କଲେ । ସେମାନଙ୍କ କଥା ନ ମାନିଲେ ପ୍ରଶାସନକଳ ଉପରେ ପ୍ରଭାବ ପକାଇ ଲୋକଙ୍କୁ ହଇରାଣ କଲେ । ସେମାନେ ସ୍ୱାଗତ କଲେ ଏକ ନୂତନ ଅର୍ଥବାଦକୁ । ରାଜନୀତି ଗାଁକୁ ଖଣ୍ଡ ଖଣ୍ଡ କଲା । କାରଣ ଅକାରଣରେ ହେଲା କଳିତକରାଳ । ଜାତି ଜାତି ଭିତରେ ହେଲା ସଂଘର୍ଷ । ଅତୀତର ସୂର୍ଯ୍ୟମୈତ୍ରୀ ସମ୍ପର୍କ ଲୋପ ପାଇଲା । ଗାଁରେ ହେଲା ମକଦ୍ଦମା । ତଥାକଥିତ ଶିକ୍ଷା ଯେତିକି ଯେତିକି ବଢ଼ିଲା ସେତିକି ସେତିକି ବିଶ୍ୱାସ କମିଲା, ପାରସ୍ପରିକ ସ୍ନେହ ଶ୍ରଦ୍ଧା କମିଲା । ଗାଁ ଭିତରେ ଭୋଜିଭାତରେ ଆଉ ଲୋକେ ଏକାଠି ବସିଲେ ନାହିଁ । ଘରଭିତର ବନ୍ଧରେ ମଧ୍ୟ ରାଜନୀତିର ଦଳାଦଳି । ଗାଁର ଯାବତୀୟ ଅନୁଷ୍ଠାନରେ ଦଳାଦଳି । ସଦ୍ଭାବ ଗଲାଣି, ମୈତ୍ରୀ ଗଲାଣି; ଅଛି କେବଳ ଦଳ । ଦଳର ଲୋକ ଦୋଷ କଲେ, ମର୍ଡ଼ର କଲେ ସେ ସାଧୁ । ନାରୀଧର୍ଷଣ କଲେ ସେ ନିର୍ମଳ ଚରିତ୍ର । ରାଜନୀତି ଯେମିତିକି ଗାଁକୁ ନେଇଯାଉଛି ରସାତଳକୁ । ପଞ୍ଚାୟତ

ନିର୍ବାଚନଠାରୁ ଆରମ୍ଭ କରି ସାଧାରଣ ନିର୍ବାଚନ ପର୍ଯ୍ୟନ୍ତ ସର୍ବତ୍ର ଦଳାଦଳି ଓ ସଂଘର୍ଷ । ଗଣତନ୍ତ୍ର ପାଲଟି ଯାଇଛି ରଣତନ୍ତ୍ର । ଯିଏ ଏଇ କେତେବର୍ଷ ଭିତରେ ଅଜସ୍ର ଅର୍ଥର ଅଧିକାରୀ ହୋଇପାରିଛି, କୋଠାବାଡ଼ି ଗାଡ଼ି ଇତ୍ୟାଦି କରିପାରିଛି ସିଏ ହୋଇଯାଇଛି ମୁଖ୍ୟ । ଶହେ ଜୁହାର ଧନକୁ । ଏଇ ଜୁହାରଟା ପ୍ରକୃତରେ କରାଯାଉଛି କ୍ଷମତାକୁ, ଅର୍ଥବାଦକୁ । ବେଣ୍ଡି ଗୁଣ୍ଡି ଶେଉଳ ଧରିବା ନ୍ୟାୟରେ ଏଇ ନୂତନ ଅଭିଜାତ ମଣିଷ ସାଧାରଣ ଗ୍ରାମ୍ୟ ମଣିଷଙ୍କୁ ଚା, ସିଗାରେଟ, ପାନ ଅଥବା ଅନ୍ୟକିଛି ଦେଇ ହାତ କରିନିଏ ଓ ନିଜର ଉଦ୍ଦେଶ୍ୟ ସାଧନ କରେ । ଗାଁରେ ଜାତିପ୍ରଥାର ଅବସାନ ଘଟିଆସିଥିଲା । ଏବେ ପୁଣି ତାହା ମୁଣ୍ଡଟେକି ଉଠୁଛି । ପୁଣି ମୁହାଁଇ ଯାଉଛି ରକ୍ତାକ୍ତ ସଂଘର୍ଷ ଭିତରକୁ । କେହି କାହାରିକୁ ମାନୁନାହାନ୍ତି । ଗୋଟାଏ ଅସହଣି ଭାବ ଯେମିତିକି କଳାବାଦଲ ପରି ନଇଁଆସିଛି ଗାଁରେ । ଅଭିଜାତ ମଣିଷ ଗାଁରୁ ଆସି ନଗରରେ ଆସ୍ଥାନ ଜମେଇ ରହୁଛି । ଗାଁକୁ ସେ ଆଉ ଯାଉନାହିଁ । ଯେଉଁ କେତେକ ଉପଯୋଗୀ ମଣିଷ ରହୁଯାଉଛନ୍ତି ସେମାନଙ୍କ ହାତରେ ଗାଁ ରହୁଯାଉଛି । ଗାଁର ମୁକ୍ତି କାହିଁ ? ଗାଁ କଣ ନୂତନ ସ୍ୱପ୍ନ ଦେଖିପାରିବ ନାହିଁ ? ଗାଁର ସଂସ୍କୃତି କଣ ପ୍ରତିଷ୍ଠା ଲାଭ କରିବ ନାହିଁ । ରାଜନୀତିର ହାତବାରିସି ହୋଇ କେତେଦିନ ଆମେ ଆପଣା ଆପଣା ବୁକୁରେ ଛୁରୀ ଭୁସିବା ? କେତେଦିନ ଭୋଗବାଦ ଆଉ ଅର୍ଥବାଦର ଦାସ ହୋଇ ନିଜକୁ ହରାଇବା ?

ଏହାହିଁ ଆଜିର ପ୍ରଶ୍ନ । ଗାଁ ରହିଲେ ଦେଶ ରହିବ ଓ ଆମେ ରହିବା । ଏକଥା ଆମେ କଣ ଚିନ୍ତା କରିବା ନାହିଁ ?



# କଅଁଳ ବୁଢ଼ୀ

କଅଁଳ ବୁଢ଼ା କଥାଟା ଆମ ଗାଁ ଗହଳରେ ଖୁବ ଜଣାଶୁଣା । ଲୋକମାନଙ୍କର ଅନୁଭୂତି ଭିତରୁ ଇମିତି କେତେ କେତେ ଢଗଢମାଳି ପ୍ରବାଦ ପ୍ରବଚନ ଯୁଗ ଯୁଗ ଧରି ଆମ ସାମାଜିକ ଜୀବନରେ ପ୍ରଭାବ ପକାଇ ଆସିଅଛି । ଏବେ ଶିକ୍ଷା ଆଉ ସଭ୍ୟତାର ବିକାଶ ଫଳରେ ଲୋକ ସଂସ୍କୃତିର ପରିବର୍ତ୍ତନ ଘଟି ଗଲାଣି । ନୂଆ ନୂଆ ପ୍ରବାଦ ପ୍ରବଚନ କିମ୍ବା ଢଗଢମାଳି ସୃଷ୍ଟି ହେଉ ନାଇ । ନୂଆ ଯୁଗରେ କିଏ ଆଉ ଢଗଢମାଳି ମନେ ରଖୁଚି ? ତଥାପି ଗୋଟିଏ ଗୋଟିଏ ଢଗଢମାଳି ପ୍ରବାଦ ପ୍ରବଚନ, ଇମିତି ମରମ କଥା କହେ ଯେ, ସେଇ ଜବର ମଣିଷର ଅଷ୍ଟାଙ୍ଗ ଥିର ଦୋହଲାଇ ଦିଏ । ଭିତରଟାକୁ ଯେମିତିକି ଛିନ୍ନ ଛିନ୍ନ କରି କାଟି ପକାଏ । ଇମିତି ଗୋଟାଏ ପ୍ରବାଦ ବାକ୍ୟ—'କୋମଳ ବଚନ ତିଳକ ସରୁ/ଏମାନେ ଝଟନ୍ତି, ଠକଙ୍କ ଗୁରୁ ।' ଲୋକ-ସମାଜର ସାଧାରଣ ମଣିଷ କେତେ ଅଭିଜ୍ଞତାରୁ ଏକଥା ନ କହୁଛି ! କିଏ କହେ କଅଁଳ ବୁଢ଼ାକୁ ପରତେ ନାଇ । କଅଁଳିଆ କଥା ଭିତରେ କିଛି ମାରୁ ଥାଏ ବୋଲି ଲୋକଙ୍କ ଧାରଣା । କାହିଁକି କେଜାଣି କଅଁଳ ବୁଢ଼ାଙ୍କ ପ୍ରତି ଇମିତି ଗୋଟାଏ ଧାରଣା ସୃଷ୍ଟି ହୋଇଯାଇଛି ତାର କାରଣ ଖୋଜି ପାଇବା ମୁସ୍କିଲ । କିଏ କାହିଁକି ଇମିତି ଗୋଟାଏ କଥା କେବେ କହିଲା ତାର ଇତିହାସ ଖୋଜିଲେ ମିଳିବ ନାଇ । କଥା ତ କଥା । ତାର ପୁଣି ଗୋଟାଏ ଇତିହାସ କ'ଣ ? ଯେବେଠାରୁ ମଣିଷ କଥା କହି ଶିଖିଲାଣି ସେବେଠାରୁ ସେ କେତେ ନାଇ କେତେ କଥା କହି ଆସିଲାଣି । କହିବା ଯେମିତି କି ସରୁ ନାଇ କି ସରିବ ନାଇ । ହୁଏତ ମଣିଷ ଜାତିଟା ସମୂଳେ ଲୋପ ପାଇଗଲେ କଥା କହିବା ସରିଯାଇପାରେ । ମଣିଷର ଧାର କମୁ ଛିଣ୍ଡିଯିବ ନାଇ କି କଥାର ଧାର ମଧ୍ୟ ବନ୍ଦ ହୋଇଯିବ ନାଇ ।

କହି ଜାଣିଲେ କଥା ସୁନ୍ଦର, ନାଇ ଜାଣିଲେ ମଥା ସୁନ୍ଦର । ସମସ୍ତେ, କହନ୍ତି ଯେ ହେଲେ ସବୁ କହିବାରେ ବାଗ ସାଗ ନଥାଏ । ଯିଏ କଥାରେ ନଥା ଲଗାଇ ବାଗେଇ ସାଗେଇ କହେ ସେଇ ଏକା ବାହାଦୁରୀ ନିଏ । ଛୋଟିଆ କଥାକୁ ମୋଟା କରିଦିଏ । ମୋଟା କଥାକୁ ସରୁ କରିଦିଏ । କଥାରେ ପୁଣି କଥା ଅଛି । ଏଇ କଥାରେ ଅମୃତ ଅଛି, ବିଷ ଅଛି । କିଏ ପୁଣି କଥା କହି ନିଆଁ ଲଗେଇ ଦେଇପାରେ ତ ଆଉ କିଏ ପଥର ତରଳେଇ ଦେଇପାରେ । କିଏ ଫୁଲ ଫୁଟେଇ

ଝିଏ ତ ଅନ୍ୟ କିଏ ଫୁଲ୍ ଫଳ ଝଡ଼େଇ ଦିଏ । କିଏ ପୁଣି ସ୍ନେହ ପ୍ରେମର ଝରଣା ଝରାଇ ଦିଏ ତ ଆଉ କିଏ ମାଟି ଭିତରୁ ଜଳ ବାହାର କରିଦିଏ । କିଏ ହସାଏ ତ କିଏ କନ୍ଦାଏ । କେହି କେହି କାନ ଧରିଲେଇ, ମୁଣ୍ଡ ନୁଆଁଇ, ନିଜକୁ ଏକାନ୍ତ ଅନୁଗତ ଆଉ ଗୋଟାପୁଣି ତୁଳସୀ ରୂପେ ପ୍ରତିପାଦିତ କରି କଅଁଳେଇ କଥା କହୁଥିବେ ଯେ ନ ଜାଣିଥିବା ଲୋକେ ଭାବିବେ ସିଏ ମଣିଷ ପରି ମଣିଷଟିଏ । ସିଏ ମାଛିକୁ ମ' କହେ ନାଇ । ସତେଯେମିତି ସିଏ ସୁଧାର ଗାଈଟିଏ । କାର୍ଯ୍ୟ ହାସଲ କରିବାକୁ ସିଏ ଯେ ଇମିତି କହେ; ସେ କଥା କିଏ ବୁଝିବ ବା କପରି ? କଅଁଳ କଥାରେ ସିଏ ତମକୁ ଇମିତି ଭୁଲେଇ ଦେଇଥିବ ଯେ ତମେ କଥାର ରହସ୍ୟକୁ ଜାଣିବ କେମିତି ?

କଅଁଳକୁହା ଶବ୍ଦଟା କେମିତି କିଏ ବାହାର କଲା କେଜାଣି ? ଯିଏ ଏଇ ଶବ୍ଦଟାକୁ ଉଦ୍ଭାବନ କରିଥିବ ସିଏ କେତେ ଅସାଧାରଣ ହୋଇ ନ ଥିବ ! କେତେ କେତେ ଅନୁଭବ ଆଉ ଅଭିଜ୍ଞତାରୁ ସିଏ ଏଇ ଶବ୍ଦଟାକୁ ବାହାର କରିଥିବ । ତାପରେ କାନବାଟେ ଏଇ କଥାଟା ବୁଲିଯାଇଥିବ ରାଇଜର ଏ ମୁଣ୍ଡରୁ ସେ ମୁଣ୍ଡକୁ । ଏବେ ଆମେ ଏଇ କଥାଟାକୁ କେତେ କେତେ ଜାଗାରେ ନ ଭେଟୁଛୁ ? କିଏ ଖୋଜୁଛି ଏହାର ଇତିହାସ ? ଖୋଜିଲେ କଣ ଏହାର ଇତିହାସ ମିଳିବ ? ତଥାପି ଖୋଜା ଚାଲିଛି । ଲେଖା ଚାଲିଛି ଇତିହାସ । କିଛିଦିନ ପରେ ସେଇ ଇତିହାସ ପୁଣି ବଦଳି ଯାଉଛି । କାହିଁକି ନା ମଣିଷ ବଦଳିଯାଉଛି । ମଣିଷର ରୁଚି ମଧ୍ୟ ବଦଳୁଛି । ଯାହାକୁ ଯେମିତି ସୁହାଇଲା ସିଏ ସେମିତି ଇତିହାସ ଲେଖୁଛି । ରାଜାକୁ ଖୁସି କରିବା ପାଇଁ ସ୍ତୁତି କରାଯାଉଥିଲା ପରି ଏବେ କ୍ଷମତାକୁ ସନ୍ତୁଷ୍ଟ କରିବା ପାଇଁ ଇତିହାସ ଲେଖାଯାଉଛି । କିଏ କହୁଛି ଆର୍ଯ୍ୟମାନେ ଏଇ ଭାରତ-ବର୍ଷରେ ଆବିର୍ଭୂତ ହୋଇଥିଲେ । ଆଉ କିଏ କହୁଛି ୟୁରୋପରୁ ଆସିଥିଲେ । କିଏ କହୁଛି ଆର୍ଯ୍ୟମାନେ ବାହାରୁ ଆସି ଦ୍ରାବିଡ଼ମାନଙ୍କୁ ତଡ଼ି ଦେଲେ ଦକ୍ଷିଣକୁ । ଆଉ କିଏ କହୁଛି ଇଏ ସବୁ ଝୁଠା । କିଏ କହୁଛି ଏଇଠି ଗୋଟାଏ ମନ୍ଦିର ଥିଲା, ଏଇଠି ତହିଁ ଦେବତା ଥିଲେ, ଏଇଠି ଥିଲା ରାଜା ନଅର । ଆଉ କିଏ କହୁଛି ଇଏ ସବୁ ଫାଲ୍‌ତୁ କଥା । ଇମିତି ସବୁ କଥାରେ ଇତିହାସର ଝଡ଼ । ସତ୍ୟ ହଜେଇ ଯାଉଛି । ଇତିହାସ ହୋଇଯାଉଛି ତହିଁ ଗଢ଼ୁ ଗଢ଼ୁ ମାଙ୍କଡ଼ । ନାନା ମୁନିଙ୍କ ନାନା ମତ । ଜଣେ ଗୋଟାଏ କଥା କହୁଲଣି ତ ଆଉ ଜଣେ ତାକୁ କାଟି ଅନ୍ୟ ଗୋଟିଏ କଥା କହୁଲଣି । ସତେ ଯେପରି ମନେ ହେଉଛି ଆମର ମୋଟେ ଇତିହାସ ନ ଥିଲା । ହାୟ ହାୟ ! ଏଡ଼େ ବଡ଼ ଦେଶ, ଏତେ ବଡ଼ ପ୍ରାଚୀନ ସଂସ୍କୃତି; ଯାର ପୁଣି ଇତିହାସ ନାହିଁ ? କିଏ କହିବ ?? ଇଏତ ମାର୍କାମରା ବଡ଼ ବଡ଼ ଇତିହାସ-ପଣ୍ଡିତଙ୍କ ଲଢ଼େଇ । ଆମ ତମ ପରି ଲୋକେ କଣ କହିବେ ? ଆମ କଥା କିଏ

ଶୁଣିବ ? ଇଏ ଯୁଗ ତ ମୋହରମୟ ଯୁଗ । ଯା' ଦେହରେ ମୋହର ମରା ହୋଇଛି ସିଏ ଯାହା କହିବ ତାହାହିଁ ହେବ ବେଦର ସାର । ଯାହାର ମୋହର ନାହିଁ ସିଏ ତ ସାଧାରଣଙ୍କ ଭିତରେ ଜଣେ । ସିଏ ଅନାମିକା । ସିଏ କ'ଣ ଭ'ଣ କହିଲେ ତା' କଥା ଶୁଣିବ କିଏ ? ଆଜି କାଲି ତ ସବୁ କଥାରେ ମୋହର । ରାଜନୀତିରେ ମୋହର । ସମାଜ ନୀତିରେ ମୋହର । ଇତିହାସରେ ମୋହର । ବିଜ୍ଞାନରେ ମୋହର । ସାହିତ୍ୟରେ ମୋହର । ଧର୍ମରେ ମୋହର । ପ୍ରଶାସନତନ୍ତ୍ରରେ ମୋହର । ସେବାରେ ମଧ୍ୟ ମୋହର । ସବୁଆଡ଼େ ଗୋଟାଏ ଗୋଟାଏ ଭିନ୍ନ ଭିନ୍ନ ପୋଷାକ । ଏଇ ମୋହର ନ ଥିଲେ, ପୋଷାକ ନ ଥିଲେ କିଏ କାହାକୁ ଚିହ୍ନିବ ? କିଏ କାହାକୁ ପଚାରିବ ? ମୋହରହିଁ ଜଣକୁ ଅନ୍ୟ ଜଣକଠାରୁ ନିଆରା କରି ଜଣେଇ ଦିଏ । ମୋହର ଥିବା ଲୋକ ମୋହର ନ ଥିବା ଲୋକଠାରୁ ଭିନେ ବାରି ହୋଇ ପଡ଼େ । ମୋହର ଲଗା ଲୋକର କଥା ଓଜନଥା ଜଣାଯାଏ । ମୋହର ନଥିବା ଲୋକଗୁଡ଼ାକ ତ ହାଲୁକା । ଫୁଙ୍କି ଦେଲେ ଉଡ଼ିଯିବେ । ସେମାନଙ୍କୁ କିଏ ପଚାରେ ? ସେମାନଙ୍କ କଥାର ଗୋଟାଏ ଦାମ୍ କଣ ??

ଓହୋ ! ତମେ କହୁଛ ଯେ ଏଇ ମୋହର ନଥିବା ଲୋକଗୁଡ଼ାକ ଅସହୁଣି । ଏଇଥିପାଇଁ ସେମାନେ ଏଣୁତେଣୁ ବକି ଯାଉଛନ୍ତି । ହେଇଥିବ । ତେବେ ସେମାନେ କଣ କାହା ସିଂହାସନ ମାଡ଼ିବସିବାକୁ ଧାଇଁ ଯାଉଛନ୍ତି କି ? କାହା ଭାଗ ଛଡ଼େଇ ନେବାକୁ ମାଡ଼ି ଯାଉଅଛନ୍ତି କି ? ସେମାନଙ୍କର ତ ମୋହର ନାହିଁ । ତେଣୁ ସେମାନେ ମାସ୍—ଅନେକ । ଏଇ ଯେଉଁ ମୋହରବାଲା, ସେମାନେ ପ୍ରତ୍ୟେକ ଭିନ୍ନ ଭିନ୍ନ । ପ୍ରତ୍ୟେକ ଏକ, ଏକ । ବାହାରକୁ ସେମାନେ ସମସ୍ତଙ୍କ ଭିତରେ ଥାଆନ୍ତି ବୋଲି ଜଣାଗଲେ ମଧ୍ୟ ଭିତରେ ଭିତରେ ଘୋର ଏକୁଟିଆ । କାରଣ ସେମାନେ ସ୍ୱାର୍ଥର ମଣିଷ, ପଦପଦବୀର ମଣିଷ । ସେମାନଙ୍କ ଭିତରେ ଅହରହ ଚାଲିଛି ମୁଁ ପଣିଆର ଖେଳ । ସବୁଠି ରାଜନୀତିର ଛକାପଞ୍ଝା । ଜଣେ ଆଉଜଣଙ୍କ ଉପରେ ଚଢ଼ିଯିବାକୁ ତିଆର । ଏଇ ମୋହରମରାଯାକ ସବୁବେଳେ ସୁବିଧା ଜଗି କାମ କରନ୍ତି । ଯୁଆଡ଼େ ବର୍ଷା ସିଆଡ଼କୁ ଛତା ଦେଖାନ୍ତି । ଏଥିରେ ତମେ କୋଉ ଇତିହାସ ଖୋଜିବ ? ଏବେ ତ ଅଟକାଗି୍ଣ ବନସ୍ତ ଭିତରକୁ ପଶିଯାଉଛୁ ହାରା ନାଡ଼ଠା । ଭିତରେ ଖାଲି ମେଞ୍ଚା ମେଞ୍ଚା ଅନ୍ଧାର । ସମସ୍ତେ ଅଣ୍ଡାଳି ହେଉଛନ୍ତି । ଭୂଆଁ ବୁଲୁଛନ୍ତି । କେହି ବାଟ ପାଉନାହାନ୍ତି । ବୁଲନ୍ତୁ ଯିଏ ଯେତେ ପାରୁଚ । ଆରେ ତମଟା, ବୁଲି ବୁଲି କରି ସେଇ ଅଗଣା । ମନ ଘର ଧରିଗଲେ ବଳେ ଅସିବ ହେଇ ନାଗାକୁ । ହୋ ଭଗତେ ! ମୂଳକୁ ଆସ । ମୂଳକୁ ଛାଡ଼ି ଅଗକୁ କିଆଁ ଡେଇଁଛ । ହାତଗୋଡ଼ ଭାଙ୍ଗିଯିବ, ମୁଣ୍ଡ ଫାଟିଯିବ; ହୁସିଆର ।

ଛାଡ଼ ଭାଇ, ଏସବୁ କଥାରେ ମୁଣ୍ଡ ଖେଳେଇ ଲାଭ କଣ ? ଏଥର ମୂଳକୁ ଆସନ୍ତୁ । ଏକାଠି ବସିବା । ଉପଦ କଥା ହେବା । ତା ପରେ ସେଥି ବାଟ ଧରିବା । ଏକାଠି ବସିଲେ ସିନା କଥା କହି ଶିଖିବା । କେମିତିକା କଥା ? କଣ କଅଁଳ କରି କହିବ ନା ଟାଣ କରି କହିବ ? ନା ଏଇ ଦଇଟାର ମଝିମଝିକିଆ କଥା କହିବ ? ଟାଣ କରି କହିଦେଲେ ଲୋକେ ଫିଙ୍ଗିକି ଯିବେ । ସେମାନେ ଭାବିବେ ତମେ ଭାରି ପାରିବାର ଲୋକ । ତମେ ଯାହାପାରି ତାହା କହିପାର । ତମେ ଗୁଳିଲେ ଭୂଇଁ ଦୁଲୁକିଉଠେ । ଗର୍ଭିଣୀ ଗାଈ ବାଟ ଛାଡ଼ିଦିଏ । ସମୁଦ୍ର ଗର୍ଜିଉଠେ । ଅନ୍ୟମାନେ ତମକୁ କରପଞ୍ଝ ଯୋଡ଼ି ରହିବେ । କ୍ଷମତା ନଥାଇ, ଉଚ୍ଚପାହିଆ ନଥାଇ, କେହି ଟାଣ କରି କଥା କହିପାରେ ନାଇ । ଯିଏ ଯେତେବେଶୀ କ୍ଷମତାକୁ ଜାବୁଡ଼ି ଧରିଥାଏ, ପାହିଆ ମୋହରେ ପଡ଼ିଥାଏ, ସିଏ ସେତେବେଶୀ ଟାଣ ଟାଣ କଥା କହେ, ଠୋସ୍ ଠାସ୍ କଥା କହେ । ଏମିତିକା ଲୋକ ଆଗପଛ ବିଚାର କରନ୍ତି ନାଇ । ନିଜକୁ ସେମାନେ ସବୁଠାରୁ ସର୍ବଶ୍ରେଷ୍ଠ ବୋଲି ଜାହିର କରନ୍ତି । ଅଥଚ ଭିତରେ ଭିତରେ ସେମାନେ ନାନା ବାଗରେ ଦୁର୍ନୀତି କରନ୍ତି । ବାହାରକୁ ଆଏ ଗୋଟାଏ ଫଁ । ଏଇ ଫଁ ଯୋଗୁ ସେମାନେ ଅନ୍ୟମାନଙ୍କୁ ପୋକମାଛି ପରି ଦେଖନ୍ତି । ସେମାନଙ୍କ କଥା ଶୁଣିଲେ ତମ ହାଡ଼ ଭିତରୁ ଦୋରୁଅ ନିକଳି ଯିବ, କାନମୁଣ୍ଡ ଭାଁ ଭାଁ ହୋଇଯିବ । ଏପରି ଲୋକଗୁଡ଼ାକ ସବଜାନ୍ତା । ଏମାନେ ଗଢ ଆଉ ଗାଢର ମଣିଷ, ଉପର ଥାକର ମଣିଷ । ଏମାନଙ୍କ ମୁହଁଟା ଶାଣଦିଆ । ମହାକାଳ ଫଳ ପରି ବାହାରକୁ ଏମାନେ ସୁନ୍ଦର ଦିଶନ୍ତି । ଭିତରେ କନ୍ଥ ପୋଡ଼ା ଅଙ୍ଗାର । ତଥାପି ଏମାନଙ୍କ କଥା ମାନିବାକୁ ହୋଇଥାଏ ।

ଉପରବାଲାଙ୍କ କଥା ନ ମାନିଲେ ତଳବାଲାଙ୍କର ଗତ୍ୟନ୍ତର ନାଇ । ତଳବାଲାଏ ଖାଲି ଟିକିଏ ଟିକିଏ କଥାରେ ଗୁଜୁବୁଜୁ ହୁଅନ୍ତି, କହିବାପାଇଁ ପାଟି ପାକୁ ପାକୁ କରନ୍ତି । ହେଲେ ଉପରବାଲାଙ୍କ ଗୋଟିଏ ଚୋଡ଼ରେ ସମସ୍ତେ ଚୁପ୍ ହୋଇଯାଆନ୍ତି । ଆରେ ବାପ୍ ! ତମେ ଉପରବାଲାଙ୍କ ବିରୋଧରେ କଣ କିଛି ପଦେ ଅଧେ କହିଦେବାକୁ ସାହସ କରୁଛ । ଜାଣି ଜାଣି ହାଣ ଭୁରୁଡ଼ି ବେକକୁ ଆଣୁଛ । କୁହ, କୁହ । ବଳେ ଠିକଣେ ଶିଖିବ ଯେ ! ସେତେବେଳକୁ ଆଉ ବୁଦ୍ଧି ଦିଶିବ ନାଇ । ଚାରିଆଡ଼ୁ ଅନ୍ଧାର ମାଡ଼ିଆସିବ । ତମେ ତଳିଆ ମଣିଷଟିଏ ହୋଇ ମହାରଜାଙ୍କୁ ଉତ୍ତର ଦେବ ? ପ୍ରଶ୍ନ ପଚାରିବ ?? ତମେ ଜଡ଼ ଭରତ ଭଳିଆ ହେଲେ ଯାଇଁ ପ୍ରଶ୍ନ ପଚାରି ପାରିବ, ଠୋସ୍‌ଠାସ୍ କହିଦେଇ ପାରିବ । କାନ୍ଧ ଉପରେ ଚଢ଼ିଥିବା ମହାରାଜା ଢଳପଡ଼ିବ ତଳକୁ । ତମ ଗୋଡ଼ଧରି କ୍ଷମା ମାଗିବ । ତମେ ଏବେ କୋଉ ଜଡ଼ ଭରତ ଯେ ତମ ଦ୍ୱାରା ଏହା ସମ୍ଭବ ହୋଇପାରିବ ?

ଆଉ କେତେକ ଲୋକ ଅଛନ୍ତି ସେମାନେ କହନ୍ତି ଯେ ହେଲେ ଖୁବ୍ ହୁସିଆର ହୋଇ କହନ୍ତୁ । ସେମାନଙ୍କ କଥାରେ ସାପ ମରିବ ନାଇ କି ବାଡ଼ି ଭାଙ୍ଗିବ ନାଇ । ଆରେ ବାବା, ସାପକୁ ଯଦି ବାଡ଼େଇବାକୁ ଚାହୁଁଛ ତେବେ ଭଲ କରି ବାଡ଼େଇ ଦିଅ । ଯେତିକି ବାଡ଼ିଟା ଭାଙ୍ଗିଯାଉ ଅଥବା ରହୁ । ସାପ ଦରଦାଣ୍ଡିଆ ହୋଇ ପଳାଇଗଲେ ସେତିକି ତ ତମପାଇଁ ମହା ବିପଦ । ଏଇ ମଝି ମଝିଆ ଲୋକଙ୍କ ଦଶା ସବୁବେଳେ ପଥର ତଳେ । ସେମାନେ କାହାର ହୋଇ ପାରନ୍ତି ନାଇ । ନା ବାପାର, ନା ମାଆର ? ତେଣୁ ତ କହୁଛି ଠୋ ସ୍ଠୋସ୍ କଥାଟା ଛାଡ଼, ମଝି ମଝିଆ କଥା ଛାଡ଼, ଚଳେଇ ନେବା କଥା ଛାଡ଼ । ବଅଁ କେଇ କହି ଶିଖ । ଦେଖିବ, ସବୁ କାମ ଆପେ ଆପେ ହାସଲ ହୋଇଯାଉଛି । ସବୁଠି ତମର ଜିତାପଟ ହୋଇଯାଉଛି । ଭାଗବତ କବି କହୁଛନ୍ତି 'ଅମୃତ ବିନୟ ବଚନ/ କହି ତୋଷିବ ପ୍ରାଣୀ ମନ ।' 'ଧନ କାର୍ପଣ୍ୟ ସେବା ଫଳେ/କେବା ଅସାଧ୍ୟ ମହୀତଳେ' । ଯେତେ ପାରୁଛ ଶକ୍ତି ମତେ ଅମୃତ ବଚନ କହିବା ପାଇଁ ସାଧନା କର । ବିନୟ ହୋଇ କୁହ, କାନଯୋଡ଼ିନେଇ କୁହ, ମୁଣ୍ଡ ନୁଆଁଇ କୁହ । ଇମିତି କହିବ ଯେ ଯେମିତି ଦ କାନରୁ ଝନ୍ନ କାନ ହେବନାଇ । ଖୁବ୍ ଧୀରେ ଧୀରେ କହିବ । ତମ କଥା ଶୁଣିଲେ ଲୋକେ ଭାବିବେ ଯେ ତମେ ଜଣେ ମହାପୁରୁଷ । ତମେ ଖୁବ୍ ବଡ଼ ଜ୍ଞାନୀ । ଜ୍ଞାନ ଫଳ ତମ ଉପରେ ଏତେ ଲଦି ହୋଇ ଯାଇଛି ଯେ ତମେ ନଇଁ ଯାଉଛ । ନଇଁଯାଅ; ଭଲକଥା । ତେବେ ବେଶୀ ନଇଁଯିବ ନାଇଁ; ଡାଳ ଭାଙ୍ଗି ପଡ଼ିବ । ତମ ନଇଁବା ସରିଯିବ । ଅମୃତ ବଚନ ଯଦି ତମ ଅନ୍ତର ଭିତରୁ ଆସେ ତେବେ ଖୁବ୍ ଭଲ କଥା । ତମେ ଆପେ ଆପେ ବିନୟୀ ହୋଇଯିବ । ତମ ଭିତରେ ତୋର ମୋର ଭାବ ରହିବ ନାହିଁ । ସମସ୍ତଙ୍କ ପ୍ରତି ତମର ସ୍ନେହ ମମତା ଓଜାଡ଼ି ହୋଇ ପଡ଼ିବ । ଗୋଟାଏ ଦିବ୍ୟ ଆନନ୍ଦ ତମକୁ ଉଲ୍ଲସିତ କରିଦେବ । ଅନ୍ୟର ଦୁଃଖ ସେତେବେଳେ ଯାଇଁ ତମକୁ ଆଘାତ ଦେବ । ତାହାର କିଛି ଉପକାର କରିପାରିଲେ ତମେ ଆନନ୍ଦ ପାଇବ । ଏଇଆ ନହୋଇ ଯଦି ତମେ ଛଳନା କରି ବିନୟୀ ହେବ, କଅଁଳ କଥା କହିବ; ତମେ ଧରା ପଡ଼ିଯିବ । ଗଧିଆ ଛାଲ ପିନ୍ଧି ତମେ ବାଘର ପ୍ରକୃତିକୁ କଣ ଗୁଡ଼ିଦେଇ ପାରିବ ? ସୁନା କଙ୍କଣ ଦାନ କରୁଛ କହି, ଚାନ୍ଦ୍ରାୟଣ ବ୍ରତ ପାଳୁଛ ଓ ତୁଳସୀପତ୍ର ଖାଉଛ ବୋଲି କହି, ତମ ଅସଲ ପ୍ରକୃତିକୁ କଣ ଗୁଡ଼ିଦେଇ ପାରିବ ? ତମେ ସାଧୁ ଅଉ ସନ୍ଥଠାଟ ବୋଲି କହି କେତେ କାଳ ଲୋକଗୁଡ଼ାକୁ ଅନ୍ଧାର ଭିତରେ ରଖିପାରିବ ? ତମେ ଭାବୁଛ ଯେ ତମକୁ କେହି ଜାଣିପାରୁ ନାହାନ୍ତି । ତମ ଅଭିନୟ ଠିକ୍ ଠିକ୍ ଚାଲିଛି । ନା, ନା, ଏଇଟା ଠିକ୍ ନୁହେଁ । ତମକୁ ସମସ୍ତେ ଜାଣି ପାରୁଛନ୍ତି । ତୁଣ୍ଡ ଖୋଲି କେହି କହୁନାହାନ୍ତି । ତମକୁ ପ୍ରାଣେ ଭୟ । ତମେ କେତେବେଳେ

ଲୁଚି ଲୁଚି ତାଙ୍କୁ ପଛରୁ ଠେଲି ଦେବ କୂଅ ଭିତରକୁ, ତାଙ୍କର ଆଖି ଫୁଟେଇ ଦେବ, ତାଙ୍କର ହାତ ଗୋଡ଼ କାଟି ଫିଙ୍ଗି ଦେବ, ସେଇଥିପାଇଁ ତମକୁ କେହି କିଛି କହନ୍ତି ନାଇ। ତମେ କଅଁଳ କୁହାଯାଇ ପୁନାମିଶଗ ପରି ଭୁଲେଇ ପାର, କାଳନେମୀ ସନ୍ନ୍ୟାସୀ ପରି ଭୁଲେଇ ଦେଇପାର। ତମେ ସବୁ କର ଯେ ହେଲେ ପଛକୁ ନଜେ ମର।

ଏଇ ପୁ କଅଁଳକୁହା ଦଳ—ସେମାନଙ୍କ ପ୍ରତି ସାବଧାନ ରହିବା ନହାତି ଜରୁରୀ। ସାବଧାନ ନ ହେଲେ ସେମାନଙ୍କ ଜାଲରେ ପଡ଼ିବ। ତମ ହାତଗୋଡ଼ ଅବଶ ହୋଇଯିବ। ସେମାନେ ଲୁଚି ଲୁଚି ବୁଲନ୍ତି। ବାହାରକୁ ସେମାନଙ୍କର ଗୋଟାଏ ରୂପ। ଭିତରେ ଥାଉ ଗୋଟାଏ। ସେଇ ଭିତର ରୂପଟା ଅସଲି। ସେମାନେ ଜମା ଠୋସ୍‌ଠାସ୍ କହିବେ ନାଇ। ତମେ ଯେତେ ଟାଣ କରି କହିବ ସେମାନେ ମରୁଭୂମିର ଓଟ ବାଲିଝଡ଼ ଦେଖି ଶୋଇଗଲା ପରି କାନ ଝାଉଁଳେଇ ଦିଅନ୍ତି। ଭିତର ଉଦ୍ଦେଶ୍ୟକୁ ସେମାନେ ଇମିତି ହାସଲ କରନ୍ତି ଯେ ତମେ ଆଦୌ ତାର ଟେର ପାଇବ ନାଇ। ସେମାନେ ଯେତେବେଳେ ସ୍ତୁତି ସ୍ତବ କରନ୍ତି ତାର ଆଉ ଅଳଙ୍କାର ରହେ ନାଇ। କେଉଁ ଭକ୍ତ ବି ଭଗବାନଙ୍କୁ ଏପରି ସ୍ତୁତି କରିପାରୁ ନଥିବ। ସେମାନଙ୍କ ଅଭିଧାନରେ କିଛି ଅସମ୍ଭବ ନଥାଏ। ଅନ୍ୟମାନଙ୍କୁ ଖାଲରେ ପକାଇ ସେମାନେ ମଜା ଦେଖନ୍ତି। ବୁଡ଼ିଯାଉଥିବା ଲୋକକୁ ଦେଖି ପୈଶାଚିକ ହସିମାସ ପାଆନ୍ତି। ଠୋସ୍‌ଠାସ୍ କହୁଥିବା ଲୋକଙ୍କଠାରୁ ଏମାନେ ଯେ କେତେ ମାଗମୂନ ତାହା ସହଜରେ ଖବରହୁଏ ନାଇ। ଏମାନେ ଭକ୍ତ ସାଜି ବାବା ଆଉ ମାତାଙ୍କ ନାମ ନେଇ ଏମିତି କଅଁଳ କଥା କହିବେ ଯେ ତମେ ଭାବିବ ଏମିତିକା ଭକ୍ତ କୋଟିକରେ ଗୋଟିଏ। ବଚନ ସବୁ ଚିଲିକ ଲମ୍ବା, କଅଁଳ କଥା। ଭିତରେ ଯେ ସଇତାନ ଲୁଚି ରହିଥାଏ; ତମେ ଜାଣିବ କେମିତି? ସେମାନଙ୍କୁ ଚିହ୍ନିଲା ବେଳକୁ ତମକୁ କୁମ୍ଭୀର ନେଇ ନଦୀ ନଈରେ ପହଞ୍ଚି ସାରିଥିବ। ଏଣେ ବାପା କହୁଥିବ ପୁଅ ଡୋହିଲୁଛି। ତମେ ମାଙ୍କଡ଼ ପରି ହେଲେ ଏକା ଖେପାକେ କୂଳକୁ ଡେଇଁପଡ଼ି ଗଛ ଉପରକୁ ଚଢ଼ିଯିବ। କୁମ୍ଭୀର ବୋକା ବନି ଫେରିଯିବ।

ଏଇ କଅଁଳକୁହାମାନେ ପ୍ରକୃତରେ ବିପଦ। ଏଇମାନଙ୍କୁ ଚିହ୍ନିରଖିବା ନହାତି ଜରୁରୀ। ଯିଏ ଚିହ୍ନିଥାଏ ସିଏ ଜୀବନ-ସଂଗ୍ରାମରେ ଜିତିଯାଏ। ଯିଏ ଚିହ୍ନି ପାରେ ନାଇ ସିଏ ମରେ। ତେଣୁ ତ କହୁଛି ବନ୍ଧୁ! କଅଁଳକୁହାଙ୍କୁ ବେଳହୁଁ ସାବଧାନ।



# ସେତୁବନ୍ଧ

ସବୁ ବସ୍ତୁରେ ଆବଶ୍ୟକତା ଅଛି ଗୋଟାଏ ସେତୁର । ଏଇ ସେତୁଟା ନଈର ଏପଟ ସହିତ ସେପଟକୁ ଯୋଡ଼ିଦିଏ । ଏହା ଯେ ଖାଲି ନଈର ଦୁଇକୂଳକୁ ଯୋଡ଼ି ଦିଏ ତାହା ନୁହେଁ; ଗୋଟାଏ ସଂସ୍କୃତି ସହିତ ଆଉ ଗୋଟାଏ ସଂସ୍କୃତିକୁ, ଗୋଟାଏ ଦେଶ ସହିତ ଆଉ ଗୋଟାଏ ଦେଶକୁ, ଗୋଟାଏ ଜାତି ସହିତ ଆଉ ଗୋଟାଏ ଜାତିକୁ, ଗୋଟାଏ ଧର୍ମ ସହିତ ଆଉ ଗୋଟାଏ ଧର୍ମକୁ ମଧ୍ୟ ଏହା ଯୋଡ଼ିଦିଏ । ତେବେ ନଈ ଉପରର ସେତୁଟା ଦୃଶ୍ୟମାନ ହୋଇଥିଲା ବେଳେ ଏସବୁ ସେତୁ ହୋଇଯାଏ ଅଦୃଶ୍ୟ । ସେତୁର ଧର୍ମ—ସମ୍ପର୍କ ଯୋଡ଼ିବା, ସମ୍ପର୍କକୁ ଟାଣି ନେବା । ସେତୁ ଯଦି ଏଇଆ କରି ନ ପାରିଲା ତେବେ ସେଇ ସେତୁର ମୂଲ୍ୟ କଣ ? ନଈଟା ପାରି ହୋଇଗଲେ କଣ ସବୁକିଛି ହୋଇଗଲା ? ଓ, ତମେ ଏବେ ଭାବୁଛ ସେତୁ ଗୋଟାଏ କଣ ହେବ, ଡଙ୍ଗାଟିଏ ହେଲେ କଣ ନଈ ପାରି ହୋଇ ଯିବ ନାହିଁ ? ହଁ, ହବନି କାହିଁ ? ତେବେ ସେତୁଟି ଦ୍ୱାରା ଯେତେ ସହଜରେ ପାରି ହୋଇଯିବ, ଡଙ୍ଗାଦ୍ୱାରା କଣ ତାହା ସମ୍ଭବ ହେବ ? ଏଇ ବିଜ୍ଞାନ ଯୁଗରେ ଡଙ୍ଗା ଆଉ ସବୁ କାର୍ଯ୍ୟ ପାଇଁ ସମର୍ଥ ନୁହେଁ କିମ୍ବା ସୁବିଧାଜନକ ମଧ୍ୟ ନୁହେଁ । ଏଣେ ଡଙ୍ଗାରେ ନଈ ପାରି ହେଉ ହେଉ ତେଣେ ଘୁଷୁରି ଯାଇଁ ମଙ୍ଗଳପୁରରେ ପହଞ୍ଚିବଣି । ଏଇଥିପାଇଁ ସେତୁଟା ଯେ ନିହାତି ଦରକାର; ଏକଥା ଆଉ ବୁଝାଇ କହିବା ଲୋଡ଼ା ନାହିଁ । ଯେତେବେଳେ ଯାଇ ସେତେବେଳେ ମନ ହେଲା ତ ନଈ ପାରି ହୋଇଯିବ । ଏଇ ସେତୁଟା ନଈର ଦୁ'କୂଳକୁ ଯୋଡ଼ିଦିଏ । ସେଇଠୁ ପୁଣି ସମ୍ପର୍କ ଯୋଡ଼ି ହୋଇଯାଏ ଗାଁରୁ ଗାଁକୁ । ସମ୍ପର୍କ ଲମ୍ବି ଲମ୍ବି ଯାଉଛି । ଦୂର ହୋଇଯାଉଛି ନିକଟ । ଅଜଣା ହୋଇଯାଉଛି ଜଣା । ଅଗମ୍ୟ ହୋଇଯାଉଛି ଗମ୍ୟ । ଏଇ ସେତୁଟା ପୁଣି ହେଉଛି ଗଣ୍ଡଗୋଳକାରୀ ଆଉ ସ୍ୱେଚ୍ଛାଚାରୀମାନଙ୍କୁ ଜବତ କରିବା ପାଇଁ ତୁରନ୍ତ ମାଧ୍ୟମ ।

ରାମାୟଣ ଯୁଗର ସେତୁବନ୍ଧ କଥା କିଏ ନ ଜାଣେ । ସେଇଟା କବି-କଳ୍ପନା ଅଥବା ପ୍ରକୃତ ସତ୍ୟ—ସେ ନେଇ ମୁଣ୍ଡ ଖେଳେଇ ଲାଭ କଣ ? କଥାଟା କିନ୍ତୁ କେତେ ତାତ୍ପର୍ଯ୍ୟପୂର୍ଣ୍ଣ ନୁହେଁ ? କୁମାରିକାଠାରୁ ଲଙ୍କା କେଜାଣି କେତେ ବାଟ । ଗମ୍ଭୀରଥା ସମୁଦ୍ର । ଆଖି ପାଇବ ନାହିଁ କୁଆଡ଼େ କଣ ଅଛି କି ନାହିଁ । ଲଙ୍କାର

ଘୂରିପଟେ ସମୁଦ୍ର । ସେଇଠି କନକ ନଗରୀ ଲଙ୍କା କଟକ । ପ୍ରବଳପ୍ରତାପୀ ଦଶାନନର ଅଭେଦ୍ୟ ଦୁର୍ଗ । ଦେବ ଦାନବ ମାନବ ଗନ୍ଧର୍ବ କିନ୍ନର—ସମସ୍ତେ ତାର ଅଧୀନ । ଏହି ସୁଯୋଗରେ ରାବଣ ପଞ୍ଚବଟୀକୁ ଆସି କପଟରେ ସୀତାଙ୍କୁ ହରଣ କରିନେଇ ଲଙ୍କାର ଅଶୋକ ବନରେ ରଖିଲା । ଏଣେ ରାମ ଲକ୍ଷ୍ମଣ ଦ'ସ୍ଥଇଯାକ ଜାଗା ଜାଗା କେତେ ଖୋଜିଲେ । ଶେଷରେ ପହଞ୍ଚିଲେ କିଷ୍କିନ୍ଧ୍ୟାରେ । ସୁଗ୍ରୀବ ସହିତ ମିତ୍ରତା କଲେ ସେଇଠି । ବାନର ବାହିନୀ ସହିତ ସୀତାଙ୍କୁ ଖୋଜିଲେ । ପବନ ପୁତ୍ର ହନୁମାନ ଏକା ଡିଆଁରେ ଯାଇଁ ଲଙ୍କାରେ ପହଞ୍ଚିଲା । ସୀତାଙ୍କୁ ଠାବ କଲା । ସୁନା ଲଙ୍କାକୁ ଚୂନା କଲା । ରାମଚନ୍ଦ୍ରଙ୍କୁ ଆସି ଖବର ଦେଲା ସୀତା ଠାକୁରାଣୀଙ୍କ କଥା । ଏଥର ଭାବିଲେଣି ପଡ଼ିଲା ଲଙ୍କାକୁ ଯିବେ କିପରି ? ସ୍ଥିର ହେଲା ରାମେଶ୍ୱରଠାରୁ ଲଙ୍କା ପର୍ଯ୍ୟନ୍ତ ସମୁଦ୍ର ଭିତରେ ସେତୁ ବନ୍ଧ କରାଯିବ । ସାରା ବାନର ବାହିନୀ ଲାଗିଗଲେ କାମରେ । ବଡ଼ବଡ଼ ପଥର ଉପରେ ପଥର ପକାଇ ବନ୍ଧ ତିଆରି କରିଦେଲେ । ପ୍ରତିଷ୍ଠା ହେଲା ବନ୍ଧ । ହେଲାଗଲା ଗୋଟାଏ ଅଦ୍ଭୁତ ଆନନ୍ଦ । ଅସମ୍ଭବ ସମ୍ଭବ ହେଲା । ଯୋଡ଼ି ହୋଇଗଲା ଭାରତ ସହିତ ଲଙ୍କା । ଛନକା ପଶିଲା ରାବଣର ଛାତିରେ । ଦୁର୍ଭେଦ୍ୟ ବୋଲି ଯାହା ପରିଚିତ ଥିଲା ତାହା ଆଉ ଦୁର୍ଭେଦ୍ୟ ହୋଇ ରହିଲା ନାହିଁ । ଗର୍ବ ଆଉ ଅହଂକାରର ଉତ୍ତୁଙ୍ଗ ପାହାଡ଼ ଦେହରେ ହଠାତ୍ ଯେମିତି ଭୂମିକମ୍ପ ହୋଇପଡ଼ିଲା । ଭସ୍ମର ଦଳା ଗୁଳିଟିଏ ହେଲିଗଲା ସର୍ବସ୍ୱ । ତଥାପି ମୁହଁ ଭୁରୁଡ଼ି । ଛାର ନର ବାନର; ରାକ୍ଷସମାନଙ୍କର ଖାଦ୍ୟ । ସେମାନେ କରିବେ ଯୁଦ୍ଧ ! ରାମଚନ୍ଦ୍ର କିନ୍ତୁ ବାନରବାହିନୀ ସହିତ ସେଇ ବନ୍ଧଦେଇ ଲଙ୍କାକୁ ଗଲେ ଓ ରାବଣକୁ ସବଂଶେ ମାରିଲେ । ସୀତାଙ୍କୁ ଉଦ୍ଧାର କଲେ । କେଉଁ କାଳର କଥା ଇଏ । ସତ କି ମିଛ କିଏ ଜାଣେ ? ହେଲେ ଏଇ ମିଛ କେତେ ସତ ନୁହେଁ କହିଲେ ? ସେତୁ ବନ୍ଧଟିଏ ହୋଇ ନ ଥିଲେ କ'ଣ ରାବଣ ମରିଥାନ୍ତା ନା ସୀତା ଉଦ୍ଧାର ପାଇଥାଆନ୍ତେ ?

ଏଇ ସେତୁବନ୍ଧ କଥାଟା ପୁରାଣର କଳ୍ପନା—କାହିଁ କେଉଁ କାଳର କଥା । ଅଥଚ ଏଇ କଥାଟା ଆମ ପକ୍ଷରେ କେତେ ଆପଣାର ନୁହେଁ ? ଏଇ ସେତୁବନ୍ଧ ଯୋଗୁ ସୁନା ଲଙ୍କା ଚୂନା ହୋଇଗଲା । ତେବେ ଏଇଠି କଣ କଥା ସରିଗଲା କି ? ପୁଣି ସେଇ ସେତୁବନ୍ଧ ନୂଆ ସମ୍ପର୍କଟିଏ ଗଢ଼ିଦେଲା । ଆଉ ରାବଣ ନାହିଁ କି ଅସୁର ନାହାନ୍ତି । ବିଭୀଷଣ ହେଲା ଲଙ୍କାର ରାଜା । ଅସୁର କୁଳରେ ଜନମ ହେଲେ ହେଁ ତା' ଭିତରେ ଆସୁରିକ ଭାବ ନଥିଲା; ଥିଲା ଦେବତ୍ୱର ଭାବ । ରାଜାଙ୍କୁ ନେଇ ରାଜ୍ୟ । ତେଣୁ ଗୋଟାଏ ଆଧ୍ୟାତ୍ମିକ ପ୍ଳାବନ ହେଲାଗଲା ସାରା ଲଙ୍କା କଟକରେ । ଅସୁରପଣିଆ ଲୋପ ପାଇଗଲା । ମଣିଷପଣିଆର ହେଲା ବିକାଶ । ମଣିଷ ଭଲପାଇଲା ମଣିଷକୁ । ମଣିଷ ଆଉ ଅସୁର ହେଲା ନାହିଁ, ଛପନତଣ୍ଡା ଯୁଗକୁ ବଞ୍ଚିବା ପାଇଁ

ତପସ୍ୟା କଲା ନାହିଁ, ଗୁଡ଼ାଏ ଖାଇ ଶୋଇପିବା ଲାଗି ବର ମାଗିଲା ନାହିଁ । ରାବଣ ପରି ହିରଣ୍ୟକଶିପୁରେ ମଣିଷ ବାନ୍ଧିଲେ ନାହିଁ । ସେ ଦେଲେ ଗୋଟାଏ ନୂଆ ବାର୍ତ୍ତା । ସେଇଟା ହେଉଛି ନିଜ ଭିତରେ ଭଗବାନଙ୍କୁ ଦେଖ, ସମସ୍ତଙ୍କୁ ଦେଖ ଓ ସମସ୍ତଙ୍କ ଭିତରେ ନିଜକୁ ଦେଖ । ଏଥର ଯୋଡ଼ି ହୋଇଗଲା ଗୋଟାଏ ନୂଆ ସମ୍ପର୍କ । ଏଇ ସମ୍ପର୍କ ମଣିଷ ସହିତ ମଣିଷର ସମ୍ପର୍କ । କାହିଁ ଲଙ୍କା, ଆଉ କାହିଁ ନୀଳାଚଳ ଧାମ ! ଅଥଚ ବିଭୀଷଣ ଆସିଲେ ଏଠାକୁ । ଜଗନ୍ନାଥ ବି ଗଲେ ଲଙ୍କାକୁ । ଏଇ ହେଲା ନୂଆ ସମ୍ପର୍କ, ନୂଆ ଭାବ । ଏଇଟା ସ୍ନେହ ଆଉ ପ୍ରୀତିର ଧାରା, ମଣିଷପଣିଆର ଧାରା । ଏଇ ସମ୍ପର୍କ ପୁଣି ଭାରତକୁ ଶ୍ରୀଲଙ୍କା ସହିତ ଯୋଡ଼ି ଦେଲା ଆଉ ଏକ ନୂଆ ରୂପରେ । କଳିଙ୍ଗ ଯୁଦ୍ଧରେ ରକ୍ତନଦୀ ବୁହାଇ ଦେଇଥିବା ଅଶୋକ ଇମିତି ବଦଳି ଗଲେ ଯେ ବୌଦ୍ଧଧର୍ମ ଗ୍ରହଣ କରି ଘୋଷଣା କଲେ, ଭବବାଣୀର ଜୟ ପ୍ରକୃତ ଜୟ ନୁହେଁ, ଅହିଂସାର ଜୟ ହିଁ ପ୍ରକୃତ ଜୟ । ନିଜ ପୁଅ ଝିଅଙ୍କୁ ପଠେଇଲେ ଲଙ୍କାକୁ ବୌଦ୍ଧଧର୍ମର ବାର୍ତ୍ତା ଦେଇ । ଭାରତ ଓ ଶ୍ରୀଲଙ୍କା ହୋଇଗଲା ଗୋଟିଏ ଆତ୍ମା । ଏଇ ସମ୍ପର୍କର ସେତୁ ବାନ୍ଧି ହୋଇଗଲା ଚୀନ୍, ଜାପାନ, ତିବ୍ବତ—କାହିଁ କେତେ ଦେଶ ସହିତ । ଏବେ କିନ୍ତୁ ସେଇ ସେତୁ ଭାଙ୍ଗି ଯାଇଛି । ସେଇ ସେତୁବନ୍ଧ ନାଇ କି ସେଇ ସମ୍ପର୍କ ନାଇ । କଥାଟା କିନ୍ତୁ ରହିଛି; ରହିଥିବ ମଧ୍ୟ କାଳକାଳକୁ । କଥାର ଅର୍ଥକୁ କେହି ବୁଝୁନାହାନ୍ତି । କଥା ଆଏ କଥାର ବାଟରେ । ଏଣେ ଯାବତ ଅକଥାଗୁଡ଼ାକ ଆସର ଜମେଇ ବସେ । ମଣିଷ ଭୁଲିଯାଏ ତାର କୃଷ୍ଣସ୍ୱାଦ, ପରମର୍ମ ଓ ସମୃଦ୍ଧ କଥା । ସେ ପାଲଟିଯାଏ ହଇତାନ । ସୃଷ୍ଟି କରେ ଧ୍ୱଂସର ତାଣ୍ଡବ ଲୀଳା । ସମ୍ପର୍କର ସେତୁ ଯେତିକି ଯେତିକି ଭାଙ୍ଗିପଡ଼େ ସେତିକି ସେତିକି ମଣିଷ ହୋଇଯାଏ ନୃଶଂସ । ମଣିଷଗୁଡ଼ାକ ତାକୁ ମନେହୁଅନ୍ତି ପୋକମାଛି ପରି । ସମ୍ପର୍କଟା ଭାଙ୍ଗି ଗଲେ ମଣିଷ ଆଉ ମଣିଷ ହୋଇ ରହେ ନାହିଁ । ତାର ସବୁ ବିଶ୍ୱାସ ତୁଟିଯାଏ । ଏଇ ବିଶ୍ୱାସ ଗଢ଼ିଦିଏ ସମ୍ପର୍କ । ତେଣୁ ବିଶ୍ୱାସ ଏକ ଦିବ୍ୟ ଚେତନା— ଏକ ଦିବ୍ୟ ଭାବ । ଅଥଚ ଏଇ ବିଶ୍ୱାସର ମୂଳ ଆଜି ଦୋହଲି ଯାଇଛି । ମୂଳଦୁଆ ଟାଣ ଥିଲେ ଘର ଦମ୍ଭ ହୋଇ ରହେ । ମୂଳଦୁଆ ଦୁର୍ବଳ ହୋଇଗଲେ ଘର ଭୁସୁଡ଼ି ପଡ଼େ । ଆଜି ସେଇ ଅବସ୍ଥା ଯେମିତି ସୃଷ୍ଟି ହୋଇଯାଇଛି ସବୁଠି ।

ଏଥର ମୂଳ କଥାକୁ ଆସନ୍ତୁ । ଏଇ ସେତୁବନ୍ଧ ଆଡ଼କୁ ଟିକିଏ ଦୃଷ୍ଟି ଦିଅନ୍ତୁ । ଏକଥା ସତ ଯେ ଏବେ ଆଉ ସେଇ ବନ୍ଧ ନାଇ କି ସେତୁ ନାଇ । ସେଇଟା ଭୁସୁଡ଼ି ଯାଇଛି ସମୁଦ୍ର ଭିତରେ । ଟେମସ୍ ନଦୀର ଲଣ୍ଡନ ବ୍ରିଜ୍ ଭାଙ୍ଗି ପଡ଼ୁଛି । ଅଲଗା ହୋଇଯାଉଛି ଏକୂଳ ସେକୂଳ । ଆଉ ଛୁଇଁ ହେଉନାହିଁ ଏ କୂଳରୁ ସେ କୂଳକୁ । ପୁଣି ଡଙ୍ଗା । ପୁଣି ବୋଇତ । ଧେତ୍, ଏ ବିଜ୍ଞାନ ଯୁଗରେ ଡଙ୍ଗାର ଗୋଟାଏ ମୂଲ୍ୟ କଣ ? ଏଇଟା କେଉଁ ମାନଧାତା ଅମଳର । ତଥାପି ଟିକେ

ହେଉଛନ୍ତି । ସେଇ ଡଙ୍ଗାର ଗୋଟାଏ ମାହାତ୍ମ୍ୟ ଥିଲା । ସେଇଟା ଧର୍ମ ଡଙ୍ଗା । ତା' ଉପରେ ବସିଗଲେ ମଝି ନଈରେ କୁମ୍ଭୀରକୁ ଭୟ ନଥାଏ । ସେଇ ଡଙ୍ଗାକୁ ନେଇ ପୁଣି କେତେ କଣ ଘଟଣା ଘଟିଯାଏ । ଏଇ ଦେଖନ୍ତୁ ନା ଋଷି ପରାଶରଙ୍କୁ । ଜିତେନ୍ଦ୍ରିୟ ଋଷି ହୋଇ ଡଙ୍ଗା ଉପରଟାରେ ସେ କଣ ନକଲେ ! ଦାସ ରାଜାର ଝିଅ ପ୍ରତି ସେ ଆକର୍ଷିତ ହୋଇ ପଡ଼ିଲେ । ସ୍ଥାନ କାଳ ପାତ୍ର ଜ୍ଞାନ ଭୁଲିଗଲେ । ମତ୍ସ୍ୟଗନ୍ଧାକୁ ସେ କରିଦେଲେ ଯୋଜନଗନ୍ଧା । ତା' ଦେହରୁ ମାଛ ଗନ୍ଧ କୁଆଡ଼େ ଦୂରେଇ ଗଲା । ସେ ଖାଲି ମହ ମହ ହୋଇ ବାସି ଉଠିଲା । ସେଇ ଡଙ୍ଗାରେ ଋଷିଙ୍କ ସହିତ ତାର ହେଲା ମିଳନ । ସେଇଠୁ ଜନ୍ମ ହେଲେ ବ୍ୟାସ । ଏଥର ଲମ୍ଫି ଗଲା ମହାଭାରତର ଧାର ଯେ ଶେଷକୁ ତାର ପରିଣତି ହେଲା ରକ୍ତନଦୀ । ଆଉ ଗୋଟିଏ ଡଙ୍ଗା କଥା ତ ସମସ୍ତେ ଜାଣନ୍ତି । ସେଇଟା ହେଲା ଗଙ୍ଗା ନଦୀରେ ବଡର ଧୀବରର ଡଙ୍ଗା । ଭକ୍ତେ ସେହି ଧୀବରକୁ ବଙ୍କାଣି କରିଦେଲେ । ତାକୁ ଇମିତ କରିଦେଲେ ଯେ ସେ ହୋଇଗଲା ମହାପୁରୁଷଟିଏ । ରାମ, ଲକ୍ଷ୍ମଣ ଓ ଋଷି ବିଶ୍ୱାମିତ୍ର ସେଇ ଡଙ୍ଗାରେ ପାରି ହେଲେ । ଧୀବର ହେଲା କୃତକୃତ୍ୟ । ତା' ଜୀବନ ହେଲା ଧନ୍ୟ । ସେଇ ଧୀବରର ଡଙ୍ଗା ଯୋଗୁ ଅଯୋଧ୍ୟା ସହିତ ଯୋଡ଼ି ହୋଇଗଲା ମିଥିଳା । ଋଷି ସହିତ ଋଷିର, ରାଜା ସହିତ ରାଜାର, ସତ୍ୟ ସହିତ ପ୍ରୀତିର ହୋଇଗଲା ମିଳନ ଏବଂ ତିଆରି ହୋଇଗଲା ଗୋଟାଏ ଅଶସ୍ୱସ୍ୱ ସେତୁ । ଏବେ କିନ୍ତୁ ସେଇ ଡଙ୍ଗା ଅଛି ଯେ ହେଲେ ସେଇଟା ଆଉ ସେତୁ ହୋଇପାରୁ ନାଇ । ସବୁ ଜାଗାରେ ସେତୁ ହୋଇଯାଉଛି ନୂଆ ସମ୍ପର୍କ ସୃଷ୍ଟି ପାଇଁ ତିଆରି । ସତରେ କଣ ସମ୍ପର୍କ ବାନ୍ଧି ହେଉଛି କି ?

ହଁ, ଆମେ ଏବେ ଦେଶସାରା ସେତୁ ବାନ୍ଧି ଦେଲୁଣି । ନୂଆ ନୂଆ ସେତୁ । ନଦୀ ନାଳ ଆଉ ଅଗମ୍ୟ ହୋଇ ରହୁନାହିଁ । ଭଁ ଭଁ କରି ଧନସିଡ଼ ଗାଡ଼ି ଚାଲିଛି ସେତୁ ଉପରେ । ସମ୍ପର୍କ ବଢ଼ି ବଢ଼ି ଚାଲିଛି । ଏଇ ସମ୍ପର୍କଟା ବସ୍ତୁବାଦୀ ହୋଇ ଯାଉଛି । ଗାଁ ସବୁ ସବୁଜ ସୁଷମା ହରାଇ ନଗର ହୋଇଯାଉଛି । ଗାଁର ଚାଷଜମିରେ ଗଢ଼ି ଉଠୁଛି ଶିଳ୍ପାୟତନ । ଗଢ଼ି ଉଠୁଛି ସ୍କୁଲ କଲେଜ ଡାକ୍ତରଖାନା ଓ ଅନୁନ କେତେ ନାଇ କେତେ ଅଫିସ ଦପ୍ତର । ନଗରର ଏକଚାଟିଆ ପ୍ରଭାବ ଆଉ ନାହିଁ । ଗାଁ ବି ଏବେ ନଗରର ଢଙ୍ଗ ଦେଖେଇଲାଣି । ସବୁଆଡ଼େ ଏଇ ଢଙ୍ଗ, ଏଇ ଯାନ୍ତ୍ରିକତା । ଅଡଜଥା ବଢ଼ି ପାଣି ପରି ବହିଆସୁଛି ନୂଆ ନୂଆ ସମ୍ପର୍କ । ଭିତରଟା କିନ୍ତୁ ହୋଇଯାଉଛି ଫମ୍ପା । ଲୋପ ପାଇଯାଉଛି ମଣିଷର ଭଲପଣିଆ । ହଜିଯାଉଛି ସ୍ନେହ, ପ୍ରେମ, ମମତା, ଶ୍ରଦ୍ଧା ଓ ମାନବିକତା । ସବୁଆଡ଼େ ଚେଚେକାର । ସବୁଆଡ଼େ ବନ୍ଧୁକ ଆଉ ଗୁଳିଗୋଳାର ଆୱାଜ । ସବୁଆଡ଼େ ଲୁଟ ଆଉ ତରବାରି । ସବଂସ ରିମୋଟ କଣ୍ଟ୍ରୋଲ । ଗୋଟାଏ ଭୟ ଯେମିତି ଘେରି ଯାଉଛି

ସମସ୍ତଙ୍କୁ । ଅଥଚ କେହି ଧରିପାରୁ ନାହାନ୍ତି ଭିତ୍ତର କାରଣକୁ । ସେଇ ଭୟ ଯୋଗୁ ସିଂହାସନ ମଣିଷ ଜନକୁ ଘୋଡ଼େଇ ରଖିବାକୁ ଚେଷ୍ଟା କରେ । ଯେତକ ସେ ଘୋଡ଼ାଏ ସେତକ ସେ ଧରା ପଡ଼ିଯାଏ । ଜନତା ଜନାର୍ଦ୍ଦନଙ୍କ ସହିତ ସମ୍ପର୍କର ସେତୁକୁ ଯେତକ ସେ ଟାଣ କରି ଦେଉଛି ବୋଲି ଭାବେ ସେତକ ସେହି ସମ୍ପର୍କଟା ହୁଗୁଳା ହୋଇଯାଏ । କେତେବେଳେ ହଠାତ୍ ଭୂକମ୍ପନ ଗଳିପଡ଼େ ନଈ ମନ୍ଦିରର ସେ ସେ ଜମା ଜାଣିପାରେ ନାହିଁ । କ୍ଷମତାକୁ ଜାବୁଡ଼ି ଧରିଥିବା ମଣିଷ ମାନେଇ ଏଇଆ । ଏମାନେ ସମସ୍ତେ ଉପଭୋଗୀ । ସେଇ ଉପଭୋଗର ତୃଷା ଆଦୌ ମେଣ୍ଟେ ନାହିଁ । ହୁ ହୁ କରି ବଢ଼ୁଥାଏ । ଏଇ ସୁଖଭୋଗୀ ମଣିଷ କଣ ଶାନ୍ତି ପାଇପାରେ ? ଟିକିଏ ଟିକିଏ କ୍ଷମତା ପାଇ ହୁରୁକାମତା ହୁଏ । ସେମାନଙ୍କୁ ସରଗ ଦୁ' ଆଙ୍ଗୁଳ ଦିଶେ । ସେମାନଙ୍କ ହାତରେ ଆଇନ ଦଣ୍ଡ ଥାଏ ବୋଲି ଛାତି ଫୁଲେଇ ଯାହା ନାହିଁ ତାହା କରିଯାଆନ୍ତି । ଏମାନେ କେବେ ହେଲେ ସମ୍ପର୍କ ବାନ୍ଧି ପାରନ୍ତି ନାହିଁ । ଏମାନଙ୍କ ରାଇଜରେ ମିଛର ଅସପନୁ ରାଜିକ । ସେଠି ଥାଏ କେବଳ ଗୋଟାଏ ଗୋଟାଏ ମୁଖା । ଏଇ ମୁଖା-ମଣିଷମାନେ ବିପୁଳ ଜନସ୍ରୋତରୁ ଅଲଗା ହୋଇ ଯାଆନ୍ତି । ବାଗ ହେଣ୍ଡି ଜନତା ଭିତରେ ସୃଷ୍ଟି କରିଦିଅନ୍ତି ଫାଟ । ଧର୍ମ ଆଉ ଜାତି ନାମରେ ଏକା ନାଇକୁ ଦି'ଖଣ୍ଡ କରିଦିଅନ୍ତି । ବାହାରକୁ କିନ୍ତୁ ଏମାନେ ପାଲଟି ଯାଆନ୍ତି ସାଧୁ । ଠିକ୍ କାଳନେମୀ ପରି । ମରଣ ମୁଖରୁ ମଣିଷକୁ ବଞ୍ଚାଇବା ପାଇଁ ଯାଉଥିବା ଲୋକଙ୍କୁ ଭୁଲାଇ ଦିଅନ୍ତି । ଶେଷକୁ ସବୁ ଛଦ୍ମତା ଧରାପଡ଼ିଯାଏ ଓ ସେ ମରେ । ସତ୍ ସମ୍ପର୍କକୁ ସେ ଭାଙ୍ଗି ପାରେ ନାହିଁ । ବାଟୁଳିଖାଡ଼ା ମାରି ହୁଏତ ତାକୁ କ୍ଷଣକ ପାଇଁ ମୋହଗ୍ରସ୍ତ କରିଦିଏ ମାତ୍ର ଯେତେବେଳେ ସେ ଜାଣିଯାଏ ଯେ ସେଇ ଜୀବଟି ଗୋଟିଏ ଦିବ୍ୟ ସମ୍ପର୍କର ମଣିଷ ଓ ତାର ଉଦ୍ଦେଶ୍ୟ ପରାର୍ଥତା ସେତେବେଳେ ସେ ଆପଣାର ବାଟୁଳିଖାଡ଼ାକୁ ପୁଣି କରିଦିଏ ସେତୁ । ରାତି ପାହିବା ପୂର୍ବରୁ ସେ ପହଞ୍ଚିଯାଏ କାହିଁ କେତେଦୂରରେ ଓ ମରଣମୁଖୀ ମଣିଷଟି ବଞ୍ଚିଉଠେ ନିଦରୁ ଉଠିଲା ପରି । ଏଇଟା ହିଁ ସମ୍ପର୍କ—ଯେମିତି ଗୋଟାଏ ଦିବ୍ୟ ସେତୁ ।

ଏଇ କଥା କିନ୍ତୁ ଆଜିର ମଣିଷ ବୁଝୁନାହିଁ । ତାର ସମ୍ପର୍କ ନାହିଁ କାହାରି ସହିତ । ଖାଲି ଝଟ ମିଛ ତୋଷାମଦ ଓ କପଟତା । ପରିବାର ଭିତରେ ସମ୍ପର୍କ ନାହିଁ । ବାପା ପୁଅ ପତିପତ୍ନୀ ଭାଇଭଉଣୀ ଭିତରେ ଭାଙ୍ଗି ଯାଉଛି ସମ୍ପର୍କ । ସମ୍ପର୍କ ମଧ୍ୟ ନାହିଁ ନେତା ଓ ଜନତା ଭିତରେ । ଯେଉଁ ସମ୍ପର୍କ ଗଢ଼ିଉଠିଛି ବୋଲି ଡିଣ୍ଡିମ ପିଟାଯାଉଛି ସେଇଟା ସମ୍ପର୍କ ନୁହେଁ; ଗୋଟାଏ ମାୟା, ଗୋଟାଏ ଭୁଲ୍ । ଅର୍ଥବାଦୀ କ୍ଷମତାଦୃପ୍ତ ମଣିଷ ପାଖରେ ସମ୍ପର୍କର ମୂଲ୍ୟ କଣ ? ତାର ଏକମାତ୍ର ବିଶ୍ୱାସ ଅର୍ଥ ଓ ପ୍ରତିପତ୍ତିରେ । ସେଇ ଅର୍ଥ ବୁଲିଗଲେ ସବୁ ତାର ବୁଲିଯାଏ ।

ଷମତା ଥିଲେ ସେ ହାସ୍ୟ ହାସ୍ୟ ହୁଏ । ସବୁ ଫୁଟାଣି ମିଳେଇ ଯାଏ ନିମିଷକେ । ଜ୍ଞାନ ଗାରିମା ହଜିଯାଏ । ସମସ୍ତେ ତାକୁ ଛି ଛିକର କରନ୍ତି । ଯିଏ ପ୍ରକୃତରେ ସମ୍ପର୍କକୁ ଜାଣେ, ବିଶ୍ୱାସକୁ ଦୃଢ଼ କରେ, ଯିଏ ଭଲପାଏ ମଣିଷକୁ । ସବୁ ମଣିଷ ଭିତରେ ସେ ନିଜକୁ ଦେଖେ । ନିଜ ଭିତରେ ସବୁ ମଣିଷଙ୍କୁ ଦେଖେ । ସେ ଗଢ଼ିଦିଏ ଗୋଟାଏ ସେତୁବନ୍ଧ । ସେଇ ସେତୁବନ୍ଧଟା ହୋଇଯାଏ ସମ୍ପର୍କର ସେତୁବନ୍ଧ ।

କଣ ଆମେ ନୂଆକରି ସେତୁବନ୍ଧଟିଏ ବାନ୍ଧି ପାରିବା ନାହିଁ ? ନ ହେଉ । ତାହାର କଣ ଅଛି ? ଯେତେବେଳେ ହୁରହେମାଳ ପଡ଼ିଯିବ, ଘରବୁଡ଼ି ପାଣି ଅଣ୍ଟିଏ ହୋଇଯିବ ସେତେବେଳେ ଆଉ ବୁଦ୍ଧି ପଇଟିବ ନାହିଁ । ବେଳହୁଁ ସାବଧାନ ହେବା କଣ ଠିକ୍ କଥା ନୁହେଁ ?



# ଅଲ୍ ଇଣ୍ଡିଆ

ହାୟ ହାୟ, କି କଳିକାଳ ହେଲା ହେ ! ସବୁ କଥାରେ ଖାଲି ଭେଜାଲ । ଖାଲି ଠକାପଞ୍ଝା । ଖାଲି ସୁହୃକଚଟା । ଉପରେ ହରିନାମ, ଭିତରେ ହଳାହଳ । କହିବ ଗୋଟାଏ ରକମ । କରିବ ଆଉ ଗୋଟାଏ ରକମ । ଯାହା ନୁହଁ ତାହା କହିବ ଆଉ ବୁଝାଇବ । ଢୋଲ ପିଟିବ । ଆକାଶ ପାତାଳ କମ୍ପେଇବ । କଂସର ଚଣୂର ଆଉ ମୁଷ୍ଟିକଙ୍କ ପରି କିଛି ଲୋକଙ୍କୁ ସଜେଇ ରଖିନେଇଥିବ । ତେଣିକି ତମେ ଦେଶସେବୀ ହୋଇଯିବ, ଜନସେବୀ ବନିଯିବ । ରାଷ୍ଟ୍ର ନାୟକ ବି ହୋଇଯିବ । ହଁ; କଥାରେ କଥାରେ କହୁଥିବ ତମେ ସ୍ୱଦେଶୀ । ତମେ ପଛେ ବିଦେଶୀ ହୁଅ କି ବିଦେଶୀ ଆଦବକାଇଦା ସବୁ ଗ୍ରହଣ କରିନିଅ, ସେଥିରେ କିଛି ଯାଏ ଆସେ ନାଇ । ଜନତା ଜନାର୍ଦ୍ଦନଙ୍କ ପାଖକୁ ଗଲାବେଳେ ଅନ୍ତତଃ ସ୍ୱଦେଶୀ ଖୋଳ ଲଗେଇ ପକେଇ ଯାଅ । ସେମାନେ ତମକୁ କୋଳେଇ ନେବେ । ଟେକ୍କା ପୁଅ କରିଦେବେ । ତା'ପରେ ତମର ତ ଜିତାପଟ । ତେବେ କଥା କଣ କି ଏଇ ସ୍ୱଦେଶୀ ମାର୍କାଟା ବୁଆଡ଼େ ଗାଧୋଇ ଗଲାଣି । କିଏ ତାକୁ ପଚାରୁଛି ? ଛିଃ ! ସ୍ୱଦେଶୀ ଗୋଟାଏ କଣ ? ଇମିତି କହିଲେ କି ହେଲେ ସଙ୍କୀର୍ଣ୍ଣ ହୋଇଯିବ ନାଇ ? କୂଅ ବେଙ୍ଗ ପାଲଟିଯିବ ବିଲ୍‌କୁଲ । ତାର ଭିତରେ ବନିଯିବ ରାଜା ମନେ ମନେ । ସେଇଠି ଖାଲି ଖପ୍ ଖାପ । କିଏ ତମକୁ ପଚାରିବ କହିଲ ? ବାହାରକୁ ବାହାର ଆସ । ଏଇ ବିରାଟ ବସୁନ୍ଧରାକୁ ଦେଖ । ଆଖି ଖୋଲିଯିବ । ଯୁଆଡ଼କୁ ଆଖି ପାଇବ ସିଆଡ଼କୁ ଯିବ । କେତେ ନୂଆ ନୂଆ ବାସ୍ନା, କେତେ ନୂଆ ନୂଆ ରଙ୍ଗ । ଆଖି ଝଲସି ଉଠିବ । ଜିଭରୁ ବୋହି ପଡ଼ିବ ଝପ୍ ଝପ୍ ଲାଳ । ଯାହା ପାରିବ ଖାଇବ । ଯାହା ପାରିବ ଅଣ୍ଟାରେ ଅଣ୍ଟିରେ ଟେଙ୍କିବ । କେତେ ନୂଆ ନୂଆ ଲୋକଙ୍କୁ ଦେଖିବ । ଆଖି ଖୋଲିଯିବ । ଛାତିଟା ଓସାରିଆ ହୋଇଯିବ । ଏସବୁ ମଜାଛାଡ଼ି ଘରକୋଣରେ ନୂଆବୋହୂ ହୋଇ ବସିବ, ଲାଜ ଲାଗିବ ନାହିଁ ? ପାଇକପଣ ଦେଖେଇବ ତ ବାହାରକୁ ଯାଅ । ଘର ଭିତରେ ଗୋଟାଏ କି ପାଇକ ପଣିଆ ?

ଆରେ ଭାଇ ମୁଁ କଣ କହିବାକୁ ଯାଇ କେଉଁ ଅଗନାଗ୍ନି ବନସ୍ତ ଭିତରେ ପଶିଗଲିଣି । ହଁ, କଥାଟା କଣ କହୁଥିଲି ଏଇ ସ୍ୱଦେଶୀ ଡୁହାଟା । ଆରେ ବାବା, ଏଇଟା ପୁଣି ଗୋଟାଏ କଣ ? ଏଇଟା କଣ ଆଗକାଳେ ଥିଲା ? ଏଇ ହାଲକୁ

ଏଇ ଡ୍ରାମାଟା ବେଶ୍ ଜମି ଉଠିଛି । ଏବେ ତ ସାରା ଜଗତଟା ତମ ଘର ଭିତରେ ଥାଇ ଥାଇ ହୋଇ ନାଚୁଛି । ସ୍ୱଦେଶୀ ଆଉ କଣ ହଉଛ ? ବାହାରକୁ ହାତ ନ ବଢ଼େଇଲେ ତମେ କଣ ଚଳିପାରିବ ? ଜଗତଟାକୁ ଦେଖ । କେଉଁଠି କଣ ପ୍ରଗତିର ରଥ ଚକ ଘିର୍ ଘିର୍ ହୋଇ ଗଡ଼ୁଛି ତାକୁ ଦେଖ । ପ୍ରଗତିର ମନ୍ତ୍ର ଶିଖ । ସ୍ୱଦେଶୀ ସ୍ୱଦେଶୀ ହୋଇ ପାଟିକଲେ କିଏ ଶୁଣିବ ? ଘର ଭିତରେ ବାନ୍ଧି ହୋଇ ରହିଯିବ । ସ୍ୱଦେଶୀ ଯୁଗ ଗଲାଣି । କେଉଁକାଳୁ ଉଭେଇ ଗଲାଣି । ଯେତେ ସକେଇ ହୋଇ କାନ୍ଦିଲେ ସେଇଟା କଣ ଆଉ ଫେରିବ ? ତିଲକ ମହାରାଜ ଏଇ ସ୍ୱଦେଶୀ କଥାଟା ପହିଲେ କହିଲେ ଯେ ହେଲେ ଗାନ୍ଧୀ ମହାତ୍ମା ସେଇଟାକୁ ଇମିତି ଯାଦୁ ମନ୍ତ୍ରରେ ଫୁଙ୍କି ଦେଲେ ଯେ ସାରା ଦେଶଟା ସେଇଥିରେ ଖାଲି ନାଚିଲା । ଯେମିତିକି କାଳସି ଲାଗିଗଲା । ହିମାଳୟଠାରୁ କୁମାରିକା ଯାଏ ସେଇ ଗୋଟାଏ ଧୁନ 'ସ୍ୱଦେଶୀ' । ସମସ୍ତଙ୍କର ମନ୍ତ୍ର ହୋଇଗଲା ବିଦେଶୀ ବସ୍ତ୍ର ବର୍ଜନ । ଯିଏ ପାରିଲା ସିଏ ପୋଡ଼ିଲା ବିଦେଶୀ ଲୁଗା, ବିଦେଶୀ ଚିଜ । ଅରଟ ଘୂରିଲା ଘୁଁ ଘୁଁ । ଏଇଟା ହୋଇଗଲା କୁଆଡ଼େ ସୁଦର୍ଶନ ଚକ୍ର । ଏଇ ସ୍ୱଦେଶୀ ହାତ୍ୟାରେ ସାରା ଜଗତ ତଟସ୍ଥ ହୋଇଗଲା । ଓଃ ! ସେଇ ଅଧା ଲଙ୍ଗଳା ଫକୀରର ଏଡ଼େ କସରତ !

ଆମେ ସ୍ୱାଧୀନ ହୋଇଗଲୁ । ସ୍ୱଦେଶୀ ହେଲୁ । ସ୍ୱଦେଶକୁ ଶାସନ କଲୁ । କୃତକୃତ୍ୟ ହୋଇଗଲୁ । ଜଣରେ ଯିଏ ହାତ ମାରି ଖେମେଟା ନାଚିଲୁ । ଶ୍ୱେତ ବାକ୍ସ ବସେଇ ଗଣତନ୍ତ୍ରର ଜୟ ଜୟକାର କଲୁ । ଦେହ ବଳ ଦେଖେଇ ବାକ୍ସକୁ ଅକ୍ତିଆର କଲୁ । ଅର୍ଥ ବଳ ଦେଖେଇ ସମସ୍ତଙ୍କୁ ଭକୁଆ କଲୁ । ସଭ୍ୟ-ମଣିଷ ହୋଇ ଗଣମାନଙ୍କୁ ଭୁଲେଇଲୁ । ଭାନୁମତୀ ପେଡ଼ି ଖୋଲି ଭେଜବାଜି ଦେଖେଇଲୁ । ଆଖିରୁ ଲୁହ ଗଡ଼େଇ ବସୁମାତାକୁ ଓଦା କଲୁ । ସତରେ ଆମେ କଣ ସ୍ୱଦେଶୀ ହେଲୁ ? ନା' ଗୋରା ହାକିମଙ୍କ ସିଂହାସନରେ ଆମେ କଳା ହାକିମ ବସି ଜଣ ଫୁଲେଇଲୁ ? ଆମ ସ୍ୱଦେଶୀ ସ୍ୱପ୍ନ ଭାଙ୍ଗିଗଲା । ସେଇଟା ହୋଇଗଲା ଗୋଟାଏ ନୂଆ ଭେଲ୍କି । ସେଇ ଭେଲ୍କିରେ ଆମେ ଭଳିଲୁ । ସେଇ ଭେଲ୍କି ଗଢ଼ିଦେଲା ଗୋଟାଏ କଳା-ସାମ୍ରାଜ୍ୟ । ସେଇ ସାମ୍ରାଜ୍ୟରେ ମହା ମହା ରଥୀମାନଙ୍କର ଆବିର୍ଭାବ ଘଟିଗଲା । ସେମାନଙ୍କର ଅର୍ଥ ବଳ ଆଉ ବାହୁବଳ ଦେଶର ଶକ୍ତିକୁ ବଳିଗଲା । ସେଇମାନଙ୍କ ଜାଲରେ ପଡ଼ିଗଲା ଦେଶ । ସ୍ୱଦେଶୀ ମାର୍କା ନେତାଏ ଛନ୍ଦି ହୋଇଗଲେ ସେ ଜାଲରେ । ଜନେ ଧନ୍ଦା ହୋଇଗଲେ ରାତାରାତି । ବିଦେଶୀ ବ୍ୟାଙ୍କ ବଢ଼ିଲା । ସେମେଟା ହେଲା ସ୍ୱଦେଶୀ ବ୍ୟାଙ୍କ । ସ୍ୱଦେଶୀ ସ୍ୱଦେଶୀ କହି ବିଦେଶୀ ହୋଇଗଲେ ସମସ୍ତେ । ବିଦେଶୀ ଆବହାଓ୍ୱା ବାଇ କଲା ସମସ୍ତଙ୍କୁ । ଯାହା ସ୍ୱଦେଶୀ ସବୁ ଆମକୁ ଗନ୍ଧେଇଲା । ଭାରତୀୟତା କହିଲେ ପିତା ଲାଗିଲା । ବାନ୍ତି ଦେଖେଇଲା ।

ଆମେ ଯେଉଁ ଆଗଚଲା ଆଗବୃଦ୍ଧାମାନେ ସ୍ୱଦେଶୀ ସ୍ୱଦେଶୀ କହୁଥିଲୁ, ସତ କହିବାକୁ ଗଲେ ଆମେ କେହି ସ୍ୱଦେଶୀ ନ ଥିଲୁ । ସ୍ୱଦେଶୀ ଖୋଳପା ଭିତରେ ଆମେ ଥିଲୁ ବିଦେଶୀ । ମଉକା ନ ଥିଲା ବୋଲି ଆମେ ସ୍ୱଦେଶୀ ବୋଲି କହୁଥିଲୁ । ଯେମିତି ମଉକା ମିଳିଗଲା ସେମିତି ସ୍ୱଦେଶୀ ଖୋଳପା ଉତାରି ପକାଇଲୁ । ଆମେ ହୋଇଗଲୁ ଗୋଟାପୁଣି ବିଦେଶୀ । ସତରେ ଆମେ କଣ ସ୍ୱଦେଶୀ ? ଆମେ ଯଦି ସ୍ୱଦେଶୀ ଆମର ବେଶ ପୋଷାକ କଣ ? ଆମର ଶିକ୍ଷାଦୀକ୍ଷାଟା କଣ ? ଆମ ଖାଇବା ପିଇବାର ଷ୍ଟାଇଲଟା କଣ ? ଆମେ ଯୁ ଭାଷା କହୁଛୁ ସେଇଟା କଣ ସ୍ୱଦେଶୀ ? ଘରେ ବାହାରେ, ଏପରିକି ଆମ ଅନ୍ତଃପୁରରେ, ମଧୁଶଯ୍ୟା କକ୍ଷରେ ଆମେ ବିଦେଶୀ ନୋହୁଁ କି ? ମାକେଲ ସାହେବ ଏଇ ବିଗତ ଶତାବ୍ଦୀରେ ଯୋଉ କଥା କହିଥିଲେ ଯେ ସେ ଇମିତି ଗୋଟାଏ ଶିକ୍ଷାନୀତି ତିଆରି କରିଦେଇଛନ୍ତି ଯାହା ଫଳରେ ଆମର ଚେର ରହିବ ଇଂଲଣ୍ଡରେ, ଆମେ ପଲ୍ଲବିତ ହେବା ଭାରତରେ । ଏଇଟା କଣ ସତ ନୁହେଁ ? କେଜାଣି, ଆମ ସ୍ୱଦେଶୀଏ ଏଇ କଥାକୁ ମିଛ ମଣିପାରନ୍ତି । ଆମେ ସ୍ୱଦେଶୀ ହୋଇପାରିଲୁ ନାହିଁ । ହେବା ମଧ୍ୟ ଏତେ ସହଜ ନୁହେଁ । ବିଦେଶୀ ରକ୍ତ ଆମ ଭିତରେ ମିଶିଯାଇଛି । ଆମେ ମିଶା ପାଲଟି ଯାଇଛୁ । ସେଇ ମିଶା ଭାବଟା ଆମକୁ ଶିଥିଳ କରିଦେଇଛି । ଆମେ ପାଲଟି ଯାଇଛୁ ନିରପେକ୍ଷ । ଆମେ ଯେ ଗୋଟାପୁଣି ବିଦେଶୀ ପାଲଟିଯାଇଛୁ—ଏକଥା ହେଜିଲା ବେଳକୁ ଅନକୂଳ ପାଉନୁ ।

ଏଇ ଯୁ ବିଦେଶୀ ଛାଞ୍ଚ ସେଇଟା ଗତ ଶତାବ୍ଦୀରୁ ଆମ ଭିତରେ ଧୀରେ ଧୀରେ ଆସନ ଜମେଇଲା । ଏବେ ଆମକୁ ପୁରା କାବୁ କରିଦେଇଛି । ବିଦେଶୀମାନେ ଯାହା କହିଗଲେ ତାକୁ ଆମେ ବେଦର ଗାର ପରି ମାନିନେଲୁ । ଆମେ ଭାବିଲୁ ବିଦେଶୀମାନେ ଜ୍ଞାନୀ ଆଉ ଗୁଣୀ । ଆମେ ବୋକା । ବିଦେଶୀମାନେ ଭଦ୍ର । ଆମେ ଅଭଦ୍ର । ସେମାନେ ଯାହା କହିଥିଲେ କି କହିଲେ ଆମେ କହିଲୁ ବଢ଼ିଆ । ସେମାନେ କହିଲେ ଆମ ଦେଶଟା ଭାରତ ନୁହେଁ—ଇଣ୍ଡିଆ । ଆମେ କହିଲୁ—ଠିକ୍ ଠିକ୍ । ଭାରତ ଗୋଟାଏ କଣ ? ଛିଃ ଯାବତ ମାନ୍ଧାତା ଅମଳର ଅପରଛନିଆ ନାଁ । ଗୋଟାଏ ବିଲୁଆ ଭୁକିଲେ ସବୁ ବିଲୁଆ ଭୁକନ୍ତି ପରି ଆମେ ସମସ୍ତେ କୁହାମୁଣ୍ଡା କପିଳାଯାକ କହିଲୁ—ଇଣ୍ଡିଆ, ଇଣ୍ଡିଆ । କେତେ ବଢ଼ିଆ ନାଁ ସତେ ! ଆଉ ଭାରତ ଅସିଆ କାଳର ମସିଆ ନାଁ—ଥୁଃ । ଆମେ ଭାରତକୁ ଛାଡ଼ିଲୁ, ଇଣ୍ଡିଆକୁ ଧରିଲୁ । ଦକ୍ଷିଣ ଭାରତକୁ ଛାଡ଼ିଲୁ, ଡେକାନକୁ ଧରିଲୁ । ସିଂହଳକୁ, ଲଙ୍କାକୁ ଛାଡ଼ିଲୁ, ସିଲୋନକୁ ଧରିଲୁ । ଏଇମିତି ଯାହାସବୁ ଆମର ଥିଲା ସବୁ ଆମେ ଛାଡ଼ିଲୁ । ବିଦେଶୀଏ କହିଲେ ଆର୍ଯ୍ୟମାନେ ଭାରତର ନୁହନ୍ତି, କାସ୍ପିୟାନ ହ୍ରଦ କୂଳରୁ ଆସିଛନ୍ତି । ଆମ ଚେର ସିଆଡ଼େ । ଗାଈ ଗୋରୁ ଧରି ଆମେ ବାରବୁଲାଯାକ

ଏଠିକି ଆସିଛୁ । ଆମ ଇଂରେଜୀ ପଢ଼ୁଆ ପଣ୍ଡିତମାନେ ବିଦେଶୀମାନଙ୍କ କଥାରେ ଭାସିଗଲେ । ନ ହେଲେ ସେମାନଙ୍କୁ ସୁନ୍ଦର ବୋଲି କିଏ କହନ୍ତା ? ନିଜକୁ ହଗଲ ଦେଲେ ଇମିତି ମଣିଷ କହେ । ଯେତିକି ଶିଖି ଆସନ୍ତି ସେତିକି କହନ୍ତି । ଯାହା ଶିଖାଇଛି ଜଟାଧାରରେ ବସିଛି । ଆର୍ଯ୍ୟମାନେ ଏଠିକାର ନୁହନ୍ତି; ବାହାରର । ସେମାନେ ଆସି ଏଠି ଆଦିବାସୀ ଓ ଦ୍ରାବିଡ଼ମାନଙ୍କୁ ହଟେଇ ଦେଇ ଆସ୍ଥାନ ମାଡ଼ି ବସିଲେ । ଆମକୁ ଆର୍ଯ୍ୟ, ଦ୍ରାବିଡ଼ ଓ ଆଦିବାସୀ ଭେଦରେ ଭାଗ ଭାଗ କରିଦେଲେ । ଆମ ଭିତରେ ଫାଟ କରେଇ ଦେଇ ମଜା ଦେଖିଲେ । ଆମେ ଥେଇ ଥେଇ ହୋଇ ନାଚିଲୁ । ଆମ ନାଚ ସରୁ ନାଇ । ନାଚ ଚାଲୁଛି । ଇମିତି ବି ଚାଲୁଥିବ । କାରଣ ଆମର ସ୍ୱଦେଶୀପଣିଆଟା ଲୋପ ପାଇଯାଇଛି । ଆମକୁ ପୁଣି ହରିଜନ, ଗିରିଜନ, ବଡ଼ଜନ, ସାନଜନ, ସଂଖ୍ୟାଗୁରୁ, ସଂଖ୍ୟା ଲଘୁ—ଇମିତି କେତେ ନାଇ କେତେ କେତେ ମୋହର ମାରି ଦିଆଯାଇଛି । ଆମ ଭିତରେ ସାନ ସାନ ସ୍ୱାର୍ଥଗୁଡ଼ାକୁ ଭର୍ତ୍ତି କରିଦିଆଯାଇ ଆମକୁ ପଙ୍କ ଭିତରେ ଲଟପଟ କରେଇ ଦିଆଯାଇଛି । ତାରି ଭିତରେ ଆମେ ଗର୍ଜନ ତର୍ଜନ ରେ ରେ କାର କରୁଛୁ । ଫାଟ କରେଇ ଦେଉଥିବା ମଣିଷମାନେ ଉପରେ ବସି ମଜା ଦେଖୁଛନ୍ତି ଓ ସେମାନଙ୍କର ସିଂହାସନକୁ ଟାଣ କରୁଛନ୍ତି ।

ଆମ ପୁଣ୍ୟ ଭାରତ ହୋଇଗଲା ଇଣ୍ଡିଆ । ସୈନ୍ଧବ ଗାଙ୍ଗେୟ ସମତଳ ଭୂମି ହେଲା ଇଣ୍ଡସ୍ ଭାଲି ପ୍ଲେନ୍ । ଆମ ଭାରତର ଦ୍ୱାର ଦେଶ ହେଲା ଇଣ୍ଡିଆ ଗେଟ୍ । ଏଇମିତି ସବୁଥିରେ ଲାଗିଗଲା ଇଣ୍ଡିଆ । ଏୟାର ଇଣ୍ଡିଆ, ଇଣ୍ଡିଆନ୍ ଏୟାର ଲାଇନ୍, ଅଲ ଇଣ୍ଡିଆ ରେଡ଼ିଓ, ଅଲ ଇଣ୍ଡିଆ ୟୁଥ୍ କଂଗ୍ରେସ, ଅଲ ଇଣ୍ଡିଆ ଓମେନ ଅରଗାନାଇଜେସନ, ଅଲଇଣ୍ଡିଆ ଏଡମିନିଷ୍ଟ୍ରେଟିଭ ସର୍ଭିସ୍, ଅଲଇଣ୍ଡିଆ ଫ୍ରିଡମ୍ ଫାଇଟରସ୍ ଆସୋସିଏସନ—ଇମିତି କେତେ ନାଇ କେତେ କଥା । ସବୁଥିରେ ଇଣ୍ଡିଆ । ଭାରତ ନାଁ ସଙ୍କୁଚିତ ହୋଇଗଲାଣି । ଇଣ୍ଡିଆ ତାକୁ ଗ୍ରାସ କରିଦେଲାଣି । ସବୁଆଡ଼େ କେବଳ ଇଣ୍ଡିଆ—ବମ୍ ବମ୍ ଭୋଲେ ।

ଏଇ ଇଣ୍ଡିଆ ହାଓ୍ୱାଟା ଇମିତି ଜୋରରେ ବୋହୁଛି ଯେ ଆମକୁ ଆଉ କିଛି ଦେଖାଯାଉ ନାହିଁ । ଆମେ ପାଲଟିଯାଉଛୁ ଅନ୍ଧ । ଯାବତ ବିଦ୍ୟା ବୁଦ୍ଧି ଜ୍ଞାନର ମସଲା ଓ ପୁଞ୍ଜି ବିଦେଶରୁ ବସ୍ତା ବସ୍ତା ଜାହାଜରେ ଲଦା ହୋଇ ଆମ ଦେଶକୁ ଆସୁଛି । ଆମେ ସମସ୍ତେ ଲୁଟି ନେବାପାଇଁ ଧରପଗ ହେଉଛୁ । ଯିଏ ପାରୁଛି ସିଏ ଲୁଟି ନେଉଛି । ସିଏ ହୋଇଯାଉଛି ମାତବର । ଯିଏ ପାରୁ ନାହିଁ ସିଏ ହାଇଁପାଇଁ ହେଉଛି । ଏବେ ଦେଶସାରା ଯାହା ଦେଖୁଛୁ ସବୁ ସେଇ ବିଦେଶୀ ମସଲା । ଆମ ମସଲା ବାସୁ ନାଇ । ବିଦେଶୀ ମସଲା ବାସୁଛି । ଆମ ତନ

ଦୋନମୁଖା । ବିଦେଶୀ ଚଳ ଏକ ନମୁଖା । ଏଇ କେତେ ବର୍ଷ ହେଲା ଆମେ ସାମ୍ୟବାଦ ଓ ସମାଜବାଦ କଥା କଣ୍ଠ ଫଟେଇ କହୁଛୁ । ଏଇଟାକୁ ଆମେ ଆମଦାନି କଲୁ ବିଦେଶରୁ । ଏଥିରେ ଆମର ଗୁରୁ ହେଲେ ବିଦେଶୀ । ଶୁଆକୁ ଘୋଷେଇଲା ପରି ଆମକୁ ଘୋଷେଇଲେ । ଆମେ ଘୋଷିଲୁ । ଅଥଚ ଆମେ ଏହାକୁ ଆମ ମାଟିରେ ମିଶେଇ ପାରିଲୁ ନାହିଁ । ଆମ ସମାଜବାଦରେ ଧର୍ମ ଥିଲା । ବେଦ ବେଦାନ୍ତରେ ଏକଥା କୁହାଯାଇଥିଲା । ଆମ ଶାସ୍ତ୍ରରେ ବି ଏକଥା ଥିଲା । ଆମ ଗାନ୍ଧୀ ମହାତ୍ମା ମଧ୍ୟ ଏଇ କଥା କହିଥିଲେ । ଆମେ କିନ୍ତୁ କ୍ଷମତା ଡୋରି ପାଇଗଲା ପରେ ସବୁକଥା ଭୁଲିଗଲୁ । ଆମେ ବଡ଼ପାଟି କରି କହିଲୁ ଏଇ ଧର୍ମଟାଇ ଅସଲ ନାଟର ଗୋବର୍ଦ୍ଧନ । ଏଇଟା ପାଇଁ ଯାବତ ଶୋଷଣ, ପୀଡ଼ନ ଓ ଅତ୍ୟାଚାର । ଧର୍ମର ତଣ୍ଟି ଚପି ଦେଲେ ସବୁ ଠିକ୍ ହୋଇଯିବ । 'ମୂର୍ତ୍ତି ମାଇଲେ ଯିବ ସଗ/ଦେବଙ୍କ ସଙ୍ଗେ କମ୍ପା କଲ' । ଆମକୁ ଏଇ କଥା ମଧୁରିଆ ଲାଗିଲା । ଆମେ କ୍ରମେ କ୍ରମେ ଧର୍ମଛଡ଼ା ହୋଇଗଲୁ । ଧର୍ମ କଥାକୁ କହିଲୁ ଅନ୍ଧବିଶ୍ୱାସ, ଗାଲୁ ଗଳ୍ପ ! ଭଗବାନ ମିଛ । ଏଇକଥା ବେଶୀ କହିଲେ ଭାରତ-ଲୋକେ । ଇଣ୍ଡିଆ ଲୋକେ ଏ କଥା କହିଲେ ନାହିଁ । ଭାରତ ଲୋକେ ଇଣ୍ଡିଆ ବନିଯିବା ପରେ ଆଗଚଲା ହୋଇଗଲେ । ଆମେ ବୁଝିବାକୁ ଚେଷ୍ଟା କରୁ ନା ଧର୍ମଟା କଣ ? ଧର୍ମ ଓ **ଭଗବାନ** ଆମକୁ ଡରେଇ ରଖିଥିଲା କି ନାଇଁ; ଜଣା ନାହିଁ । ତେବେ ଏସବୁ ଭାବନା ଆମ ଭିତରେ ସୃଷ୍ଟି କରିଥିଲା ଗୋଟାଏ ଉଦାର ଓ ସହିଷ୍ଣୁ ଭାବ । ମଣିଷକୁ ଭଲ-ପାଇବାକୁ କହିଥିଲା । ଏଇଟା ଲୋପ ପାଇଲା ପରେ ଆମେ ନା ହେଲୁ ସାମ୍ୟବାଦୀ, ନା ସମାଜବାଦୀ, ନା ଗଣତନ୍ତ୍ରୀ । ଆମେ ହୋଇଗଲୁ ହିଂସ୍ର ଓ ପ୍ରମତ୍ତ । ଆମେ କହିଲୁ ବେଦବେଦାନ୍ତକୁ ଛାଡ଼, ରାମାୟଣ ମହାଭାରତ ଭାଗବତକୁ ଛାଡ଼ । ଭଲକଥା, ଖୁବ୍ ଭଲକଥା । ଏଥର ଆମେ ଆଉ କାହାକୁ ନେଇ ଗର୍ବ କରିବା ? ଆମର କଣ ମସଲା ରହିଲା ? ତମେ କହୁଛ ଭାରତର ଯାହା ସମ୍ପତ୍ତି ତାକୁ ଫୋପାଡ଼ ଦେବା, ଯାହା ଇଣ୍ଡିଆର ତାକୁ ଗ୍ରହଣ କରିବା । ଯାହା ବିଦେଶୀ ଗୁରୁମାନେ କହୁଛନ୍ତି ତାକୁ ହିଁ ମାନିବା । ମାନ, ଭଲକରି ମାନ । ଗୀତାରେ ଅର୍ଜୁନ କହିଲା ଭଲଆ ବର୍ଣ୍ଣସଙ୍କର ପାଲଟି ଯାଅନା । ବର୍ଣ୍ଣସଙ୍କର ହୋଇଗଲେ କୁଳଦ୍ରୋହୀ, ଜାତିଦ୍ରୋହୀ, ଦେଶଦ୍ରୋହୀ ହୋଇଯିବା ସହଜ ହେବ । ଆମର କିଛି ନ ଥିଲା । ଆମେ ଯେ ଆଟେଇ ବୁଲିଛୁଁ ତାହା ବିଦେଶୀ ଆଶୀର୍ବାଦରୁ । ଆମେ ଯୁ ଗଣତନ୍ତ୍ରକୁ ପୂଜା କରୁଛୁ, ସେଇଟାକୁ ମଧ୍ୟ ଆମେ ଲୁଆଡ଼େ ଶିଖିଛୁ ବିଦେଶରୁ । ସତରେ, ଏଇଟା କଣ ? ଗଣତନ୍ତ୍ରର ଅବସ୍ଥା କଣ ହୋଇଛି ? ଇଏ କଣ 'ଜଣ'ର ନା 'ଗଣ'ର ? ଅର୍ଥର ନା ବିବେକର ? କ୍ଷମତାର ନା ସହିଷ୍ଣୁତାର ? ହାୟ ଇଣ୍ଡିଆ ! ତୁ ଏଇ କଥାକୁ ବୁଝି ପାରିବୁ ନାଇ । ତୁ ଖସୁଛୁ ଉପରେ ଉପରେ । ଉଡ଼ୁଛୁ ଆକାଶରେ ।

ଭିତରକୁ ଯାଇନୁ । ଆଉ ଭାରତ—ତାର ଉନ୍ନ ଯେତେ ପୋତା ହେଲେ । ତାକୁ ବୁଝିବା କଣ ଏତେ ସହଜ !

ଏବେ ନୂଆ ଇଣ୍ଡିଆରେ ଚଡ଼କ ପଡ଼ୁଛି ଧର୍ମ ଉପରେ । ଏଇ ଧର୍ମଟା କୁଆଡ଼େ ହନୁମାନ ହୋଇ ବାହାରୁଥିଲା । ଇନ୍ଦ୍ରପଦ ମାଗ ନେଇଥାନ୍ତା କୁଆଡ଼େ । ସେଇ ଭୟରେ ଇନ୍ଦ୍ର ଦେବତା କ୍ରୋଧରେ ଜର ଜର ହୋଇଗଲେ । ବଜ୍ରାଘାତ କଲେ ଯେ ଧର୍ମଟା ଛତରଫାଳ ହୋଇଯାଇଛି । ମନେରଖ ବନ୍ଧୁ, ମନେରଖ । ହନୁମାନ ମଲା ନାଇ । ସାରା ଜଗତରେ ପବନ ବନ୍ଦ ହୋଇଗଲା । ତ୍ରାହି ତ୍ରାହି ଡାକ ପଡ଼ିଲା । ହନୁମାନ ଜୀଇଲା । ରାବଣ ବଇଁଶକୁ କଣ ନ କଲା ସେ ! ଏବେ ତମେ କହୁଛ ଧର୍ମକଥା କହିବ ନାଇ, ଧର୍ମକଥା ଶୁଣିବ ନାଇ, ଧର୍ମ କଥା ପଢ଼ିବ ନାଇ, ଧର୍ମ କଥା ଦେଖିବ ନାଇ । ସେଇଟା ପାପ । ଘୋର ପାପ । ନର୍କରେ ପଡ଼ିଯିବ । ଯମଦଣ୍ଡ ଭୋଗିବ । ରାଜନୀତି ଭିତରେ ଧର୍ମ ପଶିଗଲେ ସବୁ ସରିଗଲା । ହୁରି ହେମାଳ ପଡ଼ିଯିବ । ଧର୍ମକୁ ପିଟ । ଗୋରୋଛୁଆ କରି ପିଟ । ପିଠିରୁ ଛାଲ ଉତାରି ଦିଅ । ଭାରତ ନାଁକୁ ଉଠେଇ ଦିଅ । ଯେଉଁ ପୁରାଣ ଶାସ୍ତ୍ରରେ ଏଇ ନାଁଟା ଅଛି ତାକୁ ଜାଳି ଦିଅ । ନୂଆ ଇଣ୍ଡିଆ ଗଢ଼ । ସବୁ ଠିକ୍ ହୋଇଯିବ । ପୁରୁଣା ବୃନ୍ଦାବନକୁ ଭୁଲିଯାଅ । କାହିଁକି ତାକୁ ଧରିବ ? ତା ନାଁ କାହିଁକି ମନେପକେଇବ ? ନୂଆକୁ ଧର । ଏକଥା ଯେଉଁମାନେ କହୁଛନ୍ତି ସେମାନେ କିଏ ? ସେମାନଙ୍କ ଜାତି ପତି କଣ ? ମତଲବ୍ କଣ ? ଏମାନେ ସମସ୍ତେ ଭାରତର ହୋଇ ଇଣ୍ଡିଆର ସାଜିଛନ୍ତି । ହୁସିଆର ଭାଇ ହୁସିଆର । ନେଡ଼ିଗୁଡ଼ କହୁଣିକି ବୋହିଯିବ । ଇଣ୍ଡିଆ ରହିବ ନାଇ । ବେଣ୍ଟୁ ରାଜାର ଫୁଟାଣି ରହିଲା ନାଇ । ଭାରତ ରହିଛି ଆଉ ରହିବ । ନୂଆ ଆଲୋକ ଦେଖେଇବ । ମଝିରେ ଖାଲି ଯାହା ଗୋଟାଏ ହଟଚମଟ । ଆମେ କଣ ଇଣ୍ଡିଆନ ହେବାର ନିଶାଟା ଛାଡ଼ି ଭାରତୀୟ ହେବା ନାହିଁ ? ହଉ ନ ହୁଅ । ପରେ ଜାଣିବ ନାଇ କଣ ହେଲା ?



# ସଂଘମ୍ ଶରଣଂ

ମଣିଷ ଯେତିକି ଯେତିକି ସଭ୍ୟ ହୋଇଛି, ଶିକ୍ଷିତ ହୋଇଛି; ସେତିକି ସେତିକି ସେ ଏକକ ଜୀବନରୁ ଗୋଷ୍ଠୀ ଜୀବନକୁ ଆଦରି ନେଇଛି ଏବଂ ସୁବିଧା ହାସଲ ପାଇଁ ଗଢ଼ି ଦେଇଛି ଗୋଟାଏ ଗୋଟାଏ ସଂଘ । ସେଇ ସଂଘର ଶରଣ ପଶିଗଲେ ତେଣିକି ତମ ପାଇଁ ସଂଘ ଅଣ୍ଟାଭିଡ଼ି ଛିଡ଼ା ହୋଇଯିବ । ସଂଘ ହୋଇଯିବ ତମର ତ୍ରାଣକର୍ତ୍ତା । ତମେ ବୁଦ୍ଧଙ୍କ ଶରଣ ପଶ କି ଧର୍ମର ଶରଣ ପଶ, ସେସବୁ ତମକୁ ରକ୍ଷା କରିପାରିବେ ନାହିଁ । ସଂଘ ହିଁ ସବୁ କିଛି । ସଂଘ ହିଁ ହର୍ତ୍ତା କର୍ତ୍ତା ବିଧାତା । ଏଇ ସଂଘ ଭାବନାଟା ଆଗକାଳେ ଥିଲା ଯେ, ହେଲେ ସେଇଟା ଥିଲା ଧର୍ମପାଇଁ, ମଣିଷ ହେବାପାଇଁ । ଏବେ କିନ୍ତୁ ସେଇଟା ଆଉ ଧର୍ମ ପାଇଁ ନୁହଁ କି ମଣିଷ ହେବାପାଇଁ ନୁହଁ; ଯେନତେନ ପ୍ରକାରେ ଦାବୀ ହାସଲ କରିବାପାଇଁ, ମାଲିକ ହେଉ କି ସରକାର ହେଉ ତାକୁ ଅଙ୍ଗୁଳିରେ ନଚାଇ ଦେଇ ସୁବିଧା ମାରିନେବା ପାଇଁ । ସଂଘ ପାଖରେ ବଳ କାହାର ! ଯେତେ ବଳୁଆ ହେଉ କି ସ୍ଥୂଳକଟରୁର ହେଉ, ସଂଘ ପାଖରେ ସଭିଏ ମୂଷା । ନ ହେଲେ ନୀଳବର୍ଣ୍ଣ ଶୃଗାଳର ଦଶା ଭୋଗିବାକୁ ହେବ । କିଛି ଦିନ ହୁଏତ ନିଜକୁ ନିଆରା କରି ଦେଇ ଜଣେ ରଜା ବନିଯାଇପାରେ, ଅନ୍ୟମାନଙ୍କୁ ଠକି ଦେଇପାରେ; ହେଲେ ଧରାପଡ଼ିଗଲା ବେଳକୁ ଅକଲ ଗୁଡ଼ୁମ୍ ହୋଇଯାଏ । ଏଇଥିପାଇଁ କହୁଛି ସଂଘମ୍ ଶରଣଂ ଗଚ୍ଛ ।

ଆଧୁନିକ ଯୁଗର ସଂଘ ଭାବନାଟା ପାଶ୍ଚାତ୍ୟ ଦେଶରୁ ଆମଦାନୀ । ଶିଳ୍ପକୁ ନେଇ ଏଇ ସଂଘ ଭାବନାର ସୃଷ୍ଟି । ଗୋଟିଏ ପଟେ ମାଲିକ ଶ୍ରେଣୀ, ଆଉ ଗୋଟିଏ ପଟେ ଶ୍ରମିକ ଶ୍ରେଣୀ । ଗୋଟିଏ ଉପଭୋଗୀ । ଆଉ ଗୋଟିଏ ସର୍ବହରା । ଏଇ ସର୍ବହରାମାନଙ୍କର ସଂଗ୍ରାମ ମାଲିକ ଶ୍ରେଣୀ ବିରୋଧରେ । ଶ୍ରମିକ ସଂଘରୁ କ୍ରମେ କ୍ରମେ ଆଉ ସବୁକ୍ଷେତ୍ରରେ ସଂଘ ସୃଷ୍ଟି ହୋଇଗଲା । ଏଇ ସଂଘଟା ଏବେ ବିଶ୍ୱବ୍ୟାପୀ । ସବୁଠି ସଂଘ ଏବଂ ସଂଘରୁ ସବୁଠି ସଂଘର୍ଷ । ଦାବୀ ହାସଲ ପାଇଁ ଆମକୁ ମାର୍ଗ ଦେଖେଇ ଦେଇଛି ସଂଘ । ତମେ କିଛି କର ବା ନକର; ଦାବୀ ହାସଲ ହେଉଛି ଅସଲ କଥା । ଆମ ଦେଶରେ ସ୍ୱାଧୀନତା ଲାଭର ପଇଁଚାଳିଶ ବର୍ଷ ଭିତରେ ଆମେ ନିଜ ହାତରେ ନିଜେ ଚଉଦ ପା' ହୋଇଯାଇଛୁ । ଆମେ ହୋଇଯାଇଛୁ ସବ୍‌ଜାନତା । ଆମ ପାଖରେ ଆଉ ଶିଖିବାକୁ କିଛି ନାହିଁ କି ଜାଣିବାକୁ କିଛି.

ନାହିଁ । ଆମେ ସମସ୍ତେ ଓଳିଆରୁ ଗଜା । ସାରା ଦେଶକୁ ଚଳୁ କରିଦେବା ପାଇଁ ଆମକୁ ବେଶୀ ସମୟ ଲାଗୁ ନାହିଁ । ଆମେ ଅଗଷ୍ଟିଙ୍କୁ ବି ବଳି ଗଲୁଣି । ଆମେ ଗୋଟାଏ କଥା ଚଳେଇ ଜାରି କହୁଛୁ ଯେ 'ଆମର ଦାବୀ ପୂରଣ ହେଉ ।' ସେଇଟା ଯଥା ହେଉ କି ଅଯଥା ହେଉ କିଛି ଯାଏ ଆସେ ନାହିଁ । କଣରେ ହାତ ମାରି ବାହାଦୁରୀ ଦେଖାଇବା ଯେମିତିକି ହୋଇଯାଇଛି ଆମର ପୁରୁଷପଣିଆ । ଯିଏ ଦାବୀ କରିପାରେ ନାହିଁ, ପାଁ'ଜଣଙ୍କୁ ମେଳେଇ ଆନ୍ଦୋଳନ କରିପାରେ ନାହିଁ ସିଏ ଗୋଟାଏ ନମ୍ବର ବୋକା । ସିଏ ଏ କୂଳକୁ ନୁହଁ କି ସେ କୂଳକୁ ନୁହଁ । ସିଏ ପାଳଟିଯାଏ ଅଠିଆ ବଳଦ । ଯେତେ ତା' ପିଠିରେ ଲଦିଲେ ମଧ୍ୟ ସେ ବୁଲେଇ ନାହିଁ ତାକୁ ବୋହିବ । ବାଟରେ ପଡ଼େ ସେ ରକତ ମୁତୁ କି ଆଣ୍ଠେଇ ପଡ଼ି ପ୍ରାଣ ହରାଉ—ତଥାପି ସେ ପ୍ରତିବାଦ କରେ ନାହିଁ । ଯିଏ ଦାବୀକରେ ଓ ଦାବୀ ହାସଲ ପାଇଁ ପାଁ ଜଣଙ୍କୁ ସାଙ୍ଗରେ ମେଳେଇ ନେଇପାରେ ସେଇ ଏକା ଜଗତପତି ହୁଏ ।

ସ୍ୱାଧୀନତା ଆନ୍ଦୋଳନବେଳେ ଗାନ୍ଧୀ ମହାତ୍ମା ଆମକୁ ଶିଖେଇ ଦେଇଥିଲେ ଗଣତାନ୍ତ୍ରିକ ପନ୍ଥାରେ ଦାବୀ ଜଣେଇବା ପାଇଁ । ତମ ଉପରେ ଲାଠି ମାଡ଼ ହେଉ ତମ ହାଡ଼ ଗୋଡ଼ ଚୂନା ହୋଇଯାଉ, ତଥାପି ତମେ ହିଂସା ଆଚରଣ କରିବ ନାହିଁ, କାହାରି ଉପରକୁ ହାତ ଉଠାଇବ ନାହିଁ । ଇମିତି ହେଲେ ବୁଆଡ଼େ ଅତ୍ୟାଚାରୀର ହୃଦୟ ପରିବର୍ତ୍ତନ ହୋଇଯାଏ । ତାପରେ ସେ ସବୁ ଦାବୀ ମାନିଯାଏ । ଗାନ୍ଧୀ ମହାତ୍ମା ସିନା ଏକଥା କହିଲେ, ହେଲେ କେତେଟା ଲୋକର ହୃଦୟ ପରିବର୍ତ୍ତନ ହୋଇଗଲାଣି ? ଆରେ ବାପା; ଇଏ ତ ସବୁ ଆଦର୍ଶ କଥା । ଏଇଟା ଆଦୌ ବାସ୍ତବ ନୁହେଁ । କ୍ଷମତାର ଚୌକିକୁ ଧରିଥିବା ମଣିଷ କଣ କାହାକୁ ଖାତିର କରେ ? ବଡ଼ଲୋକ କଣ ସାନ ସାନ ଲୋକଙ୍କ ପାଦତଳେ ପଡ଼ିଯାଏ ? ହଁ; କାଳେ କେଉଁଠି ହେଉଥିବ । ଆମେ ତ ଅଗୁଆଁର ମଣିଷ । ମନା କରିଦେବା କାହିଁକି ? ତମେ ଯଦି ଭାବୁଥାଅ ଯେ ଗାନ୍ଧି ମହାତ୍ମାଙ୍କୁ ଗୁରୁ କରିନେଇ ହାମ୍‌ବଡ଼ା ଲୋକଙ୍କ ପାଖରେ ପିଠି ଦେଖେଇ ଦେବ; ଦେଖାଅ । କେହି ତମକୁ ମନା କରୁ ନାହିଁ । ଅକଲ ସଲାମ ପାଇଲେ ତେଣିକି ଅପେ ସବୁ କଥା ହେଜଯିବ ନାହିଁ ?

ଗୋଟାଏ ଗୋଟାଏ ମଣିଷ ଇମିତି ଥାଆନ୍ତି ଯେ ନିଜକୁ ସେମାନେ ଇନ୍ଦ୍ର ମନେ କରନ୍ତି । ସୂର୍ଯ୍ୟ ଚନ୍ଦ୍ର ମାନନ୍ତି ନାହିଁ । ଟିକଏ କଣ କ୍ଷମତା ପାଇଗଲେ ଧରାକୁ ସରା ମନେ କରନ୍ତି । ସରଗ ସେମାନଙ୍କୁ ଦେଖାଯାଏ ଦ' ଆଙ୍ଗୁଳ । ପିମ୍ପୁଡ଼ି ରୁଖାକୁ ଚଢ଼ିଲା ପରି ସେ ନିଜକୁ ସ୍ୱର୍ଗର ରଜା ମନେ କରେ । ଏଇଥିପାଇଁ ପରା କୁହାଯାଇଛି—'ଅଳପ ଲୋକେ ଅଧିକାର/କମ୍ପାଇ ଦେଲୁ ଦାମୋଦର ।' ଅଳପଜଣିଆ ଲୋକ କଣ ଟିକେ ଅଧିକାର ପାଇଗଲେ ସିଏ ଆଉ କାହାକୁ ମାନେ ନାଇ । ତାର

ଫୁଟାଣି ବଢ଼ିଯାଏ । ତା' ନାକ ତଳ ଲୁଣ ଉପଟ ଖାଲି ନାଚଯାଏ । ଉର୍ଥ ଦେବତା ବି ତ'ମନ ପଡ଼ନ୍ତି ନାହିଁ । ତା' ହାତରେ ଆଇନର ଦଣ୍ଡ ଆସି ଥିଲେ— ସିଏ ଗୋଟାଏ ଷଣ୍ଢ ପାଲଟିଯାଏ । କାହାକୁ ହାତକଡ଼ି ତ କାହାକୁ ଗୋଡ଼କଡ଼ି । ସିଏ ମାଇଚ୍ଛୁ ଅଣ୍ଡିରା, ଅଣ୍ଡିରାକୁ ମାଇ, ଚୋରକୁ ସାଧୁ, ସାଧୁକୁ ଚୋର କରିପାରେ । ତାକୁ ପାଁଜଣ ମାନ ଜଣନ୍ତି । ନ ମାନିବାରେ ଗତି କାହିଁ ? ଆରେ ବାପ୍ , ସିଠି ଦିଣ ଗଲ୍ କରୁଛ କ ? ସିଏ ଯେତେ ବାଡ଼େଇଲେ କ ତମ ମୁଣ୍ଡ ଫଟେଇ ଦେଲେ କ ତମେ ମରିଗଲେ ମଧ୍ୟ, ସିଏ ବାଡ଼େଇଛି କ ମାରିଛି ବୋଲି ପ୍ରମାଣ କିଏ ? ସିଏ ପ୍ରମାଣ ଦେବ, ସିଏ କିଏ ଅପୁ ପଡ଼ିବ ? ସବୁ କଥାରେ ଦରକାର ସାକ୍ଷୀ ଆଉ ପ୍ରମାଣ । ତମେ ଯଦି ସାକ୍ଷୀ ଦେଇ ନ ପାରିବ, ପ୍ରମାଣ ଯୋଗେଇ ନ ପାରିବ, ତେବେ ତମେ କେମିତି ନିର୍ଦ୍ଦୋଷ ପ୍ରମାଣିତ ହେବ ? ଏଇ ଦେଖୁନା ମହାଭାରତ ଯୁଦ୍ଧ ବେଳେ କୃଷ୍ଣ ତ ଶପଥ କରିଥିଲେ ବଡ଼ ଭାଇଙ୍କ ପାଖରେ ଯେ ଅସ୍ତ୍ର ଧରିବେ ନାହିଁ; ନିରପେକ୍ଷ ରହିବେ । କିନ୍ତୁ ସେ ନିରପେକ୍ଷ ରହିଲେ ନା ଅସ୍ତ୍ର ଧରିଲେ ନାହିଁ ? ଭୀଷ୍ମଙ୍କ ବାଣକୁ ଯେତେବେଳେ ଅର୍ଜୁନ ଅଟକେଇ ପାରିଲେ ନାହିଁ ସେତେବେଳେ କୃଷ୍ଣ ସୁଦର୍ଶନକୁ ହାତରେ ଧରି ଯୁଦ୍ଧ ଭୂମିରେ ଦଉଡ଼ି ଦଉଡ଼ି ଭୀଷ୍ମଙ୍କ ରଥ ଉପରକୁ ଚଢ଼ିଗଲେ ଓ ତାଙ୍କୁ ଧମକ ଦେଲେ ଶରକୁ ଫେରେଇ ଆଣିବା ପାଇଁ, ନ ହେଲେ ସେ ତାଙ୍କୁ ସୁଦର୍ଶନରେ ହାଣିଦେବେ । ଭୀଷ୍ମ ତ ଏତକ ମାଗୁ ଥିଲେ ଯେ କୃଷ୍ଣ ତାଙ୍କ ରଥକୁ ଟିକେ ଆସିଗଲେ ତାଙ୍କ ଜୀବନ ଧନ୍ୟ ହୋଇଯିବ । କୃଷ୍ଣ ଯେତେବେଳେ ତାଙ୍କ ରଥକୁ ଆସିଗଲେଣି ସେତେବେଳେ ଆଉ ଗୋଟାଏ ଯୁଦ୍ଧ କିଏ ? ସେ ହଠାତ୍ ଯୁଦ୍ଧ ବନ୍ଦ କରିଦେଲେ । ଦୁର୍ଯ୍ୟୋଧନ, ଦ୍ରୋଣ ଓ କର୍ଣ୍ଣ—ସମସ୍ତେ ବ୍ୟସ୍ତ । ଇଏ କିଏ ଆମର ନିଶ୍ଚିତ ବିଜୟ ବେଳେ ଭୀଷ୍ମ ଇମିତି କଲେ କାହିଁକି ? ଭୀଷ୍ମ କହିଲେ ଯେ କୃଷ୍ଣ ଯୁଦ୍ଧରେ ଅସ୍ତ୍ର ଧରି ତାଙ୍କୁ ହତ୍ୟା କରିବାକୁ ଧମକ ଦେଇଥିବାରୁ ଓ ସତ୍ୟକୁ ଲଂଘନ କରିଥିବାରୁ ସେ ଯୁଦ୍ଧ କରିବେ ନାହିଁ । କଥାଟା ପହଞ୍ଚିଲା ଯାଇଁ ବଳରାମଙ୍କ ପାଖରେ । ରୁଦ୍ରମୂର୍ତ୍ତି ଧରି ସେ ପହଞ୍ଚିଗଲେ, କୃଷ୍ଣ ସମେତ ପାଣ୍ଡବ ପାଞ୍ଚଭାଇଙ୍କୁ ଧ୍ୱଂସ କରିଦେବା ପାଇଁ । କୃଷ୍ଣ ତ ମହାଧୂର୍ତ୍ତ । ସେ ଭାଇଙ୍କୁ ବୁଝେଇ ଦେଲେ ଯେ ଯଦି ସେ ଅସ୍ତ୍ର ଧରିଛନ୍ତି, ତାର ପ୍ରମାଣ କିଏ ? କିଏ ଦେଖିଛି ? ସତ କଥା ତ ! ସାକ୍ଷୀ କିଏ ? ଏଡ଼େ ବଡ଼ ଯୁଦ୍ଧ କ୍ଷେତ୍ରରେ କେହି ଦେଖି ପାରିଲେ ନାହିଁ କେବଳ ଅଭିଯୋଗକାରୀ ଭୀଷ୍ମଙ୍କ ବ୍ୟତୀତ ? କଥାଟା ବାଏଁ ବାଏଁ ମିଛ ହୋଇଗଲା । ବଳରାମ ଅଣ୍ଡା ହୋଇ ଫେରିଗଲେ । ଏଇମିତି ସତକଥା ଯାକ ମିଛ ହୋଇଯାଏ, ମିଛ କଥାଯାକ ସତ ହୋଇଯାଏ । ଚତୁର ଲୋକେ ମିଛକୁ ଇମିତି ଫାନ୍ଦ ଦେଇଥାନ୍ତି ଯେ ସେଥିରୁ ଜମା ମୁକ୍ତି ମିଳେ ନାହିଁ ।

ହଁ, ଏଥର ମୂଳ କଥାକୁ ଆସନ୍ତୁ । ଏଇ ଚତୁର ଲୋକଙ୍କ ଅକଡ଼ିଆରେ ପକାଇ ଦାବୀ ହାସଲ କରିବା ହେଲା ସଂଘର କାମ । ଆଗ କଥାଟା ଥିଲା ନିଆରା । ଏବକା କଥା କିନ୍ତୁ ଅଲଗା । ଆଗ କାଳରେ ରାଜତନ୍ତ୍ର ଥିଲା । ସେଥିରେ ଦାବୀ ନଥାଏ; ଥାଏ ତୋଷାମୋଦ, ଆବେଦନ, ନିବେଦନ । ତଥାପି ବେଳେ ବେଳେ ଯେ ଦାବୀ ନ ଥିଲା; ଇମିତ ନୁହେଁ । ଏଇ ଯେମିତି ସ୍ୱେଚ୍ଛାଚାରୀ ମହାରାଜା ବେଣୁଙ୍କ ପାଖକୁ ଆସିଲେ ପଞ୍ଚାଏ ଋଷି ଦାବୀ ଜଣେଇବା ପାଇଁ । ରାଜା ସେମାନଙ୍କ କଥା ଶୁଣିଲେ ନାହିଁ । ସମସ୍ତଙ୍କୁ ଶୂଳୀରେ ବସେଇ ଦେବାକୁ ଆଦେଶ ଦେଲେ । ଏଣେ ଋଷିମାନଙ୍କ ହୁଂକାର କରାମତି ପ୍ରକାଶ ପାଇଲା । ରାଜା ସିଂହାସନରୁ ଗଡ଼ି ପଡ଼ିଲେ ଯେ ପ୍ରାଣଟା ବି ଚାଲିଗଲା ନେଇଁ ଛଟକରେ । ସାମ୍ୟବାଦୀ ଶାସନରେ ମଧ୍ୟ ଦାବୀ ନ ଥାଏ । ଗୋଟାଏ ଦଳର ସର୍ବମୟ ରାଜୁତି । ଅଖଣ୍ଡ କ୍ଷମତା । ଯିଏ ଦାବୀ କରିବ ସିଏ ବନ୍ଧୁକ ମୂହରେ ଯିବ । ଏଇ ଯେମିତି ଚୀନ୍‌ରେ ଛାତ୍ର ଓ ଯୁବକମାନେ ଦାବୀ ଜଣେଇବାକୁ ଆସି ମଲେ । ଗଣତନ୍ତ୍ରରେ କେବଳ ଦାବୀ କରିବା ସହଜ । ଏଠି ଯିଏ ଯେମିତି ପାରିଲା ସେମିତି ଦାବୀ କରିପାରିବ । କିଏ ଅନଶନ କରି, କିଏ ସଭା ସମିତି କରି, କିଏ ଦୋକାନ ବଜାର ବନ୍ଦ କରେଇ, ଗଣ୍ଡଗୋଳ ଉପୁଜେଇ ଦାବୀ କରିପାରେ । ଏଇ ଦାବୀଟା ଆଜି ଘରେ ବାହାରେ ସବୁଆଡ଼େ କାୟା ବିସ୍ତାର କରିଛି । ଘର ଭିତରେ ପୁଅଝିଅମାନେ ଦାବୀ କରୁଛନ୍ତି ସ୍ୱାତନ୍ତ୍ର୍ୟ ପାଇଁ । କହେ! ବାପା ମାଆ ହୋଇଛ ବୋଲି କଣ ସବୁ କଥାରେ ପୁଅଝିଅଙ୍କ ଉପରେ ହାକିମି ! ଏଇଟା ଆଉ ଚଳିବ ନାହିଁ । ସବୁ କଥାରେ ଗୋଟାଏ କଟକଣା କଣ ? ଅନ୍ୟର ସ୍ୱାଧୀନତା ଉପରେ ଧର୍ଷଣ—ଏଇଟା ଆଦୌ ବରଦାସ୍ତ କରିହେବ ନାହିଁ । ଏଇଟା ଗଣତନ୍ତ୍ର ଯୁଗ, ଭୋଟ ଯୁଗ । ତୋର ଖଣ୍ଡିକୁ ମୋର ଖଣ୍ଡେ । ଏଠି ନ୍ୟାୟ ଅନ୍ୟାୟ, ଉଚିତ ଅନୁଚିତ ଗୋଟାଏ କଣ ? ସଂଖ୍ୟାଗରିଷ୍ଠ ଯୋଉ ପଟରେ ହାତ ଟେକ ଦେବେ, ସେଇଟା ବାଧ ହେଉ କି ଭଲ ହେଉ, ତାକୁ ମାନିନେବାକୁ ହେବ ।

ପାଁଜଣ ଏକାଠି ହେଲେ ଦାବୀ ହାସଲ କରିବା ସହଜ ହୁଏ । କଥାରେ ଅଛି 'ଏକଜଣକା ବୋଝ/ପାଁଜଣଙ୍କା ଲଠି ।' ପାଁଜଣ ମେଳି ହେଲେ ମେରୁ ମଧ୍ୟ ଟଳିପଡ଼େ । ଏଇଥିପାଇଁ ଏବେ ଦେଶସାରା ମେଳି । ଯେଉଁ ମେଳି ଯେତେ ଟାଣ ସେହି ମେଳିର ଦାବୀ ହାସଲ ସେତେ ସହଜ । ଏଇ ମେଳିକୁ ଏବେ କୁହାଯାଉଛି ୟୁନିୟନ ବା ସଂଘ । କେତେ ନାଇ କେତେ ୟୁନିୟନ/କେତେ ନାଇ କେତେ ସଂଘ । କେନ୍ଦ୍ର ହେଉ କି ରାଜ୍ୟ ହେଉ—ସବୁ ସରକାରୀ କର୍ମଚାରୀଙ୍କ ସଂଘ । ସରକାର ଘରେ ମୁଣ୍ଡ ବିକିଲ ବୋଲି କଣ ପେଟ ପାଟଣା ନାହିଁ ? ପିଲାଛୁଆ ନାହାନ୍ତି ? ଅଭାବ ଅସୁବିଧା ଜଣାଇବା ପାଇଁ ତ ସଂଘ ଦରକାର । ଏଇପରି ଜୀବନଯାମା

କର୍ମଚାରୀ ସଂଘ, ଡାକତାର କର୍ମଚାରୀ ସଂଘ, ରେଳ କର୍ମଚାରୀ ସଂଘ, ବ୍ୟାଙ୍କ କର୍ମଚାରୀ ସଂଘ ଇତ୍ୟାଦି କେତେ ନାଇଁ କେତେ କେନ୍ଦ୍ର ସରକାର ସମ୍ପର୍କିତ ସଂଘ । ରାଜ୍ୟ ସ୍ତରରେ କେତେ ଯେ ସଂଘ, କେତେ ଯେ ୟୁନିୟନ—ତାର ହିସାବ କିଏ କହିବ ? ଶ୍ରମିକ ୟୁନିୟନ ତ ଛତୁ ଫୁଟିଲା ପରି ଫୁଟି ଉଠୁଛି । ଯେତେ ୟୁନିୟନ ସେତେ ନେତା । ସେଥିକି ପୁଣି ଯୁଦ୍ଧ । ମାଲିକ ସହିତ ଯୁଦ୍ଧ, ନିଜ ନିଜ ଭିତରେ ଯୁଦ୍ଧ । ବିଜୁଳି କର୍ମଚାରୀ ସଂଘ, ଜନସ୍ୱାସ୍ଥ୍ୟ ବିଭାଗ କର୍ମଚାରୀ ସଂଘ, ପ୍ରେସ କର୍ମଚାରୀ ସଂଘ, ଶିକ୍ଷକ ମହାସଂଘ, ସ୍ୱାଧୀନତା ସଂଗ୍ରାମୀ ସଂଘ, ସାମ୍ବାଦିକ ସଂଘ, ଝାଡ଼ୁଦାର ସଂଘ, କୃଷକ ମହାସଂଘ, ମହିଳା ସଂଘ, ବେକାର ଯୁବକ ସଂଘ, ଗ୍ରାମ ସଂଘ, ଯୁବକ ସଂଘ, ତୈଳିକ ବୈଶ୍ୟ ମହାସଂଘ, ଯାଦବ ସଂଘ, ମଧୁ ବୈଶ୍ୟ ସଂଘ, ପାଠକ ମହାସଂଘ, ଖଣ୍ଡାୟତ କ୍ଷତ୍ରିୟ ମହାସଂଘ, ଦଳିତ ଜାତି ସଂଘ ଇତ୍ୟାଦି ଅଶେଷ ସଂଘ । ହେଲା, ହେଲା । ଆହୁରି ସଂଘ ବଢ଼ୁ । ସଂଘର ଶରଣ ପଶ । ସଂଘର ବଳ ଦେଖାଇ ଦାବୀ ହାସଲ କର । ଗୋଟିଏ କଥା ମନେରଖ—ଏ ସଂଘ ସବୁ କଣ ? ଇଏ କଣ ଏକତା ସୃଷ୍ଟି କରୁଛି କି ? ଦଳେ ଏ ପଟରେ ତ ଦଳେ ସେ ପଟରେ । ଦଳେ ପୁଣି ଏଘର ମାଉସୀ ସେ ଘର ପିଉସୀ । ଖାଲି ଫାଟ ପରେ ଫାଟ ସୃଷ୍ଟି ହୋଇଯାଉଛି । ଯେତେ ସଂଘ ସେତେ ଫାଟ । ସବୁ ସଂଘର ପୁଣି ନେତା । ଆରେ ବାପ୍ ! ଇଏ କି ରେ' ରେ'କାର ଧୂମ ! କେତେ ବଡ଼ ବଡ଼ ନେତା ! କୁଣ୍ଢୁ ପାଇବନି ଜମା । ଏଥିରେ ପୁଣି ଯେଉଁ ସନ୍ତ୍ରାସବାଦୀ ସଂଗଠନ, ନକ୍ସାଲବାଦୀ ସଂଗଠନ, ଆରେ ବାପା ! ସେମାନଙ୍କ କଥା ନ କହିବା ଭଲ । କାହିଁକି କହିବ ? ଜାଣି ଜାଣି ବିପଦକୁ ବରଣ କରି ଆଣିବ ? ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ କିଏ ଅଛି ଯେ ତମକୁ ରକ୍ଷା କରିବେ ? କେହି ନାହିଁ । ସବୁଠି ଆର୍ତ୍ତ ଚିତ୍କାର । ମରଣର ବୁକୁଫଟା ବିଳାପ ।

ଏବେ ଯେଉଁ ପ୍ରକାର ସଂଘ ସୃଷ୍ଟି ହୋଇଛି ସେଇଟା ଆଗକାଳେ ନଥିଲା । ଆଗ କାଳର ସଂଘ ଥିଲା ଧର୍ମ ପାଇଁ, ପ୍ରେମ ପାଇଁ, ମାନବିକତା ପାଇଁ । ଏବକାର ସଂଘ ହୋଇଛି ଗୋଟାଏ ଗୋଟାଏ ମେଣ୍ଟ । ଜାତି, ଧର୍ମ ଓ ଭାଷାକୁ ନେଇ କିଛି ଚତୁର ଲୋକେ ମେଣ୍ଟ କରି ଦେଉଛନ୍ତି । ସବୁ ମେଣ୍ଟର ଲକ୍ଷ୍ୟ ହେଉଛି କିଛି ପାଇବା; ଅର୍ଥ ପାଇବା, ସ୍ୱତନ୍ତ୍ର ସୁବିଧା ପାଇବା । ରାଜନୀତିକୁ ନେଇ ସବୁଠାରୁ ବେଶି ମେଣ୍ଟ ହେଉଛି । ରାଜନୀତିରେ ମେଣ୍ଟ ହେଉଛି ଯେ ବିଶ୍ୱାସ ସୃଷ୍ଟି ହେଉ ନାହିଁ । ଗୋଟାଏ ଅବିଶ୍ୱାସର କଳାଛାଇ ଘେରି ଯାଉଛି । କାଦୁଅ ଫିଙ୍ଗା ଚାଲିଛି ନିଜ ନିଜ ଭିତରେ । ଇଏ ତାକୁ, ସିଏ ହାକୁ କାଦୁଅ ପକାଉଛି । ସମସ୍ତେ କହୁଛନ୍ତି ଯେ ସେମାନେ ଗୋଟାପୁଣି ତୁଳସୀ । ଅଥଚ ତୁଳସୀର ଗନ୍ଧ ନାହିଁ; କେବଳଇ ବିଛୁଆତି । ଦେଶଟା ସାରା ବିଛୁଆତି ଜଙ୍ଗଲରେ ପୂରିଗଲାଣି । ତୁଳସୀ ଲୋପ

ପାଉଛନ୍ତି । ଧେତ୍, ତୁଳସୀ ଗୋଟାଏ କଣ ? ଏଇଟା କେଉଁ ମାନଧାତା ଅମଳର କଥା । ତୁଳସୀ ହେବନ ତ, ଯାଅ, ଶୋଭାପାଇବ ବୃନ୍ଦାବତୀ ଉପରେ । ଟୋପା ପାଣି ଟିକେ ଟିକେ ପାଇ ଜୀବନ ବଞ୍ଚେଇବ । ତମକୁ ଛୁଞ୍ଚେଇ ନେଇ ବଅଁ ଦେବତାଙ୍କ ମୁଣ୍ଡରେ କି ପାଦରେ ଦେଇଦେବେ । ତମେ ନାକ କାନ ଆଉଁସି ରହିବ । ବିଚ୍ଛୁଅତି ହେଲେ ନା, ତମକୁ ସମସ୍ତେ ଭସ୍ମ କରିଦିବେ । ଜାଣୁ ଜାଣୁ କିଏ ତମକୁ ଗେଲ କରିବ, ଆଦରରେ କୁଣ୍ଢେଇ ପକାଇବ ? ହେ ବିଚ୍ଛୁଅତି ! ତମକୁ ପ୍ରଣାମ । ସହସ୍ରବାର ପ୍ରଣାମ । ତମ ସଂଘକୁ ପ୍ରଣାମ । ତମକୁ ଆଜି ସବୁଆଡ଼େ ସ୍ୱାଗତ । ତମ ସଂଘର ଡିମ୍ବ'ଣ୍ଡ ବଢ଼ି ଯାଉଛି । ରାଜନୀତି ଦଳର ନେତାମାନେ ତୁମ୍ଭମାନଙ୍କ ସହିତ ଗୁପ୍ତ ପରାମର୍ଶ କରନ୍ତି । ଲୋକ ଦେଖାକୁ ତୁମ ନାମରେ କେଶ୍ ଗୁଡ଼ା ହୋଇଯାଏ । ହେଲେ ତମର କାଳଟା ଇମିତି ବିଚିତ୍ର ହୋଇଥାଏ ଯେ କେହି ଯାଇ ପାରନ୍ତି ନାହିଁ ସାକ୍ଷୀ ଦେବାକୁ । ତମର ହୁଏ ଜିତାପଟ । ତମ ସଂଘ ନେପଥ୍ୟ ସାମ୍ରାଜ୍ୟର ଅଧୀଶ୍ୱର । ଏଇଠି ଅଛ, ସବୁଠି ଅଛ । ଅଥଚ କୋଉଠି ନାହିଁ । କଣ ପ୍ରମାଣ ?

ଘର୍ଷଣ ସଂଘ, ଘର୍ଷଣ ଯୋଗାଉ, ଘର୍ଷଣ ହୁଇଚଇ । ଘର୍ଷଣ ଉଙ୍ଗାରୁଚି । କେହି ଶୁଣିବାକୁ ନାହିଁ । କେହି ଭାବିବାକୁ ନାହିଁ । କେବଳ ଦାବି । କମିଯାଉଛି ମୂଲ୍ୟବୋଧ, ବିଶ୍ୱାସ, ଧର୍ମ ଓ ସଂସ୍କୃତି । କାସ୍ତା ବିସ୍ତାର କରୁଛି ଅପସଂସ୍କୃତି । ଉପରବାଲା ବସି ରହୁଛନ୍ତି କାଚଘରେ । ସେମାନେ ସୁଖଭୋଗୀ । ସେମାନେ ଚାହାନ୍ତି ନାହିଁ ଅନ୍ୟ କେହି ସୁଖଭୋଗ କରୁ । ଏଇ କାରଣରୁ ସଂଘ ଓ ସଂଘର୍ଷ । ସଂଘ ହେଉ କି ଆନ୍ଦୋଳନ ହେଉ; ସେଥିରେ ପ୍ରକାଶ ପାଉ ଗଣତାନ୍ତ୍ରିକ ମୂଲ୍ୟବୋଧ । ଦାତା ଓ ଗ୍ରହୀତାଙ୍କ ମଧ୍ୟରେ ବୁଝାମଣା ହେଉ । ସହୃଦୟତା ପ୍ରକାଶ ପାଉ । ଏଇଟା ନଥାଇ କେବଳ 'ମୁଁ କାର' ପ୍ରକାଶ ପାଇଲେ କଣ ଦାବି ପୂରଣ ହୁଏ ? ଏଇ 'ମୁଁ କାର' ଯୋଗୁ ସଂଘର୍ଷ । ହୁସିଆର । ରକ୍ତନଦୀ ଯେମିତି ନ ବହେ ! ବହିଲେ ନା, କିଏ ରକ୍ଷା ପାଇବ ? ଦାତା ନା ଗ୍ରହୀତା ? ମାଲିକ ନା ଶ୍ରମିକ ? ନେତା ନା ଜନତା ? କୁଆଡ଼କୁ ଯିବ ? ମାନସରୋବରକୁ ? ସେଠି ବି ରକ୍ଷା ନାହିଁ । ପଛେ ପଛେ ଯମର ରଡ଼ି, ମହାକାଳର ରଡ଼ି । ତାପରେ ତ ଜାନୁଭଗ୍ନ !



# ଗାନ୍ଧିଜୀଙ୍କ ଶିକ୍ଷାନୀତି ଓ ଆଧୁନିକ ବେକାର ସମସ୍ୟା

ମଣିଷ ଯେତେବେଳେ ଚନ୍ଦ୍ରଗ୍ରହରେ ପଦାର୍ପଣ କରିସାରିଲାଣି, ଗ୍ରହରୁ ଗ୍ରହାନ୍ତରକୁ ଯିବାପାଇଁ ଯୋଜନା କରି ସାରିଲାଣି, ସେତେବେଳେ ଭାରତରେ ବେକାର ସମସ୍ୟା ଜନିତ ଅନ୍ନଂଦେହି ଚିତ୍କାର ଓ ଏହାର ସମାଧାନ ପାଇଁ ଗାନ୍ଧିଜୀଙ୍କର ଶିକ୍ଷାନୀତି ପ୍ରୟୋଗ ବାସ୍ତବିକ ଯୁଗୋପଯୋଗୀ ନ ହେଲେ ହେଁ ସ୍ୱତନ୍ତ୍ର ଆଲୋଚନା ସାପେକ୍ଷ । କୌଣସି ଦେଶ ବା ଜାତିର ବିକାଶ ହୋଇଥାଏ ସେହି ଦେଶ ବା ଜାତିର ଆର୍ଥନୀତିକ ଓ ସାମାଜିକ ସମସ୍ୟାକୁ ଭିତ୍ତିକରି ଗଢ଼ା ଯାଇଥିବା ଶିକ୍ଷାନୀତି ଦ୍ୱାରା । ଯଦି କୌଣସି ଦେଶର ଶିକ୍ଷାନୀତି ସେହି ଦେଶର ସମସ୍ୟାକୁ ନେଇ ଗଢ଼ା ନଯାଇ ଅନ୍ୟ କୌଣସି ଦେଶର ଶିକ୍ଷାନୀତି ଅନୁଯାୟୀ ଗଢ଼ା-ଯାଇଥାଏ, ତେବେ ସେ ଦେଶର ମୌଳିକ ସମସ୍ୟାମାନ ସମାଧାନ ହୋଇପାରେ ନାହିଁ । ବରଂ ପୁଣି ବହୁ ସମସ୍ୟା ଦେଖାଦେଇ ଦେଶର ମେରୁଦଣ୍ଡକୁ ଦୋହଲାଇ ଦିଏ । ବିଦେଶାନୁକୃତ ଶିକ୍ଷା କ୍ଷୟ ରୋଗ ଜୀବାଣୁ ଭଳି ଦେଶର ସ୍ଥିତିକୁ ଜୀର୍ଣ୍ଣ ଶୀର୍ଣ୍ଣ କରିଦିଏ । ଅତଏବ କୌଣସି ଦେଶର ଶିକ୍ଷାନୀତି ସେହି ଦେଶର ମୌଳିକ ସମସ୍ୟା-ମାନଙ୍କୁ ଆଖି ଆଗରେ ରଖି ନିର୍ଦ୍ଧାରିତ କରାଯିବା ଉଚିତ ।

ଭାରତରେ ପ୍ରଚଳିତ ଶିକ୍ଷାନୀତିକୁ ବିଶ୍ଳେଷଣ କଲେ ଜଣାଯାଏ ଯେ ଏହି ଶିକ୍ଷାନୀତି ଭାରତର ଜାତୀୟ ସମସ୍ୟାକୁ ସମାଧାନ କଲାଭଳି ହୋଇ ନାହିଁ । ପରୋକ୍ଷରେ ଏହା ଜାତୀୟ ସମସ୍ୟାକୁ ଅଧିକ ତୀବ୍ରତର କରୁଥିବାର ଲକ୍ଷ୍ୟ କରା-ଯାଉଛି । ଏହି ଶିକ୍ଷାନୀତି ବିଭିନ୍ନ ସମୟରେ ବିଭିନ୍ନ ଶିକ୍ଷା ବିଶାରଦମାନଙ୍କ ଦ୍ୱାରା ମାର୍ଜିତ ହୋଇଥିଲେ ହେଁ ଏହା ଭାରତୀୟ ଚିନ୍ତା ପ୍ରସୂତ ନୁହେଁ । ଲର୍ଡ଼ ମ୍ୟାକଲେଙ୍କ ଶିକ୍ଷାନୀତି ସହିତ ଏହା ଯେ ସମ୍ବନ୍ଧାନ୍ୱିତ, ଏଥିରେ ସନ୍ଦେହ ନାହିଁ । ଆଧୁନିକ ଶିକ୍ଷା କେବଳହିଁ ଅକ୍ଷର ଜ୍ଞାନ ଶିକ୍ଷା ଦେଇଥାଏ । ଏହି ଅକ୍ଷର ଜ୍ଞାନକୁ ଉତ୍ତମ ବା ମନ୍ଦ ମାର୍ଗରେ ବିନିଯୋଗ କରାଯାଇପାରେ । ଗୋଟିଏ ଯନ୍ତ୍ର ରୋଗୀକୁ ଭଲ କରିପାରେ ଯଦି ଏହା ଉଚିତ ମାର୍ଗରେ ନିୟୋଜିତ କରାଯାଏ, ନତୁବା ରୋଗୀର ପ୍ରାଣ ମଧ୍ୟ ନେଇପାରେ । ଠିକ୍ ସେହିପରି ଶିକ୍ଷା ଗୋଟିଏ ଜାତିକୁ ଧ୍ୱଂସ କରି ଦେଇପାରେ ବା ଉଚିତ ମାର୍ଗରେ ପରିଚାଳିତ ହେଲେ ଗୋଟିଏ ଜାତିକୁ ଉନ୍ନତ କରାଇପାରେ ।

କିନ୍ତୁ ଆଧୁନିକ ଶିକ୍ଷା ନୀତି ବା ଦେଶର ଉନ୍ନତି କରିବା ପରିବର୍ତ୍ତେ ଘୋର କ୍ଷତି ଯେ କରୁଛି ଏହା ବହୁଭାବରେ ପ୍ରମାଣିତ ହୋଇଛି । ଏହାଦ୍ୱାରା କେବଳ ଜାତୀୟ ସମ୍ପତ୍ତିର କ୍ଷୟସାଧନ ହେବାହିଁ ସାର ହେଉଛି ।

ଭାରତ ଗୋଟିଏ କୃଷିପ୍ରଧାନ ଦେଶ । ଶତକଡ଼ା ୮୫ ଭାଗ ଲୋକ କୃଷି ଉପରେ ନିର୍ଭର କରନ୍ତି । ପୁଣି ଏହା ଗ୍ରାମବହୁଳ ଦେଶ । ତେଣୁ ଭାରତର ଶିକ୍ଷା-ନୀତିକୁ ଗ୍ରାମ୍ୟ ଅର୍ଥନୀତି ଓ ପରିବେଶ ତଥା କୃଷି ସମସ୍ୟାକୁ ନେଇ ଗଢ଼ାଯିବା ଉଚିତ । ଏହା ପରିବର୍ତ୍ତେ ସହରକୁ ଭିତ୍ତିକରି ଏବଂ ଶିଳ୍ପକୁ କେନ୍ଦ୍ରକରି ଆମର ଶିକ୍ଷାନୀତି ଗଢ଼ାଯାଇଛି । ଯାହା ଦେଖାଯାଉଛି ପ୍ରତିବର୍ଷ ଯେଉଁମାନେ ବିଶ୍ୱବିଦ୍ୟାଳୟରୁ ବିଭିନ୍ନ ଉପାଧି ଧରି ବାହାରୁଛନ୍ତି ସେମାନଙ୍କୁ ଚାକିରି ଦେବାପାଇଁ ଉପଯୁକ୍ତ ଶିଳ୍ପର ଅଭାବ ହେଉଛି । ପୁଣି ଗୋଟିଏ ଗୋଟିଏ ବିଷୟରେ ଯୋଗ୍ୟତା ଲାଭ କରିଥିବା ଶିକ୍ଷିତ ଯୁବକମାନେ ସେହି ସେହି ବିଷୟରେ ଚାକିରି ନ ପାଇ ନିରାଶ ହୋଇ ବେକାର ରହୁଛନ୍ତି । ଏହି ଶିଳ୍ପାୟତନ ମଧ୍ୟରେ ଚାକିରି ଛଡ଼ା ସରକାରୀ ଚାକିରି ସଂଖ୍ୟା ମଧ୍ୟ କମ୍ । ଆଜି ଶିକ୍ଷା ଆମକୁ ଆତ୍ମନିର୍ଭରଶୀଳ ନ କରାଇ ପରନିର୍ଭରଶୀଳ କରାଉଅଛି । ଅର୍ଥାତ୍ ମାଟ୍ରିକଠାରୁ ଆରମ୍ଭ କରି ଏମ୍. ଏ. ଏମ୍ ଏସ୍‌ସି. ପର୍ଯ୍ୟନ୍ତ, ଏପରିକି, ଡାକ୍ତରୀ ବିଦ୍ୟା, ଇଂଜିନିୟରିଂ ଇତ୍ୟାଦି ଅଧ୍ୟୟନ ପରେ ଚାକିରି ନ ମିଳିଲେ ବେକାର ହେବାକୁ ହେଉଛି । ଆଧୁନିକ ଶିକ୍ଷା ଆମକୁ ଦାସକୁ ଶ୍ରେଷ୍ଠ ପେଶାକୁ ମୋଟ ଭାବରେ ଗଢ଼ୁଅଛି । ଆମେ ଏକୂଳର କିମ୍ବା ସେକୂଳର ନୁହଁ । ଚାକିରି ବ୍ୟତିରେକେ ଆତ୍ମନିର୍ଭରଶୀଳ ହେଲାଭଳି ଏହିଶିକ୍ଷା ଆମକୁ କିଛି ପ୍ରେରଣା ଦେଉନାହିଁ । ପ୍ରତିବର୍ଷ ଯେଉଁ ପରିମାଣରେ ଶିକ୍ଷିତ ଯୁବକ ଡିଗ୍ରୀଧରି ବାହାରୁଛନ୍ତି, ସେମାନଙ୍କୁ ଚାକିରି ନ ଯୋଗାଇ ପାରିବାରୁ ଦେଶରେ ବେକାର ସମସ୍ୟା ଉତ୍କଟ ଭାବରେ ବୃଦ୍ଧି ପାଉଛି । ଫଳରେ ଦେଶ ପ୍ରତି ଏହି ସମସ୍ୟା ଏକ ଘୋର ବିପଦ ଭାବରେ ଦେଖା ଦେଇଛି । ପଶ୍ଚିମବଙ୍ଗ, କେରଳ, ଉତ୍ତରପ୍ରଦେଶ, ଓଡ଼ିଶା, ମହାରାଷ୍ଟ୍ର ଇତ୍ୟାଦି ପ୍ରଦେଶମାନଙ୍କରେ ଏହା ଲକ୍ଷ୍ୟକରାଯାଉଛି । ମେଡ଼ିକାଲ କଲେଜରୁ ସିଟ୍ କମାଇ ଦେଲେ ବା ଇଞ୍ଜିନିୟରିଂ କଲେଜରୁ ସିଟ୍ କମାଇଦେଲେ ବା ଓ. ଏ. ଏସ୍. ପରୀକ୍ଷା ପାଞ୍ଚବର୍ଷ ପାଇଁ ଘୁଞ୍ଚାଇ ଦେଲେ ବେକାର ସମସ୍ୟା ଦୂରୀଭୂତ ହେବ ନାହିଁ । ସେଥିପାଇଁ ନିର୍ଦ୍ଦିଷ୍ଟ ଶିକ୍ଷାନୀତି ପ୍ରୟୋଗ ହେବା ବାଞ୍ଛନୀୟ । ଅବଶ୍ୟ ଆମର ଜାତୀୟ ଶିକ୍ଷାନୀତି ଏ ଦିଗରେ କିଞ୍ଚିତ୍ ଆଶ୍ୱାସନା ଦେଇପାରିଥାନ୍ତା, ମାତ୍ର ତାହା ଏ ପର୍ଯ୍ୟନ୍ତ କାର୍ଯ୍ୟକାରୀ ହୋଇପାରୁ ନାହିଁ । ଯେଉଁ ଶିକ୍ଷା ଆମକୁ ବଞ୍ଚିବାର ଉପାଦାନ ଯୋଗାଇ ଦେଇପାରେ ନାହିଁ ବା ନିଜ ଗୋଡ଼ରେ ଛିଡ଼ା ହେବାର ସାହସ ଦିଏ ନାହିଁ, ସେ ଶିକ୍ଷା ନ ଥିଲେ ଦେଶର କୌଣସି ଅମଙ୍ଗଳ ହେବ ନାହିଁ । ଧରାଯାଉ, ଜଣେ ଅଶିକ୍ଷିତ କୃଷକ, ସେ ଆଧୁନିକ ଶିକ୍ଷାରୁ ବଞ୍ଚିତ,

ମାତ୍ର ସେ ଉତ୍ତମରୂପେ କୃଷି କରି ନ ଥିଲେ । କଠିନ ପରିଶ୍ରମ କରି ତାର ପରିବାରକୁ ପୋଷଣ କରିପାରେ । ସଂସାର ସମ୍ବନ୍ଧରେ ତାର ସାଧାରଣ ଜ୍ଞାନ ବିଦ୍ୟମାନ । ତାର ସୁଖ, ନୈତିକତା ବା ଧର୍ମ ସହିତ ଆଧୁନିକ ଶିକ୍ଷାର କିଛି ସମ୍ପର୍କ ନାହିଁ । ତେଣୁ ଆଧୁନିକ ଶିକ୍ଷା ବିରହିତ ହେଲେହେଁ ତାର ବିଶେଷ କିଛି କ୍ଷତି ନାହିଁ । ଏ ଦୃଷ୍ଟିରୁ ମହାତ୍ମା ଗାନ୍ଧୀଙ୍କ ଶିକ୍ଷାନୀତିକୁ ବିଶ୍ଳେଷଣ କରିବା ବାଞ୍ଛନୀୟ ।

## ମହାତ୍ମା ଗାନ୍ଧୀଙ୍କ ଶିକ୍ଷାନୀତି :

'Education should be self-supporting' ଶିକ୍ଷା ଆତ୍ମନିର୍ଭରଶୀଳ ହେବା ଉଚିତ । ମହାତ୍ମା ଗାନ୍ଧୀଙ୍କର ଏହି ଉକ୍ତି ଆଜି ସ୍ୱାଧୀନ ଭାରତରେ ବିଶେଷ ଆଲୋଚନାର ବିଷୟ ହୋଇଛି । ସେତେବେଳେ ହୁଏତ ମହାତ୍ମାଜୀଙ୍କର ଏହି ଉକ୍ତିକୁ ପରିହାସ କରାଯାଉ ଥିଲା, ମାତ୍ର ଏବେ ଆଉ ତାହା ପରିହାସର କଥା ନୁହେ । ଗାନ୍ଧିଜୀଙ୍କ ମତରେ ଶିକ୍ଷା ହେଉଛି ଦେହ, ମନ ଓ ଆତ୍ମାର ସର୍ବୋତ୍ତମ ଉନ୍ନତିର ମାଧ୍ୟମ ।

"By education I mean an allround drawing out of the best in child and man—body, mind and spirit." କେବଳ ଅକ୍ଷର ଜ୍ଞାନ ଶିକ୍ଷାଦ୍ୱାରା ବା ଆଧୁନିକ ଶିକ୍ଷା ପଦ୍ଧତିରେ ଜ୍ଞାନ ଅର୍ଜନ କରିବା ଦ୍ୱାରା ପ୍ରକୃତ ଶିକ୍ଷାର ଆରମ୍ଭ ବା ଶେଷ ନୁହେଁ । 'Literacy is neither end of education nor even the begining.' ଗାନ୍ଧିଜୀଙ୍କ ମତରେ "Literacy in itself is no education ।" ଯେଉଁ ଶିକ୍ଷା ଦେଶର ଆବଶ୍ୟକତାକୁ ପୂରଣ କରିପାରିବ ଏବଂ ଯାହା ସବୁପ୍ରକାର ଆର୍ଥିକନୀତି (All round economy) ସମସ୍ୟାକୁ ଦୂର କରିପାରିବ ସେହି ଶିକ୍ଷା ହିଁ ଯଥାର୍ଥରେ ଶିକ୍ଷା ପଦବାଚ୍ୟ । ଅପର୍ଯ୍ୟାପ୍ତ ଗ୍ରାମ୍ୟ ଲୋକସଂଖ୍ୟାର ଆବଶ୍ୟକତା ପୂରଣ ପାଇଁ ସ୍ୱଳ୍ପଖର୍ଚ୍ଚ ସମ୍ପନ୍ନ ଶିକ୍ଷା ହିଁ ଯଥାର୍ଥରେ ଆବଶ୍ୟକ । ସେଥିପାଇଁ ଗାନ୍ଧିଜୀ ପାଶ୍ଚାତ୍ୟ ପଦ୍ଧତିରେ ଶିକ୍ଷାଦାନ ପ୍ରଥାକୁ ଉଠାଇ ଦେଇ ଏ ଦେଶର ବୃତ୍ତିଦାନୁଯାୟୀ ଶିକ୍ଷାଦାନ ପଦ୍ଧତି ସୃଷ୍ଟି କରିବାକୁ ମତ ଦେଇଥିଲେ ।

## ଶିକ୍ଷା ଶ୍ରମମୁଖୀ ହେବା ଉଚିତ :

ଗାନ୍ଧିଜୀଙ୍କ ମତରେ ଶିକ୍ଷା ଶ୍ରମମୁଖୀ ହେବା ଉଚିତ୍ । ତେଣୁ ସେ ମୌଳିକ ଶିକ୍ଷା, ବୈଷୟିକ ଶିକ୍ଷା ପ୍ରଚଳନ କରିବାକୁ ପରାମର୍ଶ ଦେଲେ । ସେ ମଧ୍ୟ ନିଜେ ଏହି ଶିକ୍ଷାଦାନ ପଦ୍ଧତିକୁ ବାସ୍ତବ କ୍ଷେତ୍ରରେ ପ୍ରୟୋଗ କରି କୃତକାର୍ଯ୍ୟ ହେଲେ ।

ଶାରୀରିକ ଶ୍ରମ ବୌଦ୍ଧିକ ବିକାଶ ସହିତ ଜଡ଼ିତ ରହି କରାଯିବା ଉଚିତ । ଶିକ୍ଷାନୁଷ୍ଠାନ ମଧ୍ୟରେ ହସ୍ତକର୍ମ ଶିକ୍ଷା ଦିଆଯିବା ଆବଶ୍ୟକ । ୧୯୩୭ ମସିହାରେ ହରିଜନ ପତ୍ରିକାରେ ସେ ଏ ସମ୍ବନ୍ଧରେ ମତବ୍ୟକ୍ତ କରି ଲେଖିଥିଲେ । "Handicrafts are to be taught, not merely for productive work, but for developing the intellect of the pupils." ଅର୍ଥାତ୍ ପ୍ରତ୍ୟେକ ଛାତ୍ର ଯାହା କାର୍ଯ୍ୟ କରିବ, ତାକୁ ବୈଜ୍ଞାନିକ ପଦ୍ଧତିରେ ଅଧ୍ୟୟନ କରିବା ଉଚିତ । ଆଧୁନିକ ଯୁଗରେ ଯାନ୍ତ୍ରିକ ଭାବରେ ଅଧ୍ୟୟନ ନ କରି ପ୍ରତ୍ୟେକ କାର୍ଯ୍ୟର ସମସ୍ତ ବିବରଣୀ ଜାଣିବା ବାଞ୍ଛନୀୟ । ଗାନ୍ଧିଜୀଙ୍କ ମତରେ "Every handicraft has to be taught not merely mechanically as is done today, but scientifically. That is to say, the child should learn the why and wherefore of every process." ଅବଶ୍ୟ ଆଜିକାଲି ଶିକ୍ଷା କ୍ଷେତ୍ରରେ ଏହିଭଳି ଟ୍ରେନିଂ ଦିଆଯିବାର ବ୍ୟବସ୍ଥା ଅଛି । ଶିଳ୍ପ ଶିକ୍ଷା କେନ୍ଦ୍ର-ମାନଙ୍କରେ ଏହି ଶିକ୍ଷା ଯାନ୍ତ୍ରିକ ଭାବରେ ଦିଆଯାଉଛି । ବୈଜ୍ଞାନିକ ଭାବରେ ଦିଆ-ଯାଉ ନଥିବାରୁ ଏଭଳି ଶିକ୍ଷା ପାଇ ମଧ୍ୟ ଲୋକ ବେକାର ହେବାକୁ ବାଧ୍ୟ ହେଉଛି । ଗାନ୍ଧିଜୀଙ୍କ ମତରେ ଶାରୀରିକ ଶ୍ରମ (Manual work) ଶିକ୍ଷାର କେନ୍ଦ୍ର ହେବା ଉଚିତ । ଗାନ୍ଧିଜୀ ଭାରତର ସମସ୍ୟା ଅନୁଯାୟୀ ସୂତାକଟା, ଚପଲ ନିର୍ମାଣ କରିବା, ଲୁଗା ବୁଣା ଇତ୍ୟାଦି କୁଟୀର ଶିଳ୍ପକୁ ପ୍ରାଧାନ୍ୟ ଦେଇଥିଲେ । ତାଙ୍କ ମତରେ ଏହା ଗ୍ରାମ୍ୟ ଅର୍ଥନୀତି (village economy)କୁ ସାହାଯ୍ୟ କରି ପାରିବ । ପ୍ରତ୍ୟେକ ଶିକ୍ଷାନୁଷ୍ଠାନ ମଧ୍ୟରେ ଏହି ହସ୍ତକର୍ମ ଶିକ୍ଷା ଦିଆଯିବା ଉଚିତ ବୋଲି ଗାନ୍ଧିଜୀ ମତ-ବ୍ୟକ୍ତ କରିଥିଲେ । ଏତଦ୍‌ବ୍ୟତୀତ ଶିକ୍ଷାନୁଷ୍ଠାନକୁ ଲାଗି ପ୍ରଚୁର କୃଷିକ୍ଷେତ୍ର ଥିବା ଉଚିତ୍, ଯେଉଁଠାରେ କି ଶିକ୍ଷାର୍ଥୀମାନେ କଠିନ ଶାରୀରିକ ଶ୍ରମ କରିପାରିବେ । ପରବର୍ତ୍ତୀ ଜୀବନ କାଳରେ ସେମାନେ ଚାକିରି ପାଇଁ ଧାଡ଼ି ବାନ୍ଧିବା ଅପେକ୍ଷା ଆତ୍ମନିର୍ଭରଶୀଳ ହୋଇ ଚାଷ କରି ପାରିବେ । ଏବେ ମଧ୍ୟ କୃଷି କଲେଜ ଏବଂ ପଶୁ ଚିକିତ୍ସା କଲେଜ ଖୋଲାଯାଇ ଶିକ୍ଷାର୍ଥୀମାନଙ୍କୁ ଶିକ୍ଷା ଦିଆଯାଉଛି । ମାତ୍ର ଯାହା ଦେଖାଯାଉଛି ପ୍ରତ୍ୟେକ ଶିକ୍ଷା ସମାପନ ପରେ ଚାକିରି ପାଇଁ ଲାଳାୟିତ ହେଉଛନ୍ତି । କୃଷି ବିଷୟରେ ଯେଉଁ ଅଭିଜ୍ଞତା ଏମାନେ ଚାରି ୪ ବର୍ଷ କିମ୍ବା ୬ ବର୍ଷ ଧରି ଲାଭ କଲେ ପରବର୍ତ୍ତୀ କାଳରେ ଫାଇଲ ମଧ୍ୟରେ ହିଁ ତାହା ଆବଦ୍ଧ ହେଉଛି । ସେହିପରି ଇଂଜିନିୟରିଂ ଓ ଡାକ୍ତରି ବିଦ୍ୟାର ଦଶା । ଆମେରିକାରେ ଅବଶ୍ୟ Project Methodରେ ଶିକ୍ଷା ଦିଆଯାଏ ଓ ରୁଷିଆରେ Complex Methodରେ ଶିକ୍ଷା ଦିଆଯାଏ । ଆମର ଯୋଜନା ଏତେ ଉନ୍ନତ ନୁହେଁ ଯେ ଆମେରିକାର

Project Methodକୁ ଅନୁକରଣ କରି ଶିକ୍ଷାପାଠ ପ୍ରସ୍ତୁତ କରିବ ବା ରୁଷିଆର ଶିକ୍ଷ ପାଠକୁ ଗ୍ରହଣ କରିବ । ତେଣୁ ଆମର ସମସ୍ୟାକୁ ଭିତ୍ତିକରି ଶିକ୍ଷାପାଠ ଗଠନ କରିବାକୁ ହେବ । ମାତ୍ର ପ୍ରଚଳିତ ଶିକ୍ଷାକୁ ଅଯଥା କୃତ୍ରିମ ପ୍ରାଧାନ୍ୟ (artificial importance) ଦିଆଯାଉଛି ।

ଏ ଯୁଗ ହେଉଛି ଯନ୍ତ୍ରର ଯୁଗ । ଏ ଯୁଗରେ ମଣିଷ ଯନ୍ତ୍ର ଉପରେ ସମ୍ପୂର୍ଣ୍ଣ ନିର୍ଭର କରୁଛି । ଯନ୍ତ୍ରକୁ ଆମେ ଗ୍ରହଣ କରିପାରିବା ନାହିଁ । ଆମର ଶିକ୍ଷା ପଦ୍ଧତିକୁ ଆତ୍ମନିର୍ଭରଶୀଳ କରାଇବା ପାଇଁ କୃଷି, ସୂତାକଟା, ଲୁଗାବୁଣା ଇତ୍ୟାଦି ହସ୍ତକର୍ମ କରିବାକୁ ହେବ । ଏହା ସତ୍ତ୍ୱେ ଯନ୍ତ୍ରକୁ ମଧ୍ୟ ଅବହେଳା କରିହେବ ନାହିଁ । ଏଥିପାଇଁ Dr. Zakir Hussain କହୁଥିଲେ "I believe in manual labour but I don't wish to eliminate machines altogether, because they save human energy." ଗାନ୍ଧିଜୀଙ୍କର ଜଣେ ପଟ୍ଟଶିଷ୍ୟ ଭାବରେ ଡକ୍ଟର ହୁସେନ ଏହି ମତ ବ୍ୟକ୍ତ କରୁଥିଲା ବେଳେ Prof K. T. Shah କହୁଛନ୍ତି, "ମୁଁ ଭୟଭୀତ ଯେ ଯନ୍ତ୍ରଦ୍ୱାରା କାର୍ଯ୍ୟ କରି ଆମେ ଯନ୍ତ୍ର ହୋଇ ଯାଉଛୁ ଏବଂ ଆମେ ଆମର କଳା ଜ୍ଞାନ ଓ ହସ୍ତକର୍ମଜ୍ଞାନ ନଷ୍ଟ କରି ଦେଉଛୁ ।" ଠିକ୍ ଏହିପରି ଭାବରେ ଓଡ଼ିଶାର ଜାତୀୟ ନେତା ମଧୁସୂଦନ ଦାସ ମଧ୍ୟ ମତବ୍ୟକ୍ତ କରି ଲେଖିଥିଲେ, "Without the use of hands and feet, the brain would be atrophied, and even if it wotked it would be the home of Satan." ସେ ହସ୍ତକର୍ମ ଉପରେ ପ୍ରାଧାନ୍ୟ ଦେଇଥିଲେ । ମହାତ୍ମା ଗାନ୍ଧୀ ମଧ୍ୟ ସର୍ବଭାରତୀୟ ଜାତୀୟ ଶିକ୍ଷା ସମ୍ମିଳନୀ (All India National Education Conference)ର ଓ୍ୱାର୍ଦ୍ଧା ଅଧିବେଶନରେ ୧୯୩୭ ମସିହାରେ ତାଙ୍କର ପ୍ରାରମ୍ଭିକ ଭାଷଣରେ ଏହି ହସ୍ତକର୍ମ (handicraft) ଉପରେ ପ୍ରାଧାନ୍ୟ ଦେଇଥିଲେ । ସେ primary education ସହିତ secondary education କୁ ମିଶାଇ ଦେବାକୁ ମଧ୍ୟ ପରାମର୍ଶ ଦେଇ ଶିକ୍ଷାକୁ କର୍ମମୁଖୀ କରାଇବାକୁ ବିଭିନ୍ନ ଯୁକ୍ତି ଦର୍ଶାଇଥିଲେ । ଏହିଭଳି ଶିକ୍ଷାନୁଷ୍ଠାନ ଆମେରିକାରେ Prof. Dewey ମଧ୍ୟ ଆରମ୍ଭ କରିଥିଲେ, ମାତ୍ର ଏହା ଦର୍ଶନ ମଧ୍ୟରେ ବନ୍ଦ ହୋଇଗଲା । ଆର୍ମଷ୍ଟ୍ରଙ୍ଗଙ୍କ ମତରେ "ହସ୍ତଶିଳ୍ପ ଶିକ୍ଷା ହିଁ ହେଉଛି ଯଥାର୍ଥରେ ଜୀବନ ପାଇଁ ଶିକ୍ଷା" । ମହାତ୍ମା ଗାନ୍ଧୀ ଏହି ମତକୁ ବିଶେଷ ଭାବରେ ଗ୍ରହଣ କରିଥିଲେ । ପରୀକ୍ଷାମୂଳକ ଭାବରେ ଏହି ଶିକ୍ଷା ପଦ୍ଧତି କେତେକ ସ୍କୁଲରେ ପ୍ରବର୍ତ୍ତିତ କରାଯାଇଥିଲା, ମାତ୍ର ଏହା ବିଶେଷ ଲାଭଜନକ ହେଲା ନାହିଁ, ଯେଉଁଥିପାଇଁ Prof. Shah ଏହାର ସମାଲୋଚନା କରିଥିଲେ । ଏପରିକି ଡକ୍ଟର ହୁସେନ

ମଧ ତାଙ୍କ ଶିକ୍ଷା ରିପୋର୍ଟରେ ଲେଖିଥିଲେ ଯେ ଏହିଭଳି ଶିକ୍ଷାରେ ଯାହା ଖର୍ଚ୍ଚ କରାଯାଉଛି ତାହା ଅପେକ୍ଷା ଖୁବ୍ କମ୍ ଆୟ ହେଉଛି । ଗାନ୍ଧିଜୀଙ୍କର ଏହି ଶିକ୍ଷାନୀତି ଯଦିଓ ସେତେବେଳେ କେତେକଙ୍କ ଦ୍ୱାରା ସମାଲୋଚିତ ହୋଇଥିଲା ତଥାପି ବିନୋବା ଭାବେ ଏହାକୁ ଏକ ବୈପ୍ଳବିକ ପ୍ରସ୍ତାବ (revolutionary Proposal) ଭାବରେ ରୂପାୟନ କରିଥିଲେ । ତାଙ୍କ ମତରେ ଏହିଶିକ୍ଷା ଦ୍ୱାରା ବୁଦ୍ଧି ଏବଂ ହୃଦୟ (Mind & heart) ଉନ୍ନତ ହେବ । ସେ କହନ୍ତି ଶିକ୍ଷାକୁ ଶ୍ରେଣୀଗୃହର ଚାରି କାନ୍ଥ ମଧ୍ୟରେ ଆବଦ୍ଧ କରାଯିବା ଉଚିତ୍ ନୁହେଁ । ଇତିହାସ, ଭୂଗୋଳ, ଅଙ୍କ, ଜ୍ୟାମିତି, ବିଜ୍ଞାନ, ସାହିତ୍ୟ, ଚିତ୍ରଶିଳ୍ପ, ସଙ୍ଗୀତ ଇତ୍ୟାଦି ଶିକ୍ଷା କରିବା ସଙ୍ଗେ ସଙ୍ଗେ ହସ୍ତଶିଳ୍ପ ଓ କୃଷିକାର୍ଯ୍ୟ ମଧ ଶିକ୍ଷା କରିବା ଉଚିତ । ଗ୍ରାମ୍ୟ ସ୍କୁଲମାନଙ୍କରେ କୃଷିକୁ ବାଧ୍ୟତାମୂଳକ କରାଯିବା ଉଚିତ । ଗାନ୍ଧିଜୀ ମଧ ଏହି ମତକୁ ସମର୍ଥନ କରିଥିଲେ । ସେତେବେଳେ ବହୁ ଶିକ୍ଷାବିତ୍ ଗାନ୍ଧିଜୀଙ୍କର ଏହି ବୈପ୍ଳବିକ ଚିନ୍ତାଧାରାକୁ ସମର୍ଥନ ଜଣାଇଥିଲେ ଏବଂ ଭାରତରେ ଶିକ୍ଷା ନୀତିର ଅମୂଳଚୂଳ ପରିବର୍ତ୍ତନ ପାଇଁ ମତ ଦେଇଥିଲେ । ଗାନ୍ଧିଜୀଙ୍କ ନୀତି ଅନୁଯାୟୀ ଯଦି ଆମର ଶିକ୍ଷାନୀତି ବଦଳିଥାନ୍ତା, ତେବେ ଆଜି ଏପରି ଉତ୍କଟ ବେକାର ସମସ୍ୟା ଦେଖା ଦେଇ ନଥାନ୍ତା । ଆଜି ମଧ ବିଚାର କରିବାର ସମୟ ଆସିଛି ।

ଗାନ୍ଧିଜୀଙ୍କ ମୌଳିକ ଶିକ୍ଷା ଯଥାର୍ଥରେ ଆମକୁ ଆତ୍ମନିର୍ଭରଶୀଳ କରାଇ ପାରିବ । Dr. Hussain ଏହି ଶିକ୍ଷାକୁ ୭ବର୍ଷ କରିବା ପାଇଁ ପରାମର୍ଶ ଦେଇଥିଲେ । ତାଙ୍କ ମତରେ ଏହା ଆର୍ଥନୀତିକ ଦୃଷ୍ଟିରୁ ଲାଭଜନକ ହେବା ଉଚିତ ଏବଂ ଏହି ଜ୍ଞାନ ଜୀବନ ସମ୍ବନ୍ଧୀୟ ହେବା ଉଚିତ । ବୌଦ୍ଧିକତା ଏବଂ ବାସ୍ତବିକ ଅଭିଜ୍ଞତା ମଧ୍ୟରେ ସମତା ରହିବା ବାଞ୍ଛନୀୟ ବୋଲି ସେ ମତ ଦେଇଥିଲେ । ସେ ଏହି ମୌଳିକ ଶିକ୍ଷାରେ କୃଷି ଏବଂ ହସ୍ତଶିଳ୍ପକୁ ବାଧ୍ୟତାମୂଳକ କରାଯିବାପାଇଁ ମଧ ମତ ଦେଇଥିଲେ । ଗାନ୍ଧିଜୀ ସର୍ବାନ୍ତଃକରଣରେ ଚାହୁଁଥିଲେ ଯେ ଶିକ୍ଷା ଚାକିରିମୁଖୀ ନ ହୋଇ ଶ୍ରମମୁଖୀ ହେବା ଉଚିତ । କେବଳ ମନ ଓ ବୁଦ୍ଧିର କର୍ଷଣ ନ କରି ଶରୀରର ମଧ କର୍ଷଣ କରାଯିବା ଆବଶ୍ୟକ ।

ଏହିସବୁ ବିଶ୍ଳେଷଣରୁ ଆମକୁ ଏହି ସିଦ୍ଧାନ୍ତରେ ଉପନୀତ ହେବାକୁ ହୁଏ ଯେ ଭାରତର ଶିକ୍ଷାନୀତି ବଦଳିବା ପ୍ରୟୋଜନ । ଭାରତର ସମସ୍ୟାକୁ ନେଇ ଆମର ଶିକ୍ଷାନୀତି ଗଢ଼ାଯିବା ଉଚିତ । ଶିକ୍ଷାକୁ ଶ୍ରମମୁଖୀ କରାଗଲେ ଶିକ୍ଷା ସମାପନ ପରେ ଶିକ୍ଷାର୍ଥୀ ଚାକିରି ପାଇଁ ବ୍ୟସ୍ତ ନ ହୋଇ ତାର ଶିକ୍ଷାକୁ ନିଜର ଭରଣପୋଷଣ ପାଇଁ ସେ ବିନିଯୋଗ କରିବ । ଅବଶ୍ୟ ମୌଳିକ ବିଦ୍ୟାଳୟମାନଙ୍କରେ ଏହା ପରୀକ୍ଷାମୂଳକ ଭାବରେ ପ୍ରୟୋଗ କରାଯାଇଥିଲା । ମାତ୍ର ଅନ୍ୟ ଶିକ୍ଷାନୁଷ୍ଠାନରେ ସେତେ-

ବେଳେ ଅଧ୍ୟୟନ କରି ଶିକ୍ଷାର୍ଥୀ ଚାକିରି ପାଇ ପାରୁଛି ସେତେବେଳେ ମୌଳିକ ଶିକ୍ଷା ପ୍ରତି ଲୋକଙ୍କର ଆସ୍ଥା କମିଯିବା ସ୍ୱାଭାବିକ । ତେଣୁ ଏଥିରେ ନିରାଶ ହେବାର କୌଣସି କାରଣ ନାହିଁ । ଗାନ୍ଧିଜୀ ସବୁବେଳେ ଭାରତର ସମସ୍ୟାକୁ ଆଖି ଆଗରେ ରଖି ବିଚାର କରୁଥିଲେ । ଅତଏବ ଭାରତର ଶିକ୍ଷା ସମସ୍ୟା ଯେ ଗାନ୍ଧିଜୀଙ୍କ ଚିନ୍ତାଧାରା ଦ୍ୱାରା ଦୂରୀଭୂତ ହେବ ଏଥିରେ ସନ୍ଦେହ ନାହିଁ । ଆଜିର ଶିକ୍ଷା ପଦ୍ଧତି ଆମକୁ ସରକାରାଭିମୁଖୀ କିରାଣି ଦାସ ମନୋବୃତ୍ତି ସୃଷ୍ଟି କରାଇଛି । ଫଳରେ ଆମେ ଶିକ୍ଷ ସମାପ୍ତି ପରେ ଚାକିରି ଖୋଜି ବୁଲୁଛୁ । ଯଦି ଆମେ ଜୀବନଧାରଣ ପାଇଁ ଶିକ୍ଷା ପାଇଥାନ୍ତୁ ତେବେ ଆମକୁ ଆଉ ଚାକିରି ପାଇଁ ବ୍ୟସ୍ତ ହେବାକୁ ପଡ଼ି ନଥାନ୍ତା । ଏହିସବୁ ଦୃଷ୍ଟିରୁ ଆଲୋଚନା କଲେ ଜଣାଯାଏ ଯେ ଗାନ୍ଧିଜୀଙ୍କ ଶିକ୍ଷାନୀତି ଆଧୁନିକ ବେକାର ସମସ୍ୟା ଦୂରୀଭୂତ କରିବା ପାଇଁ ଏକାନ୍ତ ଆବଶ୍ୟକ ।

ଅବଶ୍ୟ ଏ କ୍ଷେତ୍ରରେ ପ୍ରଶ୍ନ ହୋଇପାରେ ଯେ ଯଦି ଅନ୍ୟଦେଶରେ ପ୍ରଚଳିତ ଶିକ୍ଷ ଦ୍ୱାରା ଉନ୍ନତି ହୋଇ ପାରୁଛି ଏବଂ ବେକାର ସମସ୍ୟା ନାହିଁ, ସେତେବେଳେ ଭାରତରେ କାହିଁକି ହେବ ନାହିଁ ? ଏହା ଏକ ନିରଟ ସତକଥା । ଆମର ଯୋଜନାରେ ବହୁ ତ୍ରୁଟି ରହିଯାଉଛି । ବିଶ୍ୱବିଦ୍ୟାଳୟରୁ ଶିକ୍ଷା ପାଇ ଆସୁଥିବା ଯୁବକମାନଙ୍କୁ ଚାକିରି ଯୋଗାଇ ଦେବା ଭଲ ଯୋଜନା ନାହିଁ । ଭାରତରେ ପ୍ରାକୃତିକ ସମ୍ପଦର ଅଭାବ ନାହିଁ । ସେ ଗୁଡ଼ିକୁ ଯଦି ଯୋଜନା ଦ୍ୱାରା ବିନିଯୋଗ କରାଯାଇ ପାରନ୍ତା, ତେବେ ବେକାର ସମସ୍ୟା ଦୂରୀଭୂତ ହୋଇ ପାରନ୍ତା । କର୍ମ ସଂସ୍ଥାପନର ଯୋଜନା ନ କରି କେବଳ ଶିକ୍ଷାନୁଷ୍ଠାନ ଖୋଲା-ଯାଉଛି । ଏହାଦ୍ୱାରା ବେକାର ସମସ୍ୟା ଉତ୍କଟତର ହେଉଛି । ଏ ଦୃଷ୍ଟିରୁ ଗାନ୍ଧିଜୀଙ୍କ ହସ୍ତଶିଳ୍ପ ଶିକ୍ଷାର ମୂଲ୍ୟ କିଛି ନାହିଁ । ଗାନ୍ଧିଜୀ ଯାହାକିଛି ଶିକ୍ଷାର ପରିବର୍ତ୍ତନ ପାଇଁ ମତ ଦେଇଥିଲେ, ସେ ସମସ୍ତ ଗ୍ରାମ୍ୟ ଅର୍ଥନୀତିକୁ ନେଇ । ଗ୍ରାମ୍ୟ ଅର୍ଥନୀତି ପାଇଁ ଗାନ୍ଧିଜୀଙ୍କ ଶିକ୍ଷାନୀତିର ଯେ ନିଶ୍ଚିତ ମୂଲ୍ୟ ଅଛି, ଏଥିରେ ସନ୍ଦେହ ନାହିଁ । ମାତ୍ର ଆମେ ଆଉ ଯନ୍ତ୍ରଶିଳ୍ପର ବିକାଶ ବିରୋଧରେ ମତ ଦେଇପାରିବା ନାହିଁ । ଭାରତର ଅର୍ଥନୀତି ଏହାର ବିକାଶ ଉପରେ ଯଥେଷ୍ଟ ନିର୍ଭର କରେ । ଅତଏବ ଏହି ଶିକ୍ଷା ମଧ୍ୟ ଦିଆଯିବା ଉଚିତ । ମାତ୍ର ଏହି ଶିକ୍ଷା ସଙ୍ଗେ ସଙ୍ଗେ ଆମର ଯୋଜନାକୁ ମଧ୍ୟ ଅନୁରୂପ ତିଆରି କରାଯିବା ଉଚିତ । ଫଳରେ ବେକାର ସମସ୍ୟା ଦେଖାଯିବ ନାହିଁ । ବେକାର ସମସ୍ୟା ବୃଦ୍ଧି ପାଇଲେ ଦେଶର ନିରାପତ୍ତା ପ୍ରତି ଘୋର ବିପଦ ଦେଖାଯିବ । ଏଣୁ ଗାନ୍ଧିଜୀଙ୍କ ଶିକ୍ଷ ନୀତିକୁ ଅନୁସରଣ କରି ଶିକ୍ଷାକୁ ଆତ୍ମନିର୍ଭରଶୀଳ କରାଯିବା ଉଚିତ । ଦେଶର ଚାହିଦାନୁଯାୟୀ ଯୋଜନା ଏବଂ କର୍ମଯୋଗାଣ ହେଲେ ବେକାର ସମସ୍ୟା ଦୂରୀଭୂତ ହେବ ।



# ଯୁବ ସମସ୍ୟା

ଯୁବସମସ୍ୟା, ଏ କଥା ଶୁଣିଲାବେଳକୁ ମନ ଭିତରେ କେତେଗୁଡ଼ିଏ କଥା ଖେଳିଯାଏ । ଯୁବସମସ୍ୟା ଏକ ସ୍ୱତନ୍ତ୍ର ସମସ୍ୟା ନା ସାମାଜିକ ସମସ୍ୟାର ଏକ ଅଂଶବିଶେଷ—ସେ ସମ୍ବନ୍ଧରେ କେତେଗୁଡ଼ିଏ ଚିନ୍ତା ଦେଖାଦେଇଥାଏ । ଏବେ ସର୍ବତ୍ର ଯୁବସମସ୍ୟା ବୋଲି ଶୁଣାଯାଉଛି । କେତେକ ପୁଣି ଏହି ସମସ୍ୟା ଅତ୍ୟନ୍ତ ଉତ୍କଟ ହୋଇଗଲାଣି ବୋଲି କୁମ୍ଭୀରକାନ୍ଦଣା କାନ୍ଦୁଛନ୍ତି । ଏହି ସମସ୍ୟାର ସମାଧାନ ପାଇଁ ସୁଚିନ୍ତିତ ପନ୍ଥା ବାହାର କରାଯାଉ ନାହିଁ । କେବଳ ଯୁବକ ଓ ଯୁବ ସମସ୍ୟା ସମ୍ବନ୍ଧରେ ସମ୍ବାଦପତ୍ରଠାରୁ ଆରମ୍ଭ କରି ସଭାମଞ୍ଚ ପର୍ଯ୍ୟନ୍ତ ଚାରିଆଡ଼େ ଆଲୋଚନା ହେଉଛି । ଏହି ସୁଯୋଗରେ ଯୁବକମାନେ ସମାଜରେ ଏକ ସ୍ୱତନ୍ତ୍ର ଗୋଷ୍ଠୀ ଭାବରେ ନିଜକୁ ବିସ୍ତାର କରୁଛନ୍ତି । ସାହିତ୍ୟ-ସଙ୍ଗଠନଠାରୁ ଆରମ୍ଭ କରି ରାଜନୀତି ପର୍ଯ୍ୟନ୍ତ ସାଂସ୍କୃତିକ ଅନୁଷ୍ଠାନଠାରୁ ଆରମ୍ଭ କରି ବିଭିନ୍ନ ଗ୍ରେଷ୍ଟବଡ଼ ଅନୁଷ୍ଠାନ ପର୍ଯ୍ୟନ୍ତ ଆଜି ଯୁବକମାନଙ୍କୁ ସ୍ୱତନ୍ତ୍ର ଭାବରେ ବିସ୍ତାର କରାଯାଉଛି । ତେଣୁ ଯୁବକମାନେ ମଧ୍ୟ ନିଜକୁ ସ୍ୱତନ୍ତ୍ର ମନେକରି ନିଜ ଇଚ୍ଛାନୁସାରେ କାର୍ଯ୍ୟ କରୁଛନ୍ତି ।

## ଯୁବସମସ୍ୟା ସାମ ଜିକ ସମସ୍ୟାରୁ ଅଲଗା ନୁହେଁ :

ନିରପେକ୍ଷଭାବରେ ଆଲୋଚନା କଲେ ଜଣାଯାଏ ଯେ ଯୁବସମସ୍ୟା ସାମାଜିକ ସମସ୍ୟାରୁ ଅଲଗା କୌଣସି ସମସ୍ୟା ନୁହେଁ । ସାମାଜିକ ସମସ୍ୟାର ଆଶୁ ଅସନ୍ତୋଷ ପ୍ରକାଶର ମାଧ୍ୟମ ହିଁ ଯୁବସମସ୍ୟା । ସମାଜର ନାନାବିଧ ପ୍ରତିକ୍ରିୟା ଯୁବକମାନଙ୍କ ମଧ୍ୟରେ ପ୍ରଥମେ ଦେଖାଦେଉଥିବାରୁ ଏବଂ ସଂଘବଦ୍ଧ ଭାବରେ ଯୁବକମାନେ ସାମାଜିକ ପ୍ରତିକ୍ରିୟାର ସମ୍ମୁଖୀନ ହେଉଥିବାରୁ ସେମାନଙ୍କର ପ୍ରତିକ୍ରିୟାକୁ ଯୁବସମସ୍ୟା ଭାବରେ ଅଭିହିତ କରାଯାଉଛି; କିନ୍ତୁ ଯୁବସମସ୍ୟା ହିଁ ଯଥାର୍ଥରେ ରାଜନୈତିକ, ଆର୍ଥନୈତିକ ଓ ସାମାଜିକ ସମସ୍ୟାର ରୂପରେଖ ମାତ୍ର । ଅଧୁନା ରାଜନୀତି ଭିତରେ ଯେପରି କ୍ଷମତାର ଲଢ଼େଇ ଚାଲିଛି, ରାଜନୀତି ଏବଂ ଦେଶସେବା ନାମରେ ଯେପରି ବ୍ୟକ୍ତିତନ୍ତ୍ରତାର କାରବାର ଚାଲିଛି ଏବଂ ରାଜନୀତି ଯେପରି ସଦା ଅସ୍ଥିରଭାବରେ ଗତି କରୁଛି ତାହାର ପ୍ରଭାବ ଯେ ନିଶ୍ଚିତ ଭାବରେ ଯୁବସମାଜ ଉପରେ ପଡ଼ୁଛି ଏ କଥା ଅସ୍ୱୀକାର କରାଯାଇ ନ ପାରେ । ପୁଣି ଦିନକୁ ଦିନ ଆମର ଆର୍ଥନୈତିକ ପରିସ୍ଥିତି ଯେପରି ଜଟିଳ ଆକାର ଧାରଣ କରୁଛି

ଏବଂ ଶ୍ରେଣୀବୈଷମ୍ୟ ଯେପରି ଉତ୍କଟ ଆକାର ଧାରଣ କରୁଛି ସେଥିରେ ଯୁବସମସ୍ୟା ସୃଷ୍ଟି ନ ହେବ କିପରି ?

ଯୁବସମସ୍ୟା କେବଳ ସାମ୍ପ୍ରତିକ ଯୁଗରେ ଯେ ଦେଖା ଦେଇଛି ତାହା ନୁହେଁ । ଅତୀତରେ ମଧ୍ୟ ଯୁବସମସ୍ୟା ଥିଲା ଏବଂ ବିଭିନ୍ନ ଦେଶରେ ଏହି ସମସ୍ୟା ଦେଖାଦେଇଛି । ଭବିଷ୍ୟତରେ ଯେ ଏହି ସମସ୍ୟା ଆଉ ଦେଖାଯିବ ନାହିଁ, ଏଭଳି ଭାବିବା ମଧ୍ୟ ଭ୍ରମାତ୍ମକ, ମାତ୍ର ଯୁଗର ପରିବର୍ତ୍ତନ ସଙ୍ଗେ ସଙ୍ଗେ ଏହି ସମସ୍ୟାର ପରିବର୍ତ୍ତିତ ରୂପ ଦେଖାଯାଉଛି । ଭାରତବର୍ଷର ସ୍ୱାଧୀନତା ସଂଗ୍ରାମବେଳେ ଯୁବ-ସମସ୍ୟା ମଧ୍ୟ ଦେଖା ଦେଇଥିଲା । ସେତେବେଳେ ଏହି ସମସ୍ୟାକୁ ବ୍ରିଟିଶ ସରକାର ଏବଂ ବ୍ରିଟିଶ ସରକାରଙ୍କୁ ଅନୁମୋଦନ କରୁଥିବା ଏ ଦେଶର ବହୁ ବ୍ୟକ୍ତି ଘୃଣା କରୁଥିଲେ ଓ ଦମନ କରିବାକୁ ମଧ୍ୟ ଚକ୍ରାନ୍ତ କରୁଥିଲେ, ମାତ୍ର ସେତେବେଳର ଯୁବସମସ୍ୟା ଏକ ଜାତୀୟ ସମସ୍ୟାରେ ପରିଣତ ହେଲା । କେବଳ ଦେଶର ମୁକ୍ତିପାଇଁ ସ୍ୱାଧୀନତା ଆନ୍ଦୋଳନ ସୃଷ୍ଟି ହୋଇ ନ ଥିଲା । ଗଣମୁକ୍ତି ଓ ସମସ୍ତପ୍ରକାର ଶୋଷଣର ମୁକ୍ତିପାଇଁ ଏହି ଆନ୍ଦୋଳନ ଗଢ଼ିଥିଲା । ସେଥିପାଇଁ ଯୁବସମାଜ ଭବିଷ୍ୟତକୁ ଅନ୍ଧକାରମୟ କରି ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିଲେ; କିନ୍ତୁ ସ୍ୱାଧୀନତା ପରେ ଯାହା ଦେଖାଗଲା ସତେ ଯେପରି ଆମେ ରାଜନୈତିକ ସ୍ୱାଧୀନତା ପାଇଁ କେବଳ ସଂଗ୍ରାମ କରୁଥିଲୁ । ଗଣମୁକ୍ତି ଓ ଶୋଷଣମୁକ୍ତି କଥା ଆମେ ସମ୍ପୂର୍ଣ୍ଣ ଭୁଲିଗଲୁ । ଯଦିବା କିଛି ମନେରଖିଲୁ ସଭା ସମିତିରେ ଭାଷଣ ପ୍ରସଙ୍ଗରେ ବୈଦାନ୍ତିକ ପଦ୍ଧତିରେ କହି ଲୋକଙ୍କୁ ଭୁଲାଇବାକୁ ଚେଷ୍ଟା କଲୁ । ଫଳରେ କ୍ରମେ ସାମାଜିକ ଅସନ୍ତୋଷ ବୃଦ୍ଧି ଲାଭ କଲା । ଏହି ଅସନ୍ତୋଷ ବର୍ତ୍ତମାନ ଏପରି ଏକ ସ୍ତରରେ ଉପନୀତ ହୋଇଛି ଯାହାକୁ ସହଜରେ ବିଚାର କରିହୁଏ ନାହିଁ । ଯଦିବା ଆମେ କେବେ ବିଚାର କରୁଛୁ, ତାହାକୁ ଏକ ସାମନ୍ତବାଦୀ ମନୋଭାବରେ ଆଦର୍ଶର କଷଟି ପଥରରେ କଷି ବିଚାର କରୁଛୁ । ବାସ୍ତବତା ସହିତ ଆମ ବିଚାରଧାରାର ସମ୍ବନ୍ଧ ରହୁ ନାହିଁ ।

## ଯୁବସମସ୍ୟା ପାଇଁ ଆମ ଶିକ୍ଷାପଦ୍ଧତି ଦାୟୀ :

ସ୍ୱାଧୀନତା ପୂର୍ବରୁ ଯେଉଁ ଶିକ୍ଷାପଦ୍ଧତି ଏ ଦେଶରେ ପ୍ରଚଳିତ ହେଉଥିଲା ତାହା ଇଂରେଜମାନଙ୍କ ସୁହାଇଲା ଭଳି ହୋଇଥିଲା । ସେମାନଙ୍କ ଦେଶର ସାଂସ୍କୃତିକ ଚିନ୍ତା ଓ ସାମାଜିକ ମୂଲ୍ୟବୋଧକୁ ଆମ ଦେଶରେ ଜବରଦସ୍ତ ଲଦି ଦିଆଯାଇଥିଲା । ସ୍ୱାଧୀନତା ସଂଗ୍ରାମବେଳେ ଏହି ପାଶ୍ଚାତ୍ୟ ଶିକ୍ଷାପଦ୍ଧତିକୁ ପରିବର୍ତ୍ତନ କରି ଏକ ଜାତୀୟ ଶିକ୍ଷାପଦ୍ଧତି ପ୍ରଚଳନ ପାଇଁ ଆମର ନେତାମାନେ ଚେଷ୍ଟା କରୁଥିଲେ । ସ୍ୱାଧୀନତା ପରେ ପରେ ଏହି ଚିନ୍ତା ଉଭେଇଗଲା । ସେଇ ବ୍ରିଟିଶ

ଶିକ୍ଷାପଦ୍ଧତି ଏବେ ମଧ୍ୟ ସ୍ୱାଧୀନତାର ୨୩ ବର୍ଷ ପରେ ଏ ଦେଶରେ ପ୍ରଚଳିତ । ଏହାକୁ ପରିବର୍ତ୍ତନ କରିବାକୁ ଆମେ ସଚେଷ୍ଟ ନୋହୁଁ । ଆମେରିକା, ଇଂଲଣ୍ଡ, ରୁଷିଆ ଆଦି ଦେଶର ମାନଦଣ୍ଡରେ ଆମର ଶିକ୍ଷା ପଦ୍ଧତିକୁ ବରଂ ଚଳେଇବାକୁ ଚେଷ୍ଟା କରୁଛୁ । ସାମ୍ପ୍ରତିକ ଶିକ୍ଷାପଦ୍ଧତିକୁ ବିଶ୍ଳେଷଣ କଲେ ଜଣାଯାଏ ସତେ ଯେପରି ଏହା ଉଦ୍ଦେଶ୍ୟହୀନ ଭାବରେ ପ୍ରଚଳିତ ହେଉଛି । ଏହି ଶିକ୍ଷାରେ ଯେ କିଛି ମୂଲ୍ୟ ନାହିଁ, ସେ କଥା ନୁହେଁ, ମାତ୍ର ଏହା ଆତ୍ମତୃପ୍ତି ଜ୍ଞାନ ପ୍ରଦାନ କରିଥାଏ । ଯେଉଁ ଶିକ୍ଷା କେବଳ ଆତ୍ମତୃପ୍ତି ଜ୍ଞାନ ପ୍ରଦାନ କରେ ତା'ର ମୂଲ୍ୟ ବ୍ୟକ୍ତି ନିକଟରେ ଥାଇପାରେ ମାତ୍ର ସମାଜ ନିକଟରେ ଏ ଶିକ୍ଷାର ମୂଲ୍ୟ କଣ ? ଆମର ସାଂସ୍କୃତିକ ବିଶ୍ଳେଷଣ ଓ ବୈଦାନ୍ତିକ ବ୍ୟାଖ୍ୟା ପ୍ରଭୃତି ଠିକ୍ ଏହି ଧରଣର ହୋଇଛି । ପାଣ୍ଡିତ୍ୟର ପରିଚୟ ଦେଇ ସାମୟିକ ଆନନ୍ଦ ଦେବାପାଇଁ ଜଣେ ବ୍ୟକ୍ତି ଏହାର ବିଶ୍ଳେଷଣ କରିପାରେ, ମାତ୍ର ସାମାଜିକ ସମସ୍ୟାକୁ ଦୂର କରିବା ପାଇଁ ଏହା କେତେଦୂର ପ୍ରଯୁଜ୍ୟ ତାହା ଆଲୋଚନା ସାପେକ୍ଷ । ଏହା କିନ୍ତୁ ଅତି ସହଜ କଥା ଯେ ଜଣେ ଭାରତୀୟ ସଂସ୍କୃତି ଓ ବୈଦାନ୍ତିକ ପରମ୍ପରାର ଜୟଗାନ କରିପାରେ, ମାତ୍ର ସମସ୍ୟା ଜଟିଳ ଏହି ସମାଜର ଆମୂଳ ପରିବର୍ତ୍ତନପାଇଁ ଏହା କିପରି ସାହାଯ୍ୟ କରିବ ସେ କଥା ବିଚାର କରିହୁଏ ନାହିଁ ।

ଏ ପ୍ରସଙ୍ଗରେ ଭାରତର ଶ୍ରେଣୀ-ବିଭକ୍ତ ସମାଜକୁ ବିଚାର କରାଯାଉ :

ଇତିହାସ ଏହାର ସାକ୍ଷୀ ଯେ, ଭାରତର ସମାଜ ଯୁଗେ ଯୁଗେ ଶ୍ରେଣୀ-ବିଭକ୍ତ । ସ୍ୱାଧୀନତା ପରେ ଏହି ବୈଷମ୍ୟକୁ ଦୂରେଇ ଦେବପାଇଁ ବହୁ ଭାଷଣ ଦିଆଯାଇଥିଲେ ହେଁ ତାହା ପୋଥିବାଇଗଣ ହୋଇଛି । ଶୋଷିତ ଓ ଶୋଷକ, ରାଜା ଓ ପ୍ରଜା, ଶାସକ ଓ ଶାସିତମାନଙ୍କର ସଂଘର୍ଷରେ ଆବର୍ତ୍ତିତ ହୋଇ ଆମର ସାମାଜିକ, ରାଜନୀତିକ ଓ ସାଂସ୍କୃତିକ ଜୀବନଯନ୍ତ୍ର ଗତି କରି ଚାଲିଛି । ଆମର ଚିନ୍ତା, ଭାବନା ଓ ସାମାଜିକ ମନନ ସବୁକିଛି ଏହି ପରମ୍ପରାରେ ସୃଷ୍ଟି ହୋଇଛି । ଏ ପ୍ରସଙ୍ଗରେ ଗୋଟିଏ କଥା ଏଠାରେ ଉଲ୍ଲେଖ କଲେ ଅତିରଞ୍ଜିତ ହେବ ନାହିଁ । ଏକଥା ହେଉଛି ଯେ, ଆମର ପରମ୍ପରା ଏକ ଉପଦେଶବାଗୀଶ ପରମ୍ପରା ରୂପେ ପରିଗଣିତ ହୋଇଛି । ଯିଏ ଉଚ୍ଚରେ ସେ ନିମ୍ନସ୍ଥ ବ୍ୟକ୍ତିକୁ ଉପଦେଶ ଦେବ । ଉପଦେଶ ଦେବାଟା ସତେ ଯେପରି ତାଙ୍କର ପୈତୃକ ସମ୍ପତ୍ତି । ଏହି ଉପଦେଶ ପୁଣି ଏବେ ବହୁଳଭାବରେ ଦେଖାଯାଇ ଥାଏ । କେହି କହିଲେଣି ଦେଶପ୍ରେମ ଜାଗ୍ରତ କର । କେହି କହିଲେଣି ଦେଶାତ୍ମବୋଧ ଜାତିକୁ ଉନ୍ନତ କରାଏ । କେହି ପୁଣି କହିଲେଣି ଯେ ଦେଶର ଡାକରେ ସମସ୍ତେ ଜାଗ୍ରତ ହୋଇ ଦେଶର ସ୍ୱାର୍ଥ ନିକଟରେ ବ୍ୟକ୍ତିର ସ୍ୱାର୍ଥକୁ ତ୍ୟାଗ କରିବା ଉଚିତ । ଦେଶର ଐକ୍ୟପାଇଁ ପୁଣି କିଏ

ଉଦ୍‌ବୋଧନ ଦେଉଛୁ । ଏହି ଉପଦେଶ ଏବଂ ଉପଦେଶ ପ୍ରଦାନକାରୀଙ୍କୁ ବିଶ୍ଳେଷଣ କଲେ ଜଣାଯାଏ ଯେ, ଯେଉଁମାନେ ଉପଦେଶ ଦେଉଛନ୍ତି ସେମାନେ ହେଲେ ଶାସକ ଏବଂ ଉଚ୍ଚପଦସ୍ଥ ବ୍ୟକ୍ତି । ସେମାନଙ୍କର ଅଭାବ ନାହିଁ, ପ୍ରାଚୁର୍ଯ୍ୟ ମଧ୍ୟରେ ଜୀବନଯାପନ କରି ଅଭାବଗ୍ରସ୍ତ ବ୍ୟକ୍ତିଙ୍କୁ ଏମାନେ ଉପଦେଶ ଦେବେ । ଉପଦେଶ ଦେଇ ଶ୍ରମିକ, କୃଷକ, ମୂଲିଆ ଓ ନିରନ୍ନ ବ୍ୟକ୍ତିଙ୍କୁ ଏମାନେ ତିରସ୍କୃତ କରିବେ । ତେଣୁ ଭାରତର ଶ୍ରେଣୀବିଭକ୍ତ ସମାଜରେ ଏତେବେଶୀ ଉପଦେଶ ଓ ଏତେ ବେଶୀ ଉପଦେଷ୍ଟା ! ଯୁବସମାଜ ଯେତେବେଳେ ଏହି କଥାକୁ ଉପଲବ୍ଧି କରେ ସେତେବେଳେ ସେ ବିକ୍ଷିପ୍ତ ହେବା ହିଁ ସ୍ୱାଭାବିକ । ତେଣୁ ସେ **ଅସନ୍ତୋଷ ପ୍ରକାଶ** କରେ । ଏହି ଅସନ୍ତୋଷ କ୍ରମେ ବିପ୍ଳବରେ ରୂପାନ୍ତରିତ ହୁଏ । ତା'ପରେ ପୁଣି ସେହି ସ୍ୱଚ୍ଛନ୍ଦ ଜୀବନଯାପନକାରୀ ବ୍ୟକ୍ତିମାନେ କହନ୍ତି ଯୁବକମାନେ ଉଚ୍ଛୃଙ୍ଖଳ ହୋଇଗଲେ । ଯୁବକମାନଙ୍କୁ ନିନ୍ଦା କରାଯାଏ । ଏହି ସମସ୍ୟାକୁ ପୁଣି କୁହାଗଲା ଯୁବସମସ୍ୟା ।

ଯେଉଁ ଯୁବକମାନେ ସାଧାରଣ ପରିବେଶରୁ ଆସିଛନ୍ତି ସେମାନେ ଏହି ସମସ୍ୟାକ୍ଳିଷ୍ଟ ସମାଜ ସହିତ ନିଜକୁ ମିଶାଇ ଦେଇଥାନ୍ତି, ମାତ୍ର ମଧ୍ୟବିତ୍ତ ଯୁବକ-ଗୋଷ୍ଠୀ ମଧ୍ୟରେ ଉଦାସୀନତା, ବିଳାସିତା ଲକ୍ଷ୍ୟ କରାଯାଇଥାଏ । ସେମାନେ ଭାବନ୍ତି କାଦୁଅକୁ ଯାଉଛୁ କାଏ ଗୋଡ଼ ଧୋଉଛୁ କାଏ । ଯେଉଁମାନେ ଉଚ୍ଚ ବର୍ଗଗୋଷ୍ଠୀ ଯୁବକ, ସେମାନେ ଏ ସବୁଥିରେ ନ ଥାଇ ନିଜ ନିଜର ଉଦ୍ଦେଶ୍ୟ ସାଧନରେ ବ୍ରତୀ ହୋଇଥାନ୍ତି । ସେମାନେ ମଧ୍ୟ ସେମାନଙ୍କର ବଂଶଧର ଭଳି ଉପଦେଶ ଦେବାରେ ପଟୁ । ଏହି କାରଣରୁ ଯୁବସମାଜ ମଧ୍ୟରେ ଶ୍ରେଣୀବୈଷମ୍ୟ ଦେଖାଦେଇଛି ।

### ଆଜିର ଯୁବଆନ୍ଦୋଳନରେ ଆନ୍ତରିକତାର ପ୍ରଶ୍ନ :

ଯେ କୌଣସି ସମ୍ବାଦପତ୍ର ଦେଖିଲେ ଯୁବଆନ୍ଦୋଳନ ସମ୍ବନ୍ଧରେ କିଛିନା କିଛି ଜଣାଯାଇଥାଏ । କେଉଁଠାରେ ଜାତୀୟସମ୍ପତ୍ତି ନଷ୍ଟ, କେଉଁଠାରେ ଲୁଟତରାଜ କେଉଁଠାରେ ଶିକ୍ଷକଙ୍କୁ ମାଡ଼, କେଉଁଠାରେ ଘେରାଉ ଇତ୍ୟାଦି ବିଭିନ୍ନ ଘଟଣା ଦୃଷ୍ଟିପଥରେ ପଡ଼େ । ଏ ସବୁଥିରେ ଯୁବକମାନଙ୍କର ଆନ୍ତରିକତା କେତେ ତାହା ବିଚାର କରିବାର କଥା । ମନେହୁଏ ସତେ ଯେପରି କୌଣସି ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ନ ଥାଇ ବହୁ ସମୟରେ ଯୁବକମାନେ ଏହିଭଳି କାର୍ଯ୍ୟକଳାପରେ ଲିପ୍ତ ଥାନ୍ତି । ସାମୟିକ ଉତ୍ତେଜନାରେ ଅନୁପ୍ରେରିତ ହୋଇ ଏହିଭଳି ଆନ୍ଦୋଳନର ସୂତ୍ରପାତ ହୋଇଥାଏ । ଜୁଆର ପରେ ଭଟ୍ଟା ପଡ଼ିଲା ଭଳି କିଛି ସମୟ ପରେ ଏହି ଆନ୍ଦୋଳନ ଦବି ଯାଇଥାଏ । ଯେଉଁ ଯୁବକମାନେ ଏହିଭଳି ଆନ୍ଦୋଳନରେ ଭାଗ ନେଇଥାନ୍ତି

ପରେ ସେମାନେ ଏଥିରୁ ମୁକ୍ତ ହେବାପାଇଁ ତୋଷାମଦର ପାତ୍ର ହୋଇଥାନ୍ତି । ପୁଣି ଦେଖାଯାଏ ଯେ କୌଣସି ସମୟରେ କୌଣସି ଏକ ସାମାନ୍ୟ ଘଟଣାକୁ ଭିତ୍ତିକରି ଜଣେ ନେତ୍ର ଯୁବକ ପାଟିତୁଣ୍ଡ କଲେ ତାକୁ ତା'ପରେ ନେତା ମାନ ନେଇଥାନ୍ତି । ନେତା ପଦରେ ଅଧ୍ୟୁଷିତ ହୋଇଗଲାପରେ ସେ ନିଜକୁ କୃତକୃତ୍ୟ ମନେକରିଥାଏ । ଏହାଦ୍ୱାରା ସାମାଜିକ ସମସ୍ୟାର ସମାଧାନ ହୋଇ ନ ପାରେ । ଶିକ୍ଷକଙ୍କୁ ମାଡ଼ ଦେଲେ, ଜାତୀୟ ସମ୍ପତ୍ତି ନଷ୍ଟ କଲେ ବା ମୂର୍ତ୍ତି ଭାଙ୍ଗିଲେ କୌଣସି ସମସ୍ୟାର ସମାଧାନ ହୋଇ ନ ପାରେ । ଏଥିପାଇଁ ସୁଚିନ୍ତିତ ବିଚାର ଦରକାର । ବ୍ୟକ୍ତି-କୈନ୍ଦ୍ରିକ ସ୍ୱାର୍ଥସାଧନପାଇଁ କେତେକ ମୁଷ୍ଟିମେୟ ଯୁବକ ଯେଉଁ ବିକଳ୍ପ ପନ୍ଥା ଧାରଣ କରନ୍ତି ତାହାକୁ ସମସ୍ତ ଯୁବସମ୍ପ୍ରଦାୟ ଉପରେ ଅଠା ବୋଲି ଦିଆଯାଇ-ଥାଏ । ଏ ସବୁ ଘଟିବାର କାରଣ ହେଉଛି, ରାଜନୀତି କ୍ଷେତ୍ରରେ ନୀତିଭ୍ରଷ୍ଟତା, ଶିକ୍ଷାରେ ନୀତିହୀନତା । ଏ ସମ୍ବନ୍ଧରେ କେତେକ ଆଲୋଚନା କରିଥାନ୍ତି ଯେ ଆର୍ଥନୀତିକ ବୈଷମ୍ୟ ଏବଂ ବେକାର ସମସ୍ୟା ହିଁ ଯୁବସମସ୍ୟା ପାଇଁ ଦାୟୀ । ଏହା ନିଶ୍ଚିତ ଭାବରେ କାରଣ ହୋଇପାରେ । ମାତ୍ର ଆଜିକାଲି ଯେପରି ହାଟ ବଜାରରେ ଖାମଖିଆଲି ଆନ୍ଦୋଳନ ସୃଷ୍ଟି ହେଉଛି ତା'ର ଭିତ୍ତି କଣ ? ଏହାର ମୂଲ୍ୟ ବା କେଉଁଠି ?

ସ୍ୱାଧୀନତା ପୂର୍ବର ଯୁବସମାଜ ସୁସଂଗଠିତ ଭାବରେ ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ନେଇ ଆନ୍ଦୋଳନ କରୁଥିଲାବେଳେ ଏବର ଯୁବସମାଜ ସମସ୍ତ ଆଦର୍ଶଚ୍ୟୁତ ହୋଇ ପଡ଼ିଛି । ପୁଣି ଏହି ଯୁବଗୋଷ୍ଠୀ ମଧ୍ୟରେ ବିଭିନ୍ନ ଉପଦଳ । କାହାରି ଆଦର୍ଶ କାହାଠାରେ ନାହିଁ । ସମୂହ ଭାବରେ ଯେଉଁ ଯୁବସମସ୍ୟା କଥା ବିଚାର କରାଯାଇ-ଥାଏ ତାହା ପୁଣି ବହୁ ଉପସମସ୍ୟାର ସମାହାର । ତେବେ ଆଜି ଯୁବସମାଜର ଅଧୋପତନର କାରଣ ସାମାଜିକ ପୃଷ୍ଠଭୂମିରେ, ନେତୃତ୍ୱର ନୀତିହୀନତାରେ, ରାଜନୀତିର ବ୍ୟକ୍ତିବାଦରେ, ଆଦର୍ଶର ଅବହେଳନାରେ ଖୋଜିବାକୁ ହେବ । ଆଜିର ଅଧଃପତନ ପ୍ରତ୍ୟେକ ସ୍ତରରେ ଦେଖା ଦେଇଛି । ରାଜନୀତି, ସଂସ୍କୃତି, ଶିକ୍ଷାକ୍ଷେତ୍ର, ବାଣିଜ୍ୟକ୍ଷେତ୍ର—ପ୍ରଭୃତି ଆଜି ଅଧଃପତନର ଛନ୍ଦ । ଏହି ଦୃଷ୍ଟିରୁ ଯୁବଆନ୍ଦୋଳନରେ ଆନ୍ତରିକତା ପରିବର୍ତ୍ତେ ସାମୟିକ ଉତ୍ତେଜନା ବେଶୀ ବୃଦ୍ଧି ଲାଭ କରୁଛି ।

## ଶେଷରେ ଯୁବସମସ୍ୟା—ଏକ ସମସ୍ୟା କି ?

ଆଲୋଚନା କରାଯାଇଛି ଯେ ସାମାଜିକ ସମସ୍ୟାର ଏକ ରୂପ ହିଁ ଯୁବ-ସମସ୍ୟା । ସାମାଜିକ ସମସ୍ୟାରୁ ଯୁବସମସ୍ୟାକୁ ପୃଥକ କରାଯାଇ ନପାରେ । ଆଜିର ଯୁବକ ସମାଜ ଓ ରାଜନୀତି ସହିତ ବିଶେଷ ଭାବରେ ଜଡ଼ିତ । ସେ ନିଜକୁ ରାଜନୀତିରୁ ମୁକ୍ତ କରି ନପାରେ । ଦ୍ୱନ୍ଦ୍ୱ ବାଦାତ୍ମକ ମଧ୍ୟଦେଇ ଆଜିର ରାଜନୀତିକ

ଆବହାଓ୍ୱା ତାକୁ ପ୍ରଭାବିତ କରେ । ଶ୍ରେଣୀବିଭକ୍ତ ସମାଜର ଜଟିଳ ସମସ୍ୟା ତାକୁ ବିବ୍ରତ କରେ । ସାଂସ୍କୃତିକ ଚେତନା, ବୈପ୍ଳବିକ ଆଲୋଚନା, ଆଦର୍ଶଗତ ଶିକ୍ଷା ତାକୁ ତା'ର ସମସ୍ୟାର ସମାଧାନ ପାଇଁ ପ୍ରକୃତ ଉପାୟ ଦେଇପାରେ । ସେ ନିଜକୁ ସମାଜଠାରୁ ଅଲଗା କରିପାରେ ନାହିଁ । ସମାଜରେ ସେ ଏକ ଅଂଶ ବିଶେଷ । ସାମାଜିକ ସମସ୍ୟାର ଅନ୍ୟରୂପ ଯୁବସମସ୍ୟା । ତେଣୁ ଯୁବସମସ୍ୟା ନିଶ୍ଚିତ ଭାବରେ ଏକ ସାମାଜିକ ସମସ୍ୟା । ଏହାକୁ ସହଜରେ ଏଡ଼ାଇ ଦିଆଯାଇ ନ ପାରେ । ସାମାଜିକ ସମସ୍ୟାକୁ ସମାଧାନ କରିବାକୁ ହେଲେ ଯୁବସମସ୍ୟାକୁ ସର୍ବପ୍ରଥମେ ସମାଧାନ କରିବାକୁ ହେବ । ନୂତନ ସାମାଜିକ ମୂଲ୍ୟବୋଧ ଦୃଷ୍ଟିରୁ ଏହି ସମସ୍ୟାର ଆଶୁ ସମାଧାନ ଆବଶ୍ୟକ । ଅବଶ୍ୟ କେତେକ ସମୟରେ ଯୁବକ-ମାନେ ଅଯଥା ଗୁଡ଼ାଏ ଜଟିଳ ସମସ୍ୟା ସୃଷ୍ଟି କରନ୍ତି । ଏହା ସେମାନଙ୍କର ସ୍ୱାର୍ଥକୁ ସୁହାଇଲା ଭଳି ସମସ୍ୟା ଯାହାକି ସେମାନେ ନିଜେ ସୃଷ୍ଟି କରିଥାନ୍ତି । ଯୁବକମାନେ ନିଜକୁ ଏକ ସମସ୍ୟା ରୂପେ ପରିଚୟ ନ ଦେଇ ସାମାଜିକ ସମସ୍ୟାର ଏକ ରୂପ ଭାବରେ ପରିଚୟ ଦେଲେ ଏହି ସମସ୍ୟାର ମୂଲ୍ୟବୋଧ ନିଶ୍ଚିତ ରୂପେ ରହିବ; ଏଥିରେ ସନ୍ଦେହ ନାହିଁ ।



# ଯୁବସମାଜ ଓ ସାମାଜିକ ପରିବର୍ତ୍ତନ

"ଯୁବସମାଜ ଓ ସାମାଜିକ ପରିବର୍ତ୍ତନ" ଶୀର୍ଷକ ବିଷୟକୁ ଆଲୋଚନା କରିବା ପୂର୍ବରୁ ମୋ ମନରେ ଦୁଇଗୋଟି କଥା ପ୍ରଥମେ ଦେଖାଯାଉଛି । ପ୍ରଥମତଃ—ସାମାଜିକ ପରିବର୍ତ୍ତନରେ ଯୁବସମାଜର ଭୂମିକା ଏବଂ ଦ୍ୱିତୀୟତଃ—ସାମାଜିକ ପରିବର୍ତ୍ତନ ପାଇଁ ଯୁବସମାଜର ନେତୃତ୍ୱ । ଏତଦ୍‌ବ୍ୟତୀତ ଆଉଗୋଟିଏ କଥା ମନକୁ ଆସେ, ତାହା ହେଉଛି—ସାଂପ୍ରତିକ ପରିପ୍ରେକ୍ଷୀରେ ଯୁବସମାଜର ସ୍ଥିତି ଓ ଅବସ୍ଥା ଏବଂ ବର୍ତ୍ତମାନର ପରିବର୍ତ୍ତିତ ସାମାଜିକ ଅବସ୍ଥା ସହିତ ସେମାନଙ୍କର ସମ୍ପର୍କ । ମୋଟ ଉପରେ ଏହାହିଁ ମୁଖ୍ୟ ପ୍ରଶ୍ନ ଯେ ପରିବର୍ତ୍ତିତ ସାମାଜିକ ପରିସ୍ଥିତିରେ ଯୁବସମାଜର ଭୂମିକା କ'ଣ ? ସମାଜର ପରିବର୍ତ୍ତନ ନିଶ୍ଚିତ, ଏହା ଯୁଗ ଯୁଗର ସତ୍ୟ । ଏହି ପରିବର୍ତ୍ତିତ ସମାଜର ଆତ୍ମିକ ସତ୍ତା ସହିତ ଏକାତ୍ମ ହୋଇ ଯୁବସମାଜ କିପରି ଭୂମିକା ନେବା ଉଚିତ ତାହାହିଁ ବିଚାର୍ଯ୍ୟ । ପୁନଶ୍ଚ ସମାଜର ପରିବର୍ତ୍ତନ ପାଇଁ ଯୁବସମାଜର ଯେ ଏକାନ୍ତ ଦାୟିତ୍ୱ ଅଛି ଏକଥାକୁ ଉପେକ୍ଷା କରାଯାଇ ନ ପାରେ । ବର୍ତ୍ତମାନ ସମାଜ ପରିବର୍ତ୍ତନ ଘଟୁଛି କି ? —ଏହା ଏକ ଆଲୋଚନା ସାପେକ୍ଷ ।

### ସାମାଜିକ ପରିବର୍ତ୍ତନର ଆବଶ୍ୟକତା :

ସମାଜ ବାହ୍ୟତଃ ସ୍ଥିର ଜଣାଯାଉଥିଲେହେଁ ଏହାର ଆତ୍ମିକ ସ୍ୱରୂପ ସର୍ବଦା ପରିବର୍ତ୍ତିତ ହେଉଅଛି । ପ୍ରାଗୈତିହାସିକ କାଳରୁ ଏପର୍ଯ୍ୟନ୍ତ ସମାଜର ନନ୍ଦିଘୋଷ ରଥ ଗଡ଼ିଚାଲିଛି । ବିଭିନ୍ନ ସମୟରେ ସାମାଜିକ ବିପ୍ଳବ ସୃଷ୍ଟି ହୋଇ ସମାଜର କୁମ୍ଭକର୍ଣ୍ଣ ନିଦ୍ରାକୁ ଭାଙ୍ଗି ଦିଆଯାଇଛି । ସମାଜର ଅସନ୍ତୋଷକୁ ଯୁବକ ହିଁ ପ୍ରଥମେ ପ୍ରକାଶ କରିଛି । ମହାବୀର ଓ ବୁଦ୍ଧଦେବ ସେ ସମୟର ସାମାଜିକ ପରିବର୍ତ୍ତନ ପାଇଁ କମ୍ ବିପ୍ଳବ କରିନାହାନ୍ତି । ସେହିପରି ସକ୍ରେଟିସ୍, ପ୍ଲେଟୋ, ଯୀଶୁଖ୍ରୀଷ୍ଟ, ମହମ୍ମଦ, ରୁଷୋ, ଭଲଟେୟାର, ମାର୍ଟିନ୍ ଲୁଥର, ଲେନିନ୍, ମହାତ୍ମାଗାନ୍ଧୀ ପ୍ରଭୃତି ମଧ୍ୟ ସାମାଜିକ ପରିବର୍ତ୍ତନ ପାଇଁ ବିପ୍ଳବ କରିଥିଲେ । ଏହି ପରିବର୍ତ୍ତନକୁ ଆକସ୍ମିକ ବୋଲି ଭାବିବା ମଧ୍ୟ ଠିକ୍ ନୁହେଁ । ସମାଜରେ ଯେତେବେଳେ କୁସଂସ୍କାର ଦେଖା-ଦିଏ, ବୈଷମ୍ୟ ମୁଣ୍ଡଟେକି ଉଠେ ସେତେବେଳେ ସମାଜ ପରିବର୍ତ୍ତନ ଘଟେ । ଗୋଟିଏ ଯନ୍ତ୍ର କିଛିଦିନ କାର୍ଯ୍ୟ କଲା ପରେ ତାକୁ ପରିବର୍ତ୍ତନ କରିବାକୁ

ହୋଇଥାଏ । ଯୁଗରୁଚି ଅନୁଯାୟୀ ଯନ୍ତ୍ର ମଧ୍ୟ ବଦଳେ । ସମାଜ ମଧ୍ୟ ଠିକ୍ ସେହିପରି । ସମସାମୟିକ ପରିବେଶ ଓ ଗଣତାନ୍ତ୍ରିକ ଚିନ୍ତାଧାରା ସହିତ ସାମାଜିକ ପରିସ୍ଥିତିର ଆନ୍ତରିକ ସଂଯୋଗ ଓ ସମନ୍ୱୟ ହେବା ଉଚିତ୍ । କୌଣସି ଏକ ସ୍ଥିର ବିନ୍ଦୁରେ ପ୍ରାଚୀନ ଓ ମଧ୍ୟଯୁଗୀୟ ଚିନ୍ତା ବନ୍ଦ ହୋଇଯାଇ ଆଧୁନିକ ପ୍ରଗତିବାଦୀ ଚିନ୍ତା ହଠାତ୍ ଆରମ୍ଭ ହେବ—ଏହା ଭାବିବା ଭ୍ରମାତ୍ମକ ।

ତେବେ ପ୍ରଶ୍ନ ହେଉଛି ସାଂପ୍ରତିକ ଯୁଗରେ ସାମାଜିକ ପରିବର୍ତ୍ତନର ଆବଶ୍ୟକତା ଅଛି କି ? ଏହା ନିଶ୍ଚିତ ସତ୍ୟ ଯେ ବାରମ୍ବାର ପରିବର୍ତ୍ତିତ ଏହି ସମାଜର ପୁନଃପରିବର୍ତ୍ତନର ଆବଶ୍ୟକତା ଅଛି । ଏ ଯୁଗ ହେଉଛି ସାଧାରଣ ଜନତାର ଯୁଗ (The century of the common man) । ଅତଏବ ସାଧାରଣ ଜନତାର ମଙ୍ଗଳ ପାଇଁ ଏହି ସମାଜ ପରିବର୍ତ୍ତନ ଆବଶ୍ୟକ କରେ । ଭାରତବର୍ଷର ସାମାଜିକ ପରିସ୍ଥିତିକୁ ବିଶ୍ଳେଷଣ କରି ଏହି ସିଦ୍ଧାନ୍ତରେ ଉପନୀତ ହେବାକୁ ହୁଏ । ଆମର ସମ୍ବିଧାନରେ ସବୁଠି ମୌଳିକ ଅଧିକାର ଦିଆଯାଇଛି ଏବଂ ସବୁଠି ହିନ୍ଦୁ ଉତ୍ତରାଧିକାରୀ ଆଇନ୍, ବିବାହ ଆଇନ୍, ଅସ୍ପୃଶ୍ୟତା ନିବାରଣ ଆଇନ୍, ଜମିଦାରୀ ଉଚ୍ଛେଦ ଆଇନ୍, ଭାଗଚାଷ ଆଇନ୍ ଇତ୍ୟାଦି ବିଭିନ୍ନ ଲୋକ-ହିତକର ଆଇନମାନ ପ୍ରଣୟନ କରାଯାଇଛି; କିନ୍ତୁ ଏସବୁ ଯଥାଯଥ ଭାବରେ କାର୍ଯ୍ୟକାରୀ ହେଉଛି କି ନାହିଁ ତାହା ଚିନ୍ତାଶୀଳ ଲୋକମାନେ ବିଚାର କରିବେ । ଏବେ ମଧ୍ୟ ଆମ ସମାଜ ଯେଉଁ ମାଧିଆକୁ ସେଇ ମାଧିଆ । ସମାଜ ବର୍ତ୍ତମାନ ନିଃଶଙ୍କ । ୧୯୨୦ ମସିହାରୁ ୧୯୪୭ ମସିହା ପର୍ଯ୍ୟନ୍ତ ସାମାଜିକ ପରିବର୍ତ୍ତନ ପାଇଁ ବହୁ ଆନ୍ଦୋଳନ ହୋଇଥିଲେହେଁ ସ୍ୱାଧୀନତା ପରେ ପରେ ସେସବୁ ପୋଥି ବାଇଗଣ ହୋଇଗଲା । ଏସବୁ ଆଇନ୍ ସାଗର ମଧ୍ୟରେ ଉବୁଟୁବୁ ହେଉଛି । କିନ୍ତୁ ମନେ-ରଖିବାକୁ ହେବ ଯେ ଆଇନ୍ କୌଣସି କାଳରେ ସମାଜର ଅନ୍ତଃସ୍ୱରୂପକୁ ପରିବର୍ତ୍ତନ କରିପାରି ନାହିଁ । ଏଥିପାଇଁ ଦରକାର ସାମାଜିକ ବିପ୍ଳବ । ଏବେ ମଧ୍ୟ ଏହି ସମାଜରେ ଅସ୍ପୃଶ୍ୟତା ରୂପକ କ୍ଷୟରୋଗର ଜୀବାଣୁ ବିଦ୍ୟମାନ ରହିଛି । ପୁଣି ଏବେ ସାଂପ୍ରଦାୟିକ ମନୋଭାବ କ୍ରମେ ଉତ୍କଟ ଆକାର ଧାରଣ କରୁଛି । ଧର୍ମାନ୍ଧତା ହିଁ ଏହି ସାଂପ୍ରଦାୟିକ ବିଷକ୍ରିୟାର ମୂଳ କାରଣ । ସାଂପ୍ରଦାୟିକ ମନୋଭାବ ଦୂର ନ ହେଲାଯାଏ ସମାଜର ମଙ୍ଗଳ ନାହିଁ । ସ୍ୱାଧୀନତାର ୨୩ ବର୍ଷ ମଧ୍ୟରେ ଏହି ବୈଷମ୍ୟ ଦୂର ହୋଇପାରିଲା ନାହିଁ । ଧର୍ମଗତ, ଜାତିଗତ ବୈଷମ୍ୟ ସଙ୍ଗେ ସଙ୍ଗେ ଭାଷାଗତ ଏବଂ ଆଞ୍ଚଳିକ ବୈଷମ୍ୟ କ୍ରମେ ମୁଣ୍ଡଟେକି ଉଠୁଛି । ଗଣତାନ୍ତ୍ରିକ ସମାଜବାଦ ଉପରେ ଆମେ ବିଶ୍ୱାସ କରୁଛୁ ମାତ୍ର ଏହା କେବଳ କଥା ଓ କାଗଜରେ ସୀମାବଦ୍ଧ ହୋଇ ରହିଯାଇଛି । ସରକାରୀ ନାଲି ଫିତାକୁ ଅତିକ୍ରମକରି ରାଜସ୍ୱାର ସ୍ୱପ୍ନ ଦେଖି ପାରିଲା ନାହିଁ ।

ଅସ୍ପୃଶ୍ୟତା ବ୍ୟାଧିଭଳି ଆଉ ଏକ ମାରାତ୍ମକ ବ୍ୟାଧି ଆଜି ସମାଜରେ ଦେଖାଦେଇଛି । ଏହା ଯୁବସମାଜକୁ ବିକ୍ଷିପ୍ତ କରାଉଛି । ବିଭିନ୍ନ ଚାକିରିଜୀବୀମାନଙ୍କ ମଧ୍ୟରେ ବୈଷମ୍ୟ ଏହାର କାରଣ । ଆଇ. ଏ. ଏସ୍, ଡାକ୍ତର, ଇଞ୍ଜିନିୟର, ଅଧ୍ୟାପକ, କିରାଣୀ, ପିଅନ ଆଦି କର୍ମଚାରୀମାନଙ୍କ ମଧ୍ୟରେ ସମ୍ପର୍କ ନାହିଁ । ଉଚ୍ଚ-ଶ୍ରେଣୀର କର୍ମଚାରୀମାନେ ନିମ୍ନ ବେତନଭୋଗୀ କର୍ମଚାରୀମାନଙ୍କ ପ୍ରତି ଭଲ ମନୋଭାବ ପୋଷଣ କରୁ ନାହାନ୍ତି । ଫଳରେ ଅସନ୍ତୋଷ ବୃଦ୍ଧି ପାଉଛି । ସେହିପରି ସରକାରୀ ଓ ବେସରକାରୀ କର୍ମଚାରୀମାନଙ୍କ ମଧ୍ୟରେ ଆର୍ଥିକ ସଂଘର୍ଷ ଦେଖାଯାଉଛି । କୃଷକ, ଶ୍ରମିକଜୀବୀମାନେ ମଧ୍ୟ ଆଜି ଆଉ କାହାକୁ ବିଶ୍ୱାସ କରିପାରୁନାହାନ୍ତି । ସେମାନଙ୍କର ଭାଗ୍ୟ ସବୁଦିନେ ପଥର ତଳେ । ଏହିଭଳି ସମାଜର ବିଭିନ୍ନ ସ୍ତରରେ ବୈଷମ୍ୟ ବୃଦ୍ଧି ପାଉଛି । ତେଣୁ ଆଜି ସମାଜରେ ଅସନ୍ତୋଷର ବହ୍ନି କୁହୁଳି ଉଠୁଛି । ତାର ଗୋଟିଏ ଦିଗ ନକସଲାଇଟ୍‌ଙ୍କ ଆନ୍ଦୋଳନରେ ରୂପ ପ୍ରକାଶ କରୁଛି । ଏମାନଙ୍କୁ ଉତ୍କାମୂତ ବୋଲାଯାଉଛି, ନୃଶଂସ ହତ୍ୟାକାରୀ ବୋଲି ଅଭିହିତ କରାଯାଉଛି । ତଥାପି ଏମାନେ କ୍ରିୟାଶୀଳ ହୋଇ ପଡ଼ୁଛନ୍ତି । ସାମନ୍ତବାଦୀ ମନୋଭାବନେଇ ଏମାନଙ୍କୁ ବିଚାର କଲେ ଚଳିବ ନାହିଁ । ଏହାର ମୂଳସୂତ୍ର ଖୋଜି ସମାଧାନ କରିବାକୁ ହେବ । ଯେଉଁଠି ଲୋକ ଗଣ୍ଡେ ଖାଇବାକୁ ପାଆନ୍ତି ନାହିଁ, ପିନ୍ଧିବାକୁ ଲୁଗାଖଣ୍ଡେ ପାଆନ୍ତି ନାହିଁ—ଯେଉଁଠି ଲୋକେ ବେକାର ସେଠି ଏସବୁ କଥାକୁ ଖାମଖିଆଲ ଭାବରେ ବିଚାର କଲେ ଚଳିବ ନାହିଁ । ଆମ୍ଭ ଅସନ୍ତୋଷରୁ ଯେଉଁ ବିପ୍ଳବର ସ୍ଫୁଲିଙ୍ଗ ନିର୍ଗତ ହେବ ତାକୁ କ'ଣ ସହଜରେ ନିର୍ବାପିତ କରାଯାଇପାରେ ?

ଏହି ପରିପ୍ରେକ୍ଷୀରେ ଆମର ଯୋଜନା ପ୍ରତି ମଧ୍ୟ ଧ୍ୟାନ ଦେବାକୁ ହେବ । ଯୋଜନାରେ ବହୁ ଅର୍ଥ ଖର୍ଚ୍ଚ ହୋଇ ମଧ୍ୟ ଆମର ଆର୍ଥିକ ପରିସ୍ଥିତିର ପରିବର୍ତ୍ତନ ଘଟିଛି କି ? ବର୍ତ୍ତମାନର ୪୦ % ଲୋକ ଶିକ୍ଷିତ ଏବଂ ୬୦ ଅଶିକ୍ଷିତ । ଏହି ୪୦ % ଲୋକଙ୍କୁ କାର୍ଯ୍ୟ ଯୋଗାଇ ଦିଆଯାଇ ପାରୁନାହିଁ । ଏଥିରୁ ବହୁଲୋକ ଆଜି ବେକାର । ଏଥିପାଇଁ ଆମର ଶିକ୍ଷାପଦ୍ଧତି ଏକାନ୍ତ ଦାୟୀ । ଆମର ଶିକ୍ଷାପଦ୍ଧତି ପାଶ୍ଚାତ୍ୟ ଛାଞ୍ଚରେ ତିଆରି ମାଟିର ମୂର୍ତ୍ତିଟିଏ । ଦେଖିବାକୁ ଖୁବ୍ ସୁନ୍ଦର ମାତ୍ର ଏହା ଆମ ମାଟିକୁ ଖାପ-ଖାଇ ପାରୁନାହିଁ । ଆମର ଉଚ୍ଚ ଶିକ୍ଷିତ ବ୍ୟକ୍ତିମାନେ ଇଂଲଣ୍ଡ, ନ୍ୟୁୟର୍କ, ମସ୍କୋ କଥା ନ କହିଲେ ସତେ ଯେପରି ସେମାନଙ୍କୁ କେହି ଚିହ୍ନି ପାରିବେ ନାହିଁ । ତେଣୁ ସମ୍ପୃତିକ ଶିକ୍ଷାପଦ୍ଧତିର ପରିବର୍ତ୍ତନ ଏକାନ୍ତ ଆବଶ୍ୟକ । ମେସିନ୍‌ରୁ ବାହାରିଲା ଭଳି କେବଳ ଶିକ୍ଷିତ ବେକାରମାନେ ବିଶ୍ୱବିଦ୍ୟାଳୟରୁ ଡିଗ୍ରୀ ଧରି ବାହାରୁଛନ୍ତି । ଡିଗ୍ରୀର ମୂଲ୍ୟ ଚାହିଦା କଲେଜରେ ବନ୍ଦି ହେଉଛି । ଯେନତେନ ପ୍ରକାରେ ଡିଗ୍ରୀ ଦରକାର । ଗୁଣାତ୍ମକ ଦିଗପ୍ରତି କାହାରି ଦୃଷ୍ଟି ନାହିଁ । ଏହାର କାରଣ ଏହି ଚାକିରିମୁଖୀ

ଶିକ୍ଷାର ଫଳ । ତେଣୁ ବେକାର ଯୁବସମାଜ ଆଜି ଉତ୍‌କ୍ଷିପ୍ତ । ଏଥିପାଇଁ ନେତୃସମାଜ ଧ୍ୟାନ ଦେବା ଉଚିତ । ମାତ୍ର ଯାହା ଦେଖାଯାଉଛି ନେତାମାନେ ବ୍ୟକ୍ତିଗତ ସ୍ୱାର୍ଥ ଏବଂ ଦଳୀୟ ସ୍ୱାର୍ଥପାଇଁ ବ୍ୟସ୍ତ । ଏସବୁ ପ୍ରତି ଧ୍ୟାନ ନାହିଁ । କେତେଟା କମିସନ ବସାଇ ଦେଲେ ସତେ ଯେପରି ଦାୟିତ୍ୱ ସରିଗଲା ।

## ପରିବର୍ତ୍ତନର ଆଭିମୁଖ୍ୟ :

ଯାହା ଦେଖାଯାଉଛି ବର୍ତ୍ତମାନ ସାମାଜିକ ପରିସ୍ଥିତି ଜଟିଳତାରେ ପରିପୂର୍ଣ୍ଣ ହୋଇ ରହିଛି । ପ୍ରତ୍ୟେକ ବ୍ୟକ୍ତି ନିଜ ନିଜର ସ୍ୱାର୍ଥପାଇଁ ବ୍ୟସ୍ତ । ବ୍ୟକ୍ତି ପରତନ୍ତ୍ରତା ବୃଦ୍ଧି ପାଉଅଛି । ସମାଜ ବର୍ତ୍ତମାନ କାଓସ୍‌ରେ ପରିଣତ ହୋଇଛି । ସବୁଠି ଅଶାନ୍ତି । ସାଧାରଣ ଶ୍ରମଜୀବୀ ଠାରୁ ଆରମ୍ଭ କରି ଉଚ୍ଚସ୍ତର ପର୍ଯ୍ୟନ୍ତ ଏହି କାଓସ୍ । ନିମ୍ନ ସ୍ତରରେ ବଞ୍ଚିବା ପାଇଁ କାଓସ୍ ମାତ୍ର ଉଚ୍ଚ ସ୍ତରରେ ଅହଂଭାବର ପ୍ରତିଷ୍ଠା ପାଇଁ କାଓସ । ତେଣୁ ପରିବର୍ତ୍ତନର ଏକ ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ରହିବା ଉଚିତ । ଏହି ଆଭିମୁଖୀ ହେବା ଉଚିତ ଯେ ସମାଜକୁ ଏକ ସୁସ୍ଥ, ସୁନ୍ଦର ସମାଜରେ ପରିଣତ କରିବା । ଯେଉଁମାନେ ପୁରୁଣା ପ୍ରଥାରେ ବିଶ୍ୱାସୀ ଏବଂ ଯେଉଁମାନେ ବ୍ୟକ୍ତିମୁଖ୍ୟ ସମାଜରେ ଆସ୍ଥାପୋଷଣ କରନ୍ତି ସେମାନେ ଏହି ପରିବର୍ତ୍ତନକୁ ସମର୍ଥନ ଜଣାଇ ନ ପାରନ୍ତି । ତେଣୁ ଯୁବକମାନଙ୍କୁ ନେତୃତ୍ୱ ନେବାକୁ ହିଁ ହେବ । ସମଗ୍ର ସମାଜରେ ମାନବିକତା ସୃଷ୍ଟି କରିବା ହିଁ ଏହି ପରିବର୍ତ୍ତନର ଲକ୍ଷ୍ୟ ହେବା ଉଚିତ । ଶ୍ରେଣୀହୀନ ସମାଜ ଗଠନ କରିବା, ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ସେକ୍ୟୁଲାର ସମାଜ ପ୍ରତିଷ୍ଠା କରିବା, ସମସ୍ତେ ସମାନ ଅଧିକାର ଲାଭ କରିବା ଇତ୍ୟାଦି ଏହି ନୂତନ ପରିବର୍ତ୍ତନର ଅନ୍ତଃସ୍ୱର । ଏହି ସ୍ୱର ସହିତ ଆମକୁ ପରିଚିତ ହେବାକୁ ହେବ । ତେଣୁ କୁହାଯାଉଛି "Humanism indeed is an attitude towards life that is fundamentally out of harmony with that side of democracy that is concerned with the common man with the welfare of the masses." ଏହାହିଁ ହେବ ଆମ ପରିବର୍ତ୍ତନର ଆଭିମୁଖ୍ୟ ।

## ଯୁବସମାଜର ଭୂମିକା :

ସମାଜର ପରିବର୍ତ୍ତନ ପାଇଁ ଯୁବସମାଜର ପ୍ରଧାନ ଭୂମିକା ଅଛି । ଯୁବସମାଜ ହିଁ ଗୋଟାଏ ସମାଜକୁ ପରିବର୍ତ୍ତନ କରିପାରେ । ଯାହା ବୃଦ୍ଧ ଦ୍ୱାରା ସମ୍ଭବ ନୁହେଁ ତାହାହିଁ ଯୁବକ ଦ୍ୱାରା ସମ୍ଭବ ହୋଇଥାଏ । ଅବଶ୍ୟ ଆମର

ଜଗଦ୍‌ଗବୀ ସମାଜ ଆଧୁନିକ ଯୁବସମାଜକୁ ଉଚ୍ଛୃଙ୍ଖଳ, ବିଶୃଙ୍ଖଳ ବୋଲି ଅଭିହିତ କରୁଛି । ଏହା କିନ୍ତୁ ଯୁକ୍ତିଯୁକ୍ତ ନୁହେଁ । ଯୁବସମାଜ ଆଗରେ କୌଣସି ଲକ୍ଷ୍ୟ ନ ରଖି ତାକୁ ଉଚ୍ଛୃଙ୍ଖଳ ବୋଲି କହିବା ସମୀଚୀନ ନୁହେଁ । ଯୁବସମାଜ ଯେତେବେଳେ ଦେଖୁଛି ଏବଂ ଅନୁଭବ କରୁଛି ତା' ଆଗରେ ବେକାର ସମସ୍ୟାର କରାଳ ରୂପ, କ୍ଷମତା ମଦମତ୍ତ ନେତୃମଣ୍ଡଳୀମାନଙ୍କର ଷଣ୍ଢ ଲଢ଼େଇ, ସମାଜରେ ନାନାଦି ବୈଷମ୍ୟ ସେତେବେଳେ ସେ କଣ କରିବ ? କାହା ଠାରୁ ଆଦର୍ଶ ବାଛିନେବ ? ସେମାନେ ବିଶୃଙ୍ଖଳ ହେବାହିଁ ସ୍ୱାଭାବିକ୍ । ସ୍ୱାଧୀନତା ପରେ ଜନକଲ୍ୟାଣ ପାଇଁ ଯେତେ ଭାଷଣ ଦିଆଗଲାଣି ସେ ସମସ୍ତକୁ ଯୋଡ଼ି ଦିଆଗଲେ ସ୍ୱର୍ଗ ରାଜ୍ୟକୁ ପାଇଯିବ । ମାତ୍ର ଏହାର ପ୍ରଭାବ ସମାଜରେ କେତେ ପଡ଼ାଇଛି ? ତେଣୁ ଆମେ ବର୍ତ୍ତମାନ କୁହାମୁଣ୍ଡା କପିଳା ଦଳରେ ପରିଣତ ହୋଇଛୁ । ମାତ୍ର ଏହାର ଅର୍ଥ ନୁହେଁ ଯେ ଯୁବସମାଜ ନିଜକୁ ଯଥେଚ୍ଛାଚାରୀ ଭାବରେ ପରିଚାଳିତ କରିବେ । ସେମାନଙ୍କର ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ରହିବା ଉଚିତ । ବିଶୃଙ୍ଖଳ ହେବା ବରଂ ବରଣୀୟ ମାତ୍ର ଭୁଲ ପଥରେ ଗତି କରିବା ଆଦୌ ସମୀଚୀନ ନୁହେଁ । ଏଣୁ ଜରାଦଗ୍ଧ ଆରଣ୍ୟକ ସମାଜକୁ ଏହି ଯୁବସମାଜହିଁ ପରିବର୍ତ୍ତନ କରିପାରିବ । ପର୍ବତରୁ ଝରଣା ଝରି ଆସେ । ସେ ବାଧା ବନ୍ଧନ ମାନେ ନାହିଁ । ଉଦ୍ଦାମ ଗତିରେ ସେ ଆଗେଇ ଆସେ । କେଉଁଠି ପ୍ରପାତ ସୃଷ୍ଟିକରେ । ଆରଣ୍ୟକ ପରିବେଶକୁ ସ୍ନିଗ୍ଧତର କରି ଶେଷରେ ମହାସମୁଦ୍ରରେ ମିଶିଯାଏ । ଯୁବସମାଜ ଠିକ୍ ଏହିଭଳି । ଗତି ପଥରେ ବିଶୃଙ୍ଖଳ ହେବାହିଁ ସ୍ୱାଭାବିକ । ଏ କ୍ଷେତ୍ରରେ ବିବେକାନନ୍ଦଙ୍କ ବାଣୀକୁ ବିଚାର କରିବାର କଥା । ସେ କହିଛନ୍ତି "They shold stand firm like a rock. Truth always triumphs. What India wants is a new electric stir up, a fresh vigour in the national veins." ଶତ ବାଧା ବିଘ୍ନରେ ଯୁବସମାଜ ଭାଙ୍ଗି ପଡ଼ିବା ଉଚିତ ନୁହେଁ । ସମାଜରେ ରହି ସମସ୍ୟାକୁ ପରିବର୍ତ୍ତନ କରିବାକୁ ହେବ । ଏବେ ଆମେରିକା ଏବଂ ଇଂଲଣ୍ଡରେ ବିଟ୍‌ଦଳ ସାଙ୍ଗକୁ ହିପିକ୍ ଆଉ ଇପିଜଦଳ ସୃଷ୍ଟି ହେଲେଣି । ଏମାନେ ସମାଜ ପ୍ରତି ବୀତସ୍ପୃହ ହୋଇ ପଳାୟନ-ପନ୍ଥୀ ମନୋଭାବ ନେଇ ଲକ୍ଷ୍ୟହୀନ ଭାବରେ ବୁଲୁଛନ୍ତି । ଉନ୍ମୁକ୍ତ ଦିବାଲୋକରେ ଯୌନକ୍ରୀଡ଼ା କରୁଛନ୍ତି । ଏହାଦ୍ୱାରା ସମାଜର ପରିବର୍ତ୍ତନ ହୋଇ ନପାରେ । ବିବେକାନନ୍ଦଙ୍କ କଥାରେ କହିବାକୁ ଗଲେ "This world is not for cowards. Do not try to fly. Look not for success or failure. You have the right to work but donot become so degenarate as to love for results· Work

incessantly. Good deeds can find a man in great bondage." ଏହି ସମାଜକୁ ପରିବର୍ତ୍ତନ କରିବାକୁ ହେଲେ ଯୁବସମାଜକୁ କଠିଣ ପରିଶ୍ରମ କରିବାକୁ ହେବ । ସ୍ୱାବଲମ୍ବୀ ଭାବରେ ନିର୍ଦ୍ଦିଷ୍ଟ ଆତ୍ମମୁଖ୍ୟ ନେଇ ଗଢି କରିବାକୁ ହେବ ।

କହୁଥିବା ଭଳି ଜଣେ ଯୁବକକୁ ଯୁକ୍ତିକଲେ ପରୀକ୍ଷାରେ କପି କରିବା ଉଚିତ । ନହେଲେ ପରିଣତି ଭୟାବହ ହେବ । ଅବଶ୍ୟ ଏକଥା କହିବାରେ ତାଙ୍କର ଯୁକ୍ତି ଅଛି । କେତେକ ସ୍ଥଳରେ କପି କରିବା ପାଇଁ ସମସ୍ତ ସୁଯୋଗ ଦିଆଯାଉଛି । ସ୍ଥଳବିଶେଷରେ ଏ ସୁଯୋଗରୁ କେତେକ ବଞ୍ଚିତ ହେଉଛନ୍ତି । ସଂଗତ କିଏ ଗୋଟାଏ ହୋଇପିବାକୁ କିଏ ନ ଚାହେଁ ? ତେଣୁ ଏଇ ଅସନ୍ତୋଷ । କିନ୍ତୁ କପି କରି ଜୀବନକୁ ଗଠନ କରାଯାଇ ନ ପାରେ । ଜୀବନକୁ ଗଠନ କରିବାକୁ ହେଲେ ନିଜକୁ ଦମ୍ଭସହକାରେ ଛିଡ଼ା ହେବାକୁ ହେବ । ବର୍ତ୍ତମାନର ଶିକ୍ଷାପଦ୍ଧତି ଆମକୁ ଘାସକୁ ଶ୍ରେଷ୍ଠ ବେଣାକୁ ମୋଟ କରିଛି । ଆମେ ଏ କୂଳର ନୋହୁଁ କିମ୍ବା ସେ କୂଳର ନୋହୁଁ । ଚାକିରିମୁଖୀ ଶିକ୍ଷା । ପୁଣି ଦେଖା-ଯାଉଛି ଚାକିରି କୌଣସି ଉପାୟରେ ପାଇ ସାରିଲା ପରେ ନିଜେ ଯେପରି ଜଣେ ଜଣେ ଇନ୍ଦ୍ର ବନି ଯାଉଛନ୍ତି । ଗୃହ ଜୀବନର ସବୁ ବୈପ୍ଳବିକ ମନୋଭାବର ସମାଧି ହେଉଛି । ସେ ପୁଣି ଅତ୍ୟାଚାର କରୁଛି । କେତେଟା ଆଇ. ଏ. ଏସ୍, ଓ. ଏ. ଏସ୍, ଇଞ୍ଜିନିୟର ବା ଅଧ୍ୟାପକ ହୋଇଗଲେ ଦେଶଟା ସ୍ୱର୍ଗକୁ ଚାଲିଯିବ ନାହିଁ । ଆମକୁ ଏଥିପ୍ରତି ଧ୍ୟାନ ଦେବାକୁ ହେବ ।

ପୁନଶ୍ଚ ଆମର ବୈଷୟିକ ଦିଗ ଆମକୁ ପଙ୍ଗୁ କରି ଦେଇଛି । ବୈଷୟିକ ବିକାଶ ପାଇଁ ଆମେ ସତତ ଚେଷ୍ଟିତ । ଭୌତିକ ପରିବର୍ତ୍ତନରେ ସମାଜ ପରିବର୍ତ୍ତନ ହେବ ନାହିଁ । ଅନ୍ତଃସ୍ୱଭାବ ପରିବର୍ତ୍ତନ ଏକାନ୍ତ ଆବଶ୍ୟକ । ବୈଷୟିକ ବିକାଶ ବା ଆର୍ଥିକ ଉନ୍ନତିରେ ସମାଜର ପରିବର୍ତ୍ତନ ହୋଇ ନପାରେ । ଡଃ ରାଧାକୃଷ୍ଣନ୍‌ଙ୍କ ଭାଷାରେ "Man is not body and mind; but he is the spirit." ତେଣୁ ସମାଜର ଆତ୍ମିକ ସ୍ୱରୂପକୁ ପରିବର୍ତ୍ତନ କରିବାକୁ ହେବ । ଯୁବକମାନ ଏହାର ନେତୃତ୍ୱ ନେବା ଉଚିତ ।

## ସାମାଜିକ ପରିବର୍ତ୍ତନ ପାଇଁ ଉପାୟ :

ଏହି ପରିବର୍ତ୍ତିତ ସମାଜର ପୁନଃପରିବର୍ତ୍ତନ ପାଇଁ କି କି ଉପାୟ ଅବଲମ୍ବନ କରିବାକୁ ହେବ ତାହା ବର୍ତ୍ତମାନ ଆଲୋଚ୍ୟ ବିଷୟ । ଏ ସମ୍ବନ୍ଧରେ ବହୁ ଚିନ୍ତାଶୀଳ ଜନନାୟକ ବହୁମତ ପୋଷଣ କରିଛନ୍ତି । ଆମେ ଯେଉଁ

ଛମିରେ ସେଇ ତମିରେ ବିଦ୍ୟମାନ । ବହୁ ସମୟରେ ଦେଖାଯାଇଛି ଆମର ଯୁବସମାଜଙ୍କ ମନ ମଧ୍ୟରୁ ଜାତିଆଣ ଏବଂ ସାମ୍ପ୍ରଦାୟିକ ମନୋଭାବ ଦୂର ହୋଇ ନାହିଁ । ଏଥିପାଇଁ କେତେକ କହିବାର ଶୁଣାଯାଇଛି ଯେ ଘରେ ପିତା ବା ମୁରବି ଯାହା କହିବେ ଆମ୍ଭେ ସେଥିରୁ ବାହାର ହେବୁ କିପରି ? ଏହା କିନ୍ତୁ ଆଦୌ ଉଚିତ ନୁହେଁ । ସମାଜକୁ ସୁସ୍ଥ ଓ ସୁନ୍ଦର କରିବାକୁ ହେଲେ ଏହି ବୈଷମ୍ୟକୁ ଦୂର କରିବାକୁ ହେବ । ଆନ୍ତରିକ ଯୋଗସୂତ୍ର ସ୍ଥାପନ କରିବାକୁ ହେବ । "Inter dining, inter marrying can make an integrated nation." ବାସ୍ତବ ଏବଂ ଆଦର୍ଶ ଦୃଷ୍ଟିରୁ ଏହା ହୋଇ ନାହିଁ । ସ୍ଥଳ ବିଶେଷରେ ଯଦିଓ ଏହା ହୋଇଛି ତାହା ବ୍ୟକ୍ତିଗତ ସ୍ୱାର୍ଥ ଦୃଷ୍ଟିରୁ । ଯୁବସମାଜର ଏ କ୍ଷେତ୍ରରେ ବିଶେଷ ଭୂମିକା ଅଛି । ଏବେ ବି ଗାଁଠାରୁ ଆରମ୍ଭ କରି ସହର ପର୍ଯ୍ୟନ୍ତ ସବର୍ଣ୍ଣ ଅସବର୍ଣ୍ଣ ଭାବ ବିଦ୍ୟମାନ । ଏହାର ପରିବର୍ତ୍ତନ ପାଇଁ ଯୁବସମାଜର କଣ କର୍ତ୍ତବ୍ୟ ନାହିଁ କି ? ଶିକ୍ଷିତ ଯୁବକମାନେ ଗାଁ ଗହଳରୁ ଏହି ଭାବକୁ ଦୂର କରିବା ଉଚିତ । ସାମ୍ପ୍ରଦାୟିକ ଭାବକୁ ସମୂଳେ ଧ୍ୱଂସ କରିବା ଉଚିତ । ମାତ୍ର ଯାହା ଦେଖାଯାଉଛି ଏହି ସାମ୍ପ୍ରଦାୟିକ ଭାବ କେବେ ହେଲେ ଶ୍ରମଜୀବୀ ବା ଅଶିକ୍ଷିତ ସଂପ୍ରଦାୟ ମଧ୍ୟରେ ସୃଷ୍ଟି ହେଉନାହିଁ । ରାଜନୀତିକ ଦୃଷ୍ଟିକୋଣରୁ ଏହାକୁ କରାଯାଇଛି । ଜାତିପ୍ରଥା, ଆଞ୍ଚଳିକ ବୈଷମ୍ୟ, ସାମାଜିକ ଅନ୍ୟାୟର ପ୍ରତିରୋଧ ଓ ଅଜ୍ଞତା ଦୂର କରିବା ଇତ୍ୟାଦି ଦାୟିତ୍ୱ ଯୁବସମାଜର । ଗାନ୍ଧିଜୀ ତେଣୁ ଯୁବସମାଜ ଉପରେ ପରମ ଆସ୍ଥା ରଖିଥିଲେ । କେତେକ ମତ ଦିଅନ୍ତି ଯେ ଆଇନ ଦ୍ୱାରା ଏହା ସମ୍ଭବ ହୋଇପାରିବ । ଆଇନ ବା ଦଣ୍ଡ କେବଳ ଦେହକୁ କଷ୍ଟ ଦେଇପାରେ ମାତ୍ର ହୃଦୟକୁ ପରିବର୍ତ୍ତନ କରି ନପାରେ । ଅସ୍ପୃଶ୍ୟତା ନିବାରଣ ଆଇନ ହୋଇ ମଧ୍ୟ କଣ ହୋଇଛି ? ହରିଜନ କଲ୍ୟାଣ ପାଣ୍ଠି ସୃଷ୍ଟି କରିବା, ସଂରକ୍ଷଣ ବ୍ୟବସ୍ଥା ରଖିବା ଇତ୍ୟାଦି ଦ୍ୱାରା ଏ ସମସ୍ୟାର ସମାଧାନ ହୋଇନପାରେ । ବରଂ ବିଭେଦର ପ୍ରାଚୀର ଦୃଢ଼ତର ହେଉଛି ବୋଲି ମୋର ବ୍ୟକ୍ତିଗତ ଧାରଣା । ଏଥିପାଇଁ ଲୋଡ଼ା ଆନ୍ତରିକ ପରିବର୍ତ୍ତନ ।

ଆଜି କେହି ରାଜନୀତିରୁ ମୁକ୍ତ ନୁହନ୍ତି । ଯୁବକମାନେ ମଧ୍ୟ ରାଜନୀତିରୁ ମୁକ୍ତ ନୁହନ୍ତି । ମାତ୍ର ରାଜନୀତି ସେମାନଙ୍କର ମୁଖ୍ୟ କଥା ନୁହେଁ । ରାଜନୀତିକ ମତବାଦକୁ ବିଶ୍ଳେଷଣ ନ କରି ସେଥିରେ ଝାମ୍ପ ଦେବା ଅନୁଚିତ । ପୁନଶ୍ଚ ଆଜିର ରାଜନୀତି ଗୁଣ୍ଡମାନଙ୍କୁ ନେଇ ପରିଚାଳିତ । ତେଣୁ ପ୍ରତ୍ୟେକ ରାଜନୀତିକ ଦଳର ଦୃଷ୍ଟି ସ୍କୁଲ କଲେଜ ଉପରେ ନିବଦ୍ଧ । ଯୁବକମାନେ ହେଉଛନ୍ତି ରାଜନୀତିକ ଦଳର ହାତବାରିସୀ । ଏହି ଭାବକୁ ତ୍ୟାଗ କରିବାକୁ ହେବ । କାରଣ ସମ୍ବନ୍ଧରେ ସଚେତନ ହୋଇ ଚିନ୍ତାଶୀଳ ଭାବରେ କାର୍ଯ୍ୟ କରିବାକୁ ହେବ । ଆଉ ଗୋଟିଏ କଥା ଯୁବସମାଜରେ ଲକ୍ଷ୍ୟ କରାଯାଉଛି । ସେମାନେ ଜଡ଼ବାଦୀ ସଂସ୍କୃତିକୁ

ଆପଣାଇ କରନେଉଛନ୍ତି । ଯାହା ସାମୟିକ ଆନନ୍ଦ ଦେଇପାରିବ ସେହିଭଳି ବିଷୟ-ବସ୍ତୁ ପ୍ରତି ସେମାନେ ଆକୃଷ୍ଟ ହେଉଛନ୍ତି । ଥରେ ଜଣେ ଯୁବବନ୍ଧୁ କଥା ପ୍ରସଙ୍ଗରେ କହିପକାଇଲେ ଯେ ଆପଣ ସିନେମା ଦେଖିବାକୁ ଭଲପାଆନ୍ତି ନାହିଁ; ତେଣୁ ଆପଣ ୧୮୭୨ ମସିହାର ଲୋକ । ଆଜିର ଯୁବକ ସିନେମାର ମାନଦଣ୍ଡରେ ଆଧୁନିକତାକୁ ବିଗ୍ଭର କରେ । ସ୍ୱକଚର୍ଯ୍ୟରେ ଆଧୁନିକତା ଫୁଟେ ନାହିଁ । ଲଙ୍ଗଳା ହୋଇ ବାଟରେ ବୁଲିଗଲେ ଆଧୁନିକତାର ବିକାଶ ହୁଏନାହିଁ । ସେଥିପାଇଁ ଲୋଡ଼ା ହୃଦୟର ବିକାଶ । ସୌନ୍ଦର୍ଯ୍ୟ, ସଂସ୍କୃତି ଓ ପରମ୍ପରା ପ୍ରତି ଧ୍ୟାନ ଦେବାକୁ ହେବ । ଭଲକୁ ଗ୍ରହଣ କରି ମନ୍ଦକୁ ତ୍ୟାଗ କରିବାକୁ ହେବ । ଆମ ସଂସ୍କୃତି ଖରାପ, ଆମ ସୌନ୍ଦର୍ଯ୍ୟ ଆବର୍ଜନାମୟ—କହିଲେ ଆମେ ସଂସ୍କୃତ ଏବଂ ମାର୍ଜିତ ହେବା ନାହିଁ । ବେଦ-ବେଦାନ୍ତ ଗୀତା ପୋଡ଼ିଦେଲେ, ବା ବିବେକାନନ୍ଦ, ଅରବିନ୍ଦ, ଗାନ୍ଧୀ ମୂର୍ତ୍ତିକୁ ଭାଙ୍ଗି ଫୋପାଡ଼ି ଦେଲେ ଏ ସମାଜର ପରିବର୍ତ୍ତନ ହେବ ନାହିଁ । ଅବଶ୍ୟ ଏହା ଗୋଟିଏ ଦିଗ । ଗାନ୍ଧି, ବିବେକାନନ୍ଦ, ଗୋପବନ୍ଧୁ ମୂର୍ତ୍ତିକୁ ଛକ ଜାଗାରେ ଠିଆ କରାଇ ଦେଇ, କୋର୍ଟ କଚେରି ଅଫିସରେ ସେମାନଙ୍କ ଫଟୋକୁ କାନ୍ଥରେ ଝୁଲାଇ ଦେଇ ସେହିମାନଙ୍କ ନାମରେ ଆମେ ଚୋରି, ନାରି, ଦାଉ କାମ କରୁଛୁ । ସେମାନଙ୍କୁ ଅପମାନିତ କରୁଛୁ । ଏହାବୋଲି ସେମାନଙ୍କର ପ୍ରତିକୃତିକୁ ଭାଙ୍ଗିଦେଲେ ଏ ସମସ୍ୟାର ସମାଧାନ ହୋଇଯିବ; ଏହା ଭାବିବା ଅନୁଚିତ ।

ବର୍ତ୍ତମାନର ଏହି କ୍ଷୟରୋଗଗ୍ରସ୍ତ ସମାଜକୁ ପରିବର୍ତ୍ତନ କରିବା ପାଇଁ ଯୁବସମାଜର ପ୍ରଧାନ ଭୂମିକା ରହିଛି । ଶ୍ରେଣୀ ବୈଷମ୍ୟ ଦୂର କରିବାକୁ ହେବ । ଏହି ବୈଷମ୍ୟ ହିଁ ସାମାଜିକ ପ୍ରଗତି ପାଇଁ ଅନ୍ତରାୟ ହୋଇଛି । ଈଶ୍ୱରଙ୍କ ସୃଷ୍ଟିରେ ସମସ୍ତେ ସମାନ । ଅଥଚ ଜଣେ ଆନନ୍ଦରେ କାଳ କାଟୁଛି । ଦିନ ଦ୍ୱିପ୍ରହରରେ ଧୂଳି ଦେଇ ଚତା କାଟି ବଡ଼ଲୋକ ହେଉଛି । ଜଣେ ଦୁଃଖରେ ସମୟ କାଟୁଛି । ଏହି ବୈଷମ୍ୟକୁ ଦୂର କରିବାକୁ ହେବ । ଗଣତାନ୍ତ୍ରିକ ସମାଜବାଦ ପ୍ରତିଷ୍ଠା ଦିଗରେ ଯୁବସମାଜ ନେତୃତ୍ୱ ନେବା ଉଚିତ । ଯୁବସମାଜରୁ ଯଥେଚ୍ଛାଚାର ମନୋଭାବକୁ ଦୂର କରିବାକୁ ହେବ । ସଙ୍କୀର୍ଣ୍ଣ ମନୋଭାବକୁ ଜଳାଞ୍ଜଳି ଦେବାକୁ ହେବ । ହୃଦୟରେ ସମ୍ମାନବୋଧ ଭାବ ଜାଗ୍ରତ ହେବା ଉଚିତ । ତାହେଲେ ସାମାଜିକ ପରିବର୍ତ୍ତନ କରିବା ଦିଗରେ ସେମାନେ ସାହାଯ୍ୟ କରିପାରିବେ ।



# ଆଜିର ବିଭ୍ରାନ୍ତି

ଆଜିର ବିଭ୍ରାନ୍ତି ସମାଜର ପ୍ରତ୍ୟେକ ସ୍ତରରେ । ପ୍ରାଚୁର୍ଯ୍ୟ ମଧ୍ୟରେ ଏଇ ବିଭ୍ରାନ୍ତି, ଅଭାବ ଅନଟନ ମଧ୍ୟରେ ଏଇ ବିଭ୍ରାନ୍ତି । ବିଭ୍ରାନ୍ତି ମଣିଷର ପ୍ରଗତିରେ, ମଣିଷର ନୂତନ ଜ୍ଞାନର ଆହରଣରେ, ନୂତନ ଚିନ୍ତା ଓ ଚେତନାରେ । ବିଭ୍ରାନ୍ତି ପୁଣି ଘରେ, ବାହାରେ । ମନ୍ଦିର, ମସ୍‌ଜିଦ୍, ଗୀର୍ଜା—ସର୍ବତ୍ର ଆଜି ବିଭ୍ରାନ୍ତିର ବିକ୍ଷୁବ୍ଧ ସ୍ୱର । ପାରମ୍ପରିକ ବିଶ୍ୱାସ, ଚଳଣି ଓ ମୂଲ୍ୟବୋଧରେ ସେଇ ବିଭ୍ରାନ୍ତି । ବିଭ୍ରାନ୍ତି ପୁଣି ବେଦ, ବେଦାନ୍ତ, ଉପନିଷଦ, ପୁରାଣ, କୋରାନ, ବାଇବେଲ, ଜେନ୍ଦାବେସ୍ତା—ସବୁଠି । ସର୍ବତ୍ର ଯେପରି ବିଭ୍ରାନ୍ତିର ମହା କୋଳାହଳ । ଯଜ୍ଞ, ବ୍ରତ, ପୂଜା, ଉପାସନା, ନମାଜ୍, ରବିବାର ଗୀର୍ଜାପାଠ ସବୁଠି ବିଭ୍ରାନ୍ତିର ସ୍ୱର । ଏହି ବିଭ୍ରାନ୍ତି ପୁଣି ଆମର ଉତ୍ସବରେ, ଆଚାର ବ୍ୟବହାରରେ, ଧାର୍ମିକ ରୀତିନୀତିରେ, ଆହରଣ ଓ ନବୀକରଣରେ । ବିଭ୍ରାନ୍ତି ପୁଣି ରାଜନୀତିରେ, ସମାଜନୀତିରେ । ମଣିଷର ମନରେ ପୁଣି ବିଭ୍ରାନ୍ତି । ତେଣୁ ସେ ଆଜି ଅଶାନ୍ତ, ଅତୃପ୍ତ—ବେଗବାନ । ସେ ଚଳମାନ । ସେ ଏହିହେତୁ ନିଃସଙ୍ଗ—ଏକାକୀ—ଅସହାୟ । ଏହିହେତୁ ସେ ଉଦାସୀନ । ସେ ଉଦାସୀନ ନିଜପ୍ରତି—ପରିବାର ପ୍ରତି—ସମାଜ ପ୍ରତି । ସବୁ ଥାଇ ବି ସତେ ଯେପରି ସେ ଅନୁଭବ କରେ ବିରାଟ ଅଭାବବୋଧ, ବିରାଟ ଶୂନ୍ୟତାବୋଧ । ଏଇଥିପାଇଁ ସେ କହେ "ସଂସାରେ ଥାଇ ମୁଁ ସଦା ଉଦାସୀନ" । ଏଇଥିପାଇଁ ଆଜିର ମଣିଷ କହେ "I will show you fear in a handfull of dust."

**ବିଭ୍ରାନ୍ତି କାହିଁକି :**

ମଣିଷ ଆଜି ବିଶ୍ୱବିଜୟୀ । ମହାଶୂନ୍ୟର ଅନନ୍ତ ବକ୍ଷରେ ସେ ଆଜି ବିଚରଣ କରିପାରେ । ଚନ୍ଦ୍ରପୃଷ୍ଠରେ ଅବତରଣ କରି ସେ ପୁଣି ଫେରିଆସିଛି ଚନ୍ଦ୍ରଶିଳା ନେଇ । ସେ ପୁଣି ବଜ୍ରଗମ୍ଭୀର ବାଣୀରେ ଉଦ୍‌ଘୋଷଣ କରିଛି, ଚନ୍ଦ୍ରପୃଷ୍ଠରେ ତାର ଗୋଟିଏ ପଦକ୍ଷେପ ହିଁ ସମସ୍ତ ମାନବ ଜାତିର ପ୍ରଗତିର ସ୍ୱାକ୍ଷର । ସେ ଅସାଧ୍ୟ ସାଧନ କରିପାରେ । ତଥାପି ବିଭ୍ରାନ୍ତି କାହିଁକି ? କାହିଁକି ସେ ଆଜି ବିଭ୍ରମର ମାୟାଜାଲରେ ଛନ୍ଦିତ ? ପ୍ରାଚୁର୍ଯ୍ୟ ମଧ୍ୟରେ ସେ କାହିଁକି ଅନୁଭବ କରୁଛି ଶୂନ୍ୟତାବୋଧ ? ସବୁ 'ଅଛି' ମଧ୍ୟରେ କିଛି 'ନାହିଁ'ର ଭାବ ତାକୁ ଯେପରି ବିବ୍ରତ

କରୁଛି । କ୍ଷଣିକ ଉଲ୍ଲାସରେ ମଣିଷ ବିମୋହିତ ହୋଇ, କ୍ଷଣିକ ବିଜୟରେ ଉନ୍ମାଦିତ ହୋଇ ଚିରନ୍ତନକୁ ସେ ଭୁଲି ଯାଉଛି, ଶାଶ୍ୱତକୁ ସେ ଅବହେଳା କରୁଛି । ଦେହାତୀତକୁ ଭୁଲି ଦେହର ଉପାସନା କରୁଛି, ଅସୀମକୁ ଛାଡ଼ି ସସୀମର ଆରାଧନା କରୁଛି, ସୂକ୍ଷ୍ମକୁ ଛାଡ଼ି ସ୍ଥୂଳର ଜୟଗାନ କରୁଛି, ଅପାର୍ଥିବକୁ ଭୁଲି ପାର୍ଥିବର ସ୍ତୁତି କରୁଛି । ଏଇଥିପାଇଁ ସେ ଅନୁଭବ କରେ ଅଭାବ ଓ ତଜ୍ଜନିତ ନୈରାଶ୍ୟ, ଗ୍ଲାନି, ବ୍ୟଥା ଓ ବେଦନା । ଅସାର ତା' ନିକଟରେ ସାର ହୋଇ ଦେଖାଦିଏ । ତେଣୁ ତାର ବିଭ୍ରାନ୍ତି । ତେଣୁ ସେ କହେ "କାହିଁ ଶାନ୍ତି କାହିଁ ନିତ୍ୟସୁଖ, ଯାହା ପାଇବାର ଲାଗି ଅବିରତ ଅଛି ଜାଗି, ଚିତ୍ତଗୃହେ ଆଶାଦୀପ ଉଜ୍ଜ୍ୱଳ ମୟୁଖ ।" ଏଇଥିପାଇଁ ସେ ଖୋଜେ ଶାନ୍ତି । ଶାଶ୍ୱତର ପଥ । ପଥଭ୍ରଷ୍ଟ ହେଲେ ଆସେ ଭ୍ରାନ୍ତି, ନୈରାଶ୍ୟ, ଶୋଚନୀୟତା ଓ ବିଫଳତା । ତେଣୁ ସେ ସଂସାରବିରାଗୀ ହୁଏ । ସେ କହେ ଶଙ୍କରାଚାର୍ଯ୍ୟଙ୍କ ଭଳି, "କଃ ତବ କାନ୍ତା କସ୍ତେ ପୁତ୍ର ସଂସାରୟମତୀବ ବିଚିତ୍ରଃ" । ସେ ଦେଖେ ଜୀବନ କ୍ଷଣଭଙ୍ଗୁର, ଯୌବନ ଅଳୀକ । ତେଣୁ ସେ ହୁଏ ବୈରାଗୀ । ତାର ଦେଖାଦିଏ ବୈଷ୍ଣବ ସୁଲଭ ଦୈନ୍ୟ । ଏ ଦୈନ୍ୟ ସାଂସାରିକ ଅପ୍ରାପ୍ତିରୁ , ପାର୍ଥିବ ବିଭ୍ରାନ୍ତିରୁ ।

## ବିଭ୍ରାନ୍ତି କେଉଁଠି :

ଭୌତିକ ବିକାଶ ଓ ଆକାଂକ୍ଷା ଯେତିକି ବଢ଼ିଛି, ସେତିକି ବଢ଼ିଛି ମଣିଷର ବିଭ୍ରାନ୍ତି । ଏ ବିଭ୍ରାନ୍ତି କେବଳ ବ୍ୟକ୍ତିଗତ ନୁହେଁ । ଏହା ପୁଣି ସାମାଜିକ, ସାଂସ୍କୃତିକ, ରାଜନୈତିକ ଓ ଗୋଷ୍ଠୀଗତ । ପ୍ରାପ୍ତି, ଅପ୍ରାପ୍ତି ମଧ୍ୟଦେଇ ବ୍ୟକ୍ତିର ସୃଷ୍ଟି ହୁଏ ବିଭ୍ରାନ୍ତି । କ୍ଷମତାର ମୋହ, କ୍ଷମତାର ଅପପ୍ରୟୋଗ, ଅହଂକାରର ପ୍ରତିଷ୍ଠା ପାଇଁ ପୁଣି ବ୍ୟକ୍ତିର ଦେଖାଦିଏ ବିଭ୍ରାନ୍ତି । କେବଳ ଆଜିର ନୁହେଁ—ଏହା ସବୁ ଦିନର । ବ୍ୟକ୍ତି ଚାହେଁ ଅନ୍ୟ ଉପରେ କର୍ତ୍ତୃତ୍ୱ ବିସ୍ତାର କରିବା ପାଇଁ—ଏଇଥିପାଇଁ ବିଭ୍ରାନ୍ତି । ଏ ବିଭ୍ରାନ୍ତି ବ୍ୟକ୍ତିର ମନରେ । ସାମାଜିକ ସ୍ତରରେ ମଧ୍ୟ ଦେଖାଦିଏ ବିଭ୍ରାନ୍ତି । ବହୁ ବ୍ୟକ୍ତିଙ୍କର ବିକୃତ ମାନସର ପରିଣତି ସ୍ୱରୂପ ସାମାଜିକ ବିଭ୍ରାନ୍ତି ସୃଷ୍ଟି ହୁଏ । ଠିକ୍ ଏହିଭଳି ସାଂସ୍କୃତିକ ସଙ୍କଟ ହେତୁ ସାଂସ୍କୃତିକ ବିଭ୍ରାନ୍ତି । ରାଜନୀତିରେ କ୍ଷମତାର ସଂଘର୍ଷ ଓ ଦଳୀୟ ହଠଚମକ ହେତୁ ରାଜନୈତିକ ବିଭ୍ରାନ୍ତି । ଏହିଭଳି ବିଭ୍ରାନ୍ତି ବିଭିନ୍ନ ଅନୁଷ୍ଠାନରେ, ଗୋଷ୍ଠୀ ଓ ସମ୍ପ୍ରଦାୟ ମଧ୍ୟରେ । ଅତଏବ ଆଜିର ବିଭ୍ରାନ୍ତି ସର୍ବଜନୀନ—ସମସ୍ତେ ବିଭ୍ରାନ୍ତ—ସମସ୍ତେ ଉଦ୍‌ଭ୍ରାନ୍ତ । ପୁଞ୍ଜିବାଦୀ ରାଷ୍ଟ୍ରରେ ପୁଞ୍ଜିର ଏକଚାଟିଆ ବ୍ୟବସାୟ ପାଇଁ, ମୁଷ୍ଟିମେୟ ବୁର୍ଜ୍ୱା ଗୋଷ୍ଠୀର କ୍ଷମତା ଓ ବିଳାସର ଅଭିବୃଦ୍ଧି ପାଇଁ ଯେଉଁ ଚେଷ୍ଟା, ସେଇଥିରୁ ଦେଖାଦେଇଛି ସେହି ରାଷ୍ଟ୍ରରେ ରାଜନୈତିକ ବିଭ୍ରାନ୍ତି । ସାମ୍ୟବାଦୀ ରାଷ୍ଟ୍ରରେ ପୁଣି ବିଭ୍ରାନ୍ତି ଏକଦଳୀୟ

ଶାସନ ହେତୁ । ଗଣତନ୍ତ୍ର ରାଷ୍ଟ୍ରରେ ବିଭ୍ରାନ୍ତି ପୁଣି ବହୁମୁଖୀ—ଗଣଗତ, ବ୍ୟକ୍ତିଗତ—ସାମ୍ୟବାଦ ଓ ପୁଞ୍ଜିବାଦର ମଧ୍ୟବର୍ତ୍ତୀ ଏକ କରୁଣ ପ୍ରଚେଷ୍ଟାଜନିତ । ଏଠି ବ୍ୟକ୍ତିର କ୍ଷମତା ପାଇଁ ମୋହ—ବିଳାସପାଇଁ ବାସନା—ବ୍ୟକ୍ତିତ୍ୱର ଉପାସନା ପାଇଁ କାମନା । ଏହିହେତୁ ବିଭ୍ରାନ୍ତି । ପ୍ରତିଶ୍ରୁତି ଓ କାର୍ଯ୍ୟ ମଧ୍ୟରେ ପ୍ରକ୍ରିୟାର ପାର୍ଥକ୍ୟ ହିଁ ବିଭ୍ରାନ୍ତିର କାରଣ । ତେଣୁ ବିଭ୍ରାନ୍ତି ଆଜି ସାମାଜିକ ଦୁଃସ୍ଥିତିରେ, ରାଜନୈତିକ ହଟଚମଟରେ, ପ୍ରଚଳିତ ମୂଲ୍ୟବୋଧରେ, ମାନସିକ ବିକୃତିରେ ଓ ସାଂସ୍କୃତିକ ସଙ୍କଟରେ ।

## ସାଂସ୍କୃତିକ ସଙ୍କଟରେ ବିଭ୍ରାନ୍ତି :

ସମସ୍ତ ଗତିଶୀଳତା ସଙ୍ଗେ ସଙ୍ଗେ ମଣିଷର ଜୀବନ ହୋଇଛି ଜଟିଳ, ଜଞ୍ଜାଳ ଓ ଜ୍ୱାଳାମୟ । ବିଜ୍ଞାନର ଅଭିନବ ପ୍ରଗତି ହୋଇଛି ସତ, ମାତ୍ର ମଣିଷର ଜୀବନ ହୋଇଛି ଅଧିକ ସଂଘର୍ଷ ଓ ସଂଘାତମୟ । ଏ ସଂଘର୍ଷ ଏ ଦ୍ୱନ୍ଦ୍ୱ ତାର ମାନସିକ, ବୌଦ୍ଧିକ । ମଣିଷର ବୁଦ୍ଧିର ଦୌଡ଼ କ୍ଷିପ୍ରତର ହୋଇଛି । ସେ ପହଞ୍ଚି-ପାରିଛି ଚନ୍ଦ୍ର ଗ୍ରହରେ । ମନ ସମ୍ପ୍ରସାରିତ, ବୁଦ୍ଧି କ୍ଷିପ୍ରତର ମାତ୍ର ହୃଦୟ ତାର ସଙ୍କୁଚିତ । ଏପରି କି ହୃଦୟ କ୍ରମେ ନିଷ୍ପେଷିତ । ଏହି ହେତୁ ବିଭ୍ରାନ୍ତି ମଣିଷର ଚିନ୍ତା ଓ ଚେତନାରେ, ସାଂସ୍କୃତିକ ମୂଲ୍ୟବୋଧ ଓ ସାମାଜିକ ଅବବୋଧ ମଧ୍ୟରେ । ଏ ବିଭ୍ରାନ୍ତି ପୁଣି ସୂକ୍ଷ୍ମ ଓ ସ୍ଥୂଳ ମଧ୍ୟରେ, ଜଡ଼ ଓ ଚେତନା ମଧ୍ୟରେ, ବାସ୍ତବ ଓ ସତ୍ତା ମଧ୍ୟରେ । ଧର୍ମକୁ ଯେବେ ଗ୍ରହଣ କରାଯାଉଥିଲା ବସ୍ତୁ ଓ ସତ୍ତା ଭାବରେ, ଜଡ଼ର ଆତ୍ମିକ ମୂଲ୍ୟବୋଧ ଭାବରେ, ମଣିଷ ସମାଜର ନିୟନ୍ତ୍ରଣକାରୀ ଶକ୍ତି ଭାବରେ, ମାତ୍ର ଏବେ ଧର୍ମ ହେଲା ଅଫିମର ନିଶା, ମଦର ନିଶା । ମାର୍କସ ଏଇ କଥା କହିଲେ । ଧର୍ମର ମୂଳତତ୍ତ୍ୱ ଭୁଲିଯାଇ ତାକୁ ଅଯଥା ଦ୍ୱନ୍ଦ୍ୱାକ୍ରାନ୍ତ କରାଗଲା । ଧର୍ମର ସତ୍ତାକୁ ଭୁଲି ତାକୁ ବିଭିନ୍ନ ଲୋକାଚାର ଓ ଧାର୍ମିକ ପ୍ରକ୍ରିୟା (rituals) ମଧ୍ୟରେ ଆବଦ୍ଧ କରାଗଲା । ତେଣୁ ଧର୍ମ ହେଲା ବିଭ୍ରାନ୍ତ । ଏଇଥିପାଇଁ ନିଜକୁ ଜଣେ ଖାଣ୍ଟି ହିନ୍ଦୁ ବା ମୁସଲମାନ ପରିଚୟ ଦେବାରେ ଭୟ ଓ ଭ୍ରାନ୍ତି । ଏହି ଯେଉଁ ଭୟ ତାହାହିଁ ସମସ୍ତ ବିଭ୍ରାନ୍ତିର ମୂଳ କାରଣ । ଏ ଭୟ ବ୍ୟକ୍ତିଜୀବନରେ, ସାମାଜିକ ଜୀବନରେ । ତେଣୁ ଆମର ପରମ୍ପରା ଦ୍ୱନ୍ଦ୍ୱାକ୍ରାନ୍ତ ଓ ସଙ୍କଟମୟ । ଆମେ ଭୁଲିଛୁ ଆମର ଐତିହ୍ୟ—ଆମର ପରମ୍ପରା, ଆମର ସଂସ୍କୃତି, ବେଦ ବେଦାନ୍ତର ଅମିୟ ମଧୁର ମନ୍ତ୍ରବାଣୀ—ଆରଣ୍ୟକ ସଭ୍ୟତାର "ସର୍ବେ ଭବନ୍ତୁ ସୁଖିନଃ ସର୍ବେସନ୍ତୁ ନିରାମୟାଃ ସର୍ବେ ଭଦ୍ରାଣି ପଶ୍ୟନ୍ତୁ, ମା କଶ୍ଚିତ ଦୁଃଖ ଭାଗ ଭବେତ୍" । ଆମେ ଭୁଲିଛୁ "ତମସୋ ମାଂ ଜ୍ୟୋତିର୍ଗମୟଃ, ଅସତୋ ମାଂ ସତ୍ ଗମୟଃ, ମୃତ୍ୟୁର୍ମାଂ ଅମୃତଂ ଗମୟ ।" ଏବେ ଆମେ ତମସାଚ୍ଛନ୍ନ । ଅଳୀକ କ୍ଷଣ ଭଙ୍ଗୁର ଅସତ୍ ପଦାର୍ଥର ଲାଳସୀ । ଆମେ

ଏବେ ଘୃଣା କରୁଛୁ ଆମର ସାଂସ୍କୃତିକ ଚିନ୍ତାଧାରାକୁ । ଆମେ ଆମର ଦୃଷ୍ଟି ନିବଦ୍ଧ କରିଛୁ ପଶ୍ଚିମ ଉପରେ, ସେମାନଙ୍କର ଭୌତିକ ଅଭିବୃଦ୍ଧିରେ । ପାଶ୍ଚାତ୍ୟ ଦର୍ଶନ ବିଶ୍ୱାସ କରେ ଜଡ଼ବାଦରେ, ଦେହ ବାଦରେ, ଭୌତିକ ବିକାଶରେ । ମାତ୍ର ଆମର ଦର୍ଶନ ବିଶ୍ୱାସ କରେ ଆତ୍ମାରେ, ସୂକ୍ଷ୍ମରେ, ଆଧ୍ୟାତ୍ମିକତାରେ । ଏଇଥିପାଇଁ ତ ଉତ୍କଳର ସର୍ବପଲ୍ଲୀ ରାଧାକୃଷ୍ଣନ୍ କହିଛନ୍ତି, "Man is not body and mind but he is the spirit" । ଏହାସତ୍ତ୍ୱେ ଆମେ ପାଶ୍ଚାତ୍ୟ ସଂସ୍କୃତିକୁ ଗ୍ରହଣ କରୁଛୁ । ସେମାନଙ୍କର ଚିନ୍ତା, ଚେତନାକୁ ଅନୁକରଣ କରୁଛୁ । ଏଥିପାଇଁ ଆମର ସାଂସ୍କୃତିକ ସଙ୍କଟ । ଆମେ ଆମର ପୌରୁଷର ସାର୍ଥକତା କଳ୍ପନା କରୁଛୁ ନିଜକୁ ପାଶ୍ଚାତ୍ୟାନୁକରଣ ସର୍ବସ୍ୱ ମନେକରି । ଏଇଥିପାଇଁ ହିପି ଓ ଇପି ଦର୍ଶନକୁ ଆମେ ସ୍ୱାଗତ ଜଣାଉଛୁ । ସ୍ୱାଧୀନ ଯୌନ ଲାଳସାର ଚରିତାର୍ଥତା ପାଇଁ ଏହା ଏକ ବିକୃତ ଓ ସହଜ ପନ୍ଥା । ଏହାଦ୍ୱାରା ସାମାଜିକ ବିଭ୍ରାନ୍ତି ଦୂର ହୋଇ ନ ପାରେ । ବରଂ ବିଭ୍ରାନ୍ତି ଉତ୍କଟ ଆକାର ଧାରଣ କରିବ । ସାମାଜିକ ଶୃଙ୍ଖଳା ଲୋପ ପାଇବ । କିନ୍ତୁ ଏଇ ଜାତିଆ ମନଇଚ୍ଛା ସଂସ୍କୃତି ଆମକୁ ଆକର୍ଷଣ କରିଛି । ଏବେ କେଇଦିନ ତଳେ କାଶୀରେ ହିପି ତରୁଣ ତରୁଣୀମାନେ ଉନ୍ମୁକ୍ତ ଦିବାଲୋକରେ ସର୍ବସମକ୍ଷରେ ଯେଉଁଭଳି ଭାବରେ ଉଲଗ୍ନ ହୋଇ ଯୌନ ସ୍ୱାଭାବିକତା ସୃଷ୍ଟି କରିଥିଲେ ଏବଂ ଜଣେ ସାମ୍ବାଦିକକୁ ଯେପରି ହଇରାଣ କରିଥିଲେ ତାହା ସାମାଜିକ ବିଭ୍ରାନ୍ତିର ଏକ କାରଣ । ଏ ବିଭ୍ରାନ୍ତିକୁ ପୁଣି ଆମେ ପ୍ରଶ୍ରୟ ଦେଉଛୁ । ସାମ୍ବିଧାନିକ ସ୍ୱୀକୃତି ଦେଉଛୁ । ଆଇନଗତ ଅଧିକାର ଦେଉଛୁ । ଏମାନେ କଣ ସମାଜକୁ ବଦଳାଇବେ ? ଏମାନେ କଣ ପୁଣି ଥରେ ଫେରିଯିବେ ସେଇ ଆଦିମ ସଭ୍ୟତାକୁ ?

ପୁଣି ଆଉ ଗୋଟାଏ ବିଭ୍ରାନ୍ତି ଆମ ଦେଶରେ ଦେଖା ଦେଇଛି । ସେ ବିଭ୍ରାନ୍ତି ହେଉଛି ପାରମ୍ପରିକ ସଂସ୍କୃତିକୁ ଲୋପ କରି ଏକ ନୂଆ ବୈପ୍ଳବିକ ସଂସ୍କୃତି ଗଠନ କରିବା । ଏହି ହେତୁ ଏ ଦେଶର ମନ୍ଦିର, ମୂର୍ତ୍ତି ଏବଂ ପ୍ରତିଷ୍ଠାପ୍ରାପ୍ତ ବ୍ୟକ୍ତି-ମାନଙ୍କର ମୂର୍ତ୍ତି ଭଙ୍ଗା ଚାଲିଛି । ଏହାଦ୍ୱାରା ସାମାଜିକ ପରିବର୍ତ୍ତନ ହୋଇଯିବ ବୋଲି କେତେକଙ୍କର ମତ । ଏହା ପୁଣି କିପରି ସମ୍ଭବ ? ଭଙ୍ଗାରୁଜା, ପୋଡ଼ାଜଳା, ହତ୍ୟା ଦ୍ୱାରା କଣ ଏ ସମ୍ଭବ ? ଏ ପୁଣି ଅନ୍ୟ ଏକ ବିଭ୍ରାନ୍ତି । ଏ ବିଭ୍ରାନ୍ତି ପୁଣି ଭିନ୍ନ ରକମର । ନିଜକୁ ପ୍ରତିଷ୍ଠା କରିବା ପାଇଁ ଏ ବିଭ୍ରାନ୍ତି ।

ଆମର ସାମାଜିକ ଜୀବନରେ ଆଜି ପୁଣି ବିଭ୍ରାନ୍ତି । ସାମାଜିକ ଜୀବନ ଆମର ଅସହାୟ, ସ୍ୱାର୍ଥ ପ୍ରଣୋଦିତ । ଅନ୍ତରର ସ୍ନେହ ମମତା ଶ୍ରଦ୍ଧା ନାହିଁ । ପାରମ୍ପରିକ ମୂଲ୍ୟବୋଧ ନାହିଁ । ଏ ସାମାଜିକ ଜୀବନ ପୁଣି ଦ୍ୱିଧା ବିଭକ୍ତ—ପଲ୍ଲୀର ସାମାଜିକ ଜୀବନ ଓ ନାଗରିକ ସାମାଜିକ ଜୀବନ । ନାଗରିକ

ଜୀବନ କରୁଣ ଅସହାୟ । କେହି କାହାକୁ ଜାଣେ ନାହିଁ । ସମସ୍ତେ ଚାଲିଛନ୍ତି ଆଗକୁ, ଆହୁରି ଆଗକୁ । ଏ ନାଗରିକ ଜୀବନ ପୁଣି ବହୁ ବିକୃତିରେ ପରିପୂର୍ଣ୍ଣ । ଇଲିଅଟ ତାଙ୍କର Waste land, Hallow man ଆଦି ଗ୍ରନ୍ଥରେ ଆଧୁନିକ ଅନ୍ତଃସାର-ଶୂନ୍ୟ, ନିଃସଙ୍ଗ ମଣିଷର ଭାବକୁ ପ୍ରକାଶ କରି ଅଛନ୍ତି । ସେ ପୁଣି ଦେଖାଇ ଦେଇଛନ୍ତି, ଯୌନ ବିକ୍ଷୁବ୍ଧ ଆଧୁନିକ ମଣିଷର ନଗ୍ନ ଚିତ୍ର । ଓଡ଼ିଆ ସାହିତ୍ୟରେ ଗୁରୁ ପ୍ରସାଦ ମହାନ୍ତି "କାଳ ପୁରୁଷ" ଗ୍ରନ୍ଥରେ ଏହି ଭାବକୁ ଦେଖାଇଛନ୍ତି । ସାମ୍ପ୍ରତିକ କାଳରେ ବହୁ କବି, ନାଟ୍ୟକାର, ସାହିତ୍ୟିକ ସାମ୍ପ୍ରତିକ ମଣିଷର ବିଭ୍ରାନ୍ତିକୁ ଯଥାର୍ଥ ଭାବରେ ଦେଖାଇ ଦେଇଛନ୍ତି । ସାମ୍ପ୍ରତିକ ସମାଜରେ ପ୍ରେମ ହେଉଛି ପଣ୍ୟ, ମାନବିକତା ହେଉଛି ଭଣ୍ଡାମି, ଧର୍ମ ହେଉଛି କପଟତା । ଏ କଥାକୁ ପ୍ରତ୍ୟେକ ସାହିତ୍ୟିକ ଦେଖାଉଛି ତାର ସାହିତ୍ୟରେ । ଆଧୁନିକ ଓଡ଼ିଆ କବିତାରେ ଗୁରୁପ୍ରସାଦ ମହାନ୍ତି, ସଚ୍ଚିଦାନନ୍ଦ ରାଉତରାୟ, ଅନନ୍ତ ପଟ୍ଟନାୟକ, ଭାନୁଜୀ ରାଓ, ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର, କମଳାକାନ୍ତ ଲେଙ୍କା, ପ୍ରସନ୍ନ କୁମାର ମିଶ୍ର, ରବୀନ୍ଦ୍ରନାଥ ସିଂହ, ବ୍ରଜନାଥ ରଥ, ହରି ପ୍ରସାଦ ଦାସ, ବିବେକାନନ୍ଦ ଜେନା, ବେଣୁଧର ରାଉତ, ସୌଭାଗ୍ୟ କୁମାର ମିଶ୍ର, ନୃସିଂହ କୁମାର ରଥ, ଦୀପକ କୁମାର ମିଶ୍ର, ହରିହର ମିଶ୍ର, ପ୍ରତିଭା ଶତପଥୀ, ପ୍ରମୁଖ କବିମାନେ ସାଂପ୍ରତିକ ମଣିଷର ମାନସିକ ବିଭ୍ରାନ୍ତିକୁ ବିଭିନ୍ନ ଭାବରେ ଦେଖାଉ ଅଛନ୍ତି । ଏହି ଅନ୍ତଃସାର ଶୂନ୍ୟ ମଣିଷର ଚିତ୍ର ଦେବାକୁ ଯାଇ କବି ସୀତାକାନ୍ତ ମହାପାତ୍ର ଲେଖିଛନ୍ତି—

"ସବୁ ଯାଏ ଜଳିପୋଡ଼ି ମନ ଓ ଇନ୍ଦ୍ରିୟ
ଜଳିଯାଏ ଅନୁଭୂତି, ସକଳ ଭାବନା
ସବୁ ସମ୍ଭାବନା ଆହା
ସବୁ ସ୍ୱପ୍ନ, ସବୁ ଆଶ୍ୱାସନା,
ଦାଉ ଦାଉ ଧପ ଧପ ଆକାଶକୁ କୁଦାମାରେ ନିଆଁ
ଲହ ଲହ ରକ୍ତ ଜିହ୍ୱା, ଆକାଶ ପୃଥିବୀ ଭିତର
ସ୍ଫୁଲିଙ୍ଗ ଓ ଧୂଆଁ ।"

ଏ ସମାଜରେ ଭୟ ପରିପୂର୍ଣ୍ଣ । ମଣିଷର ଜୀବନ ଯନ୍ତ୍ରଣା ଜର୍ଜରିତ । ମଣିଷ ଏଠି ଅସହାୟ । ମଣିଷ ନିଃସଙ୍ଗ । ତେଣୁ ସେ ଯଥାର୍ଥରେ ଲେଖିଛନ୍ତି—

"ମୁଁ ଦେଖୁଛି ସ୍ୱପ୍ନ ଖାଲି ରାତି ପରେ ରାତି
ସାତ ରାତି ଭୟଙ୍କର ସ୍ୱପ୍ନ

ପ୍ରେତାତ୍ମାର ଶୋଷଣାଗାର ଏ ଅଶିବ୍ର କାଳ ଦେଇ
ପୁଣି ମୁଁ ଅଟୁଛି ଉଦ୍‌ଭ୍ରାନ୍ତ, ଜୋକୁଆ ଭୟରେ ।
ଉନ୍ନୟନର ସ୍ୱପ୍ନସବୁ, ମୋ ହୃଦୟର ମୂଳଦୁଆ ଥରେ
ଭୁଶୁଡ଼ି ପଡ଼ିବ ଲାଗେ ଥର ଥର କେଉଁ ମୁହୂର୍ତ୍ତରେ ।"

ଅନ୍ତର ମଣିଷ ଜୋକୁଆ ଭୟରେ ପୀଡ଼ିତ । କେତେବେଳେ କେଉଁ ମୁହୂର୍ତ୍ତରେ ସେ ମ୍ଳାନ ହୋଇଯିବ ସେ କଥା ସେ କଳ୍ପନା କରିପାରେ ନାହିଁ । ଏ ସମୟ, ଏ ସମାଜ ଭୟ ଓ ପାପରେ ପରିପୂର୍ଣ୍ଣ । ଏ ସହରର ଆଜି ବିବର୍ଣ୍ଣ, ଗନ୍ଧହୀନ । ତେଣୁ କବି ଗୁରୁ ପ୍ରସାଦ ମହାନ୍ତିଙ୍କ ଭାଷାରେ—

"ଭୟ ଆଉ ପାପ ମିଶି ଏ ସମୟ ଅନ୍ଧକାର୍ତ୍ତା……
ଜୀବନର ଭଗ୍ନାଂଶ
ତେଣୁ ଏହି ସହରର ଗଳିରେ
ଛିନ୍ନ ପ୍ରାଣହୀନ ଦେହ ଓ କାମନା
ତେଣୁ ଏହି ସହରର ବିବର୍ଣ୍ଣ ଦେହରେ
ଶୀତ ଖଦଡ଼ ଓ ଉଲ୍‌ର ପୋଷାକ
ଭିତରେ ହଠାତ୍ ଆସି
ଛିଡ଼ାହୁଏ ସାମ୍ନାରେ
ଅଭିଶପ୍ତ ମଣିଷର ପାପ
ଆଉ ଭୟର ପ୍ରେତାତ୍ମା ।"

(ହରେକୃଷ୍ଣ ଦାସ (ଦୁଇ))

କବି ଗୁରୁ ପ୍ରସାଦ କେବଳ ଯେ ବିବର୍ଣ୍ଣ ସହରର ବିଭ୍ରାନ୍ତିକୁ ପ୍ରକାଶ କରିଛନ୍ତି ତାହା ନୁହେଁ, ଶାନ୍ତସୁନ୍ଦର ଶୋଭାମୟ ପଲ୍ଲୀ ପ୍ରକୃତି ଆଜି କପରି ଶ୍ରୀହୀନ, ସେ କଥାକୁ ମଧ୍ୟ ସେ ଚମତ୍କାର ଭାବରେ ଦେଖାଇ ଦେଇଛନ୍ତି ।

"ଚୁପ୍‌ଚାପ ବାଲିଚର, ଗାଁ ସ୍କୁଲ,
ଡାକ ପିଅନ ସାଇକେଲ ଘଣ୍ଟି
କେଉଟ ସାଇର ଝିଙ୍କି ଚୁପ୍‌ଚାପ,
ଲୁଗା ନାହିଁ ଧୋବାଘାଟ ଅଡ଼େ
ଘୁରୁବାର ହତା ନାହିଁ ମାଣବସା ତୁଳସୀତଳ
ସଉଭୁଣୀ ଶାଶୁ ବୋହୂ ଭଳି

ଶ୍ମଶାନ ତୁମ ଗାଆଁ ଆମ ଗାଆଁ

ବସନ୍ତ ଏ ଶ୍ମଶାନ ଶଯ୍ୟାରେ ।"

(ଛୁଟିଭ ଖଗ)

ବାସ୍ତବିକ ଆଜିର ପଲ୍ଲୀ ଏହିଭଳି ଶ୍ମଶାନ । ପଲ୍ଲୀର ସଂସ୍କୃତି ଆଜି ଲୁପ୍ତପ୍ରାୟ । ପଲ୍ଲୀ ଜନତାର ବିଶ୍ୱାସ ଆଜି ନାହିଁ । ସେ ହରାଇ ବସିଛି ତାର ଅତୀତର ସମସ୍ତ ଗୌରବୋଦ୍ଦୀପ୍ତ ପରମ୍ପରା । ତେଣୁ ତାର ଧର୍ମବିଶ୍ୱାସ ଆଜି ତୁଟି ଯାଇଛି । ସହରର ଜୀବନର ଜଟିଳତା କ୍ରମେ ତାକୁ ଆକର୍ଷଣ କରୁଛି । ତାର ଭାଗବତ ଟୁଙ୍ଗୀ ଆଜି ଜନଶୂନ୍ୟ । ଭାଗବତକାର ଆଜି ମୂକ । ଭାଗବତ ଶ୍ରୋତା ଆଜି ବଧିର । ଭାଗବତ ଟୁଙ୍ଗୀ ଆଜି ମାଲିମୋକଦ୍ଦମାର କେନ୍ଦ୍ରସ୍ଥଳୀ । ସେ ଭୁଲିଛି ବାରମାସରେ ତେର ପର୍ବ । ସେ ଭୁଲିଛି ଚୈତ୍ର ପୂର୍ଣ୍ଣିମାର ଗୌରବମୟ କାହାଣୀ, କାର୍ତ୍ତିକ ପୂର୍ଣ୍ଣିମାର ଐତିହ୍ୟଦୀପ୍ତ ପ୍ରଶାନ୍ତବାଣୀ । ସେ ଭୁଲିଛି କୁମାରପୂର୍ଣ୍ଣିମାର ଲାସ୍ୟମୟ ପରମ୍ପରା । ସବୁ ଆଜି ବିଡ଼ମ୍ବିତ । ବୋଇତବନ୍ଦାଣ ଉତ୍ସବ ପାଳନ କରି ରାଜନୀତିକ ଘଟାଟୋପ ଭିତରେ ସାମୟିକ ବାହାବା ନେବା ହୋଇଛି ସାଂସ୍କୃତିକ ସମାରୋହ ମଧ୍ୟରେ ଏକ ପ୍ରଚ୍ଛନ୍ନ ଅଭିବ୍ୟକ୍ତି । ଏହିଭଳି ସାଂସ୍କୃତିକ ସମାରୋହ ପାଇଁ ଆଗ୍ରହ ନାହିଁ କି ଆବେଦନ ନାହିଁ । ତେଣୁ ବିଭ୍ରାନ୍ତ ଆମର ସାଂସ୍କୃତିକ ଚିନ୍ତା ଓ ଚେତନାରେ । ଏହି ଚିନ୍ତା ପ୍ରକଟିତ ହେଉଛି ଯଥାର୍ଥ ଭାବରେ ସାଂପ୍ରତିକ ବହୁ କବି, ଔପନ୍ୟାସିକ ଓ ନାଟ୍ୟକାରମାନଙ୍କ ଲେଖାରେ । ନାଟ୍ୟକାର ମନୋରଞ୍ଜନ ଦାସଙ୍କର ବନହଂସୀ, ଅରଣ୍ୟର ଫସଲ, ଅମୃତସ୍ୟ ପୁତ୍ରଃ, ବିଜୟ କୁମାର ମିଶ୍ରଙ୍କର ଚନ୍ଦ୍ରରେଖା, ଶବ ବାହକମାନେ, ବିଶ୍ୱଜିତ୍ ଦାସଙ୍କର 'ମୃଗୟା', ଓ "ନାଲିପାନ ରାଣୀ କଳାପାନ ଟିକା" ଆଦି ନାଟକରେ ଧାର୍ମିକ ସାମାଜିକ ବିଭ୍ରାନ୍ତ ସୁନ୍ଦର ଭାବରେ ଚର୍ଚ୍ଚିତ । ଠିକ୍ ଏହିଭଳି ଶାନ୍ତନୁ ଆଚାର୍ଯ୍ୟ, ସୁରେନ୍ଦ୍ର ମହାନ୍ତି, ମହାପାତ୍ର ନୀଳମଣି ସାହୁ, ଗୋପୀନାଥ ମହାନ୍ତି, ଅନାଦି ସାହୁ, ବୀଣାପାଣି ମହାନ୍ତି, ରବୀନ୍ଦ୍ର ନାଥ ପ୍ରଧାନ, କୃଷ୍ଣ ପ୍ରସାଦ ମିଶ୍ର, କବି ପଦ୍ମନାଭ ପ୍ରଭୃତିଙ୍କ ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ ଇତ୍ୟାଦିରେ ସାଂପ୍ରତିକ ସମାଜର ବିଭ୍ରାନ୍ତ ଯଥାର୍ଥ ଭାବରେ ପ୍ରକଟିତ ହୋଇଛି । ସାମାଜିକ ତଥା ସାଂସ୍କୃତିକ ବିଭ୍ରାନ୍ତିର ଅନ୍ତଃସ୍ୱରକୁ ଏମାନେ ଯଥାର୍ଥ ଭାବରେ ରୂପାୟନ କରୁଛନ୍ତି ସେମାନଙ୍କର ସାହିତ୍ୟରେ । ନିଃସଙ୍ଗ, ଅସହାୟ ମଣିଷର ଆତ୍ମିକ ଦ୍ୱନ୍ଦ୍ୱ ଓ ସଂଘର୍ଷ, ସମାଜ ସହିତ ବ୍ୟକ୍ତିର ଦ୍ୱନ୍ଦ୍ୱ, ତଜ୍ଜନିତ ବିଭ୍ରାନ୍ତ ସୃଷ୍ଟିକରୁ ସେମାନେ ପ୍ରକାଶ କରୁଛନ୍ତି ।

**ବିଭ୍ରାନ୍ତିର ପରିଣତି :**

ଆଜିର ସମାଜରେ ବିଭ୍ରାନ୍ତ ଏତେ ବ୍ୟାପକ ହୋଇ ପଡ଼ିଛି ଯେ ଯାହା ଫଳରେ ପ୍ରଗତି ବ୍ୟାହତ ହୋଇଛି । ମଣିଷର ଆଉ ପ୍ରଗତି ନାହିଁ । ପ୍ରଗତି ତାର

ହୋଇଛି ଜଡ଼ବିଜ୍ଞାନରେ । ମାତ୍ର ଆମ୍ଭ ବିଜ୍ଞାନରେ ତାର ଦୁର୍ଗତି, ତାର ଅଧଃପତନ । ଜଡ଼ବାଦ ମଣିଷକୁ ପ୍ରଶାନ୍ତି ଦେଇପାରେ ମାତ୍ର ଶାଶ୍ୱତ ଶାନ୍ତି ପ୍ରଦାନ କରିପାରେ ନାହିଁ । ଜଡ଼ବିଜ୍ଞାନ ମଣିଷକୁ କରିଛି ସଂଘର୍ଷଶୀଳ, ଦ୍ୱନ୍ଦ୍ୱାକୁଳ । ଏହିହେତୁ ମଣିଷର ଦେଖା ଦେଇଛି ମାନସିକ ସଙ୍କଟ । ଜଡ଼ବାଦର ବିଭ୍ରାନ୍ତିରେ ମାନସିକ ସଙ୍କଟ ଉତ୍କଟ ଆକାର ଧାରଣ କରିଛି । ତେଣୁ ସଂସ୍କୃତି, ସଭ୍ୟତା ଓ ପ୍ରଗତି ଏକ ବିଭ୍ରାନ୍ତିକର ପରିସ୍ଥିତି ମଧ୍ୟରେ ଗତିକରୁଛି । ମଣିଷ ମଣିଷ ମଧ୍ୟରେ ଶ୍ରଦ୍ଧା ନାହିଁ, ପ୍ରେମ ନାହିଁ, ସ୍ନେହ ନାହିଁ, ମମତା ନାହିଁ । ମଣିଷ ପାଲଟିଛି ପଶୁ । ସେ ଦୁଇଗୋଡ଼ରେ ସିଧା ହୋଇ ଚାଲେ ସତ ମାତ୍ର ପଶୁଠାରୁ ସେ ଦୁର୍ଦ୍ଦାନ୍ତ, ଦୁର୍ଦ୍ଦମନୀୟ, ଭୟଙ୍କର । ଏହିହେତୁ ମାନବିକ ସମ୍ପ୍ରୀତି ହୋଇଛି ସୁଦୂର ପରାହତ ଏବଂ ମଣିଷ ଆଜି ନିଃସଙ୍ଗ । T. S. Eliot ଙ୍କ ଭାଷାରେ "And each man fixed his eyes before his feet." ଆଜିର ସମାଜରେ ତେଣୁ ବିଭ୍ରାନ୍ତି ଦେଖାଦେଇଛି ପ୍ରତ୍ୟେକ ସ୍ତରରେ । ସ୍ୱାମୀ ଓ ସ୍ତ୍ରୀ, ସନ୍ତାନ ଓ ଜନନୀ, ପିତା ଓ ପୁତ୍ର, ଗୁରୁ ଓ ଓ ଛାତ୍ର, ନେତା ଓ ଜନତା, ଦେବତା ଓ ପୂଜକ ସବୁଠି ବିଭ୍ରାନ୍ତିର ବିକଳ ସ୍ୱର । ସେହିପରି ସଂସ୍କୃତି ଓ ସାଂସ୍କୃତିକ ଉତ୍ସବ, ଶାସକ ଓ ଶାସିତ ଓ ଶାସନ ବ୍ୟବସ୍ଥା, ଚିନ୍ତା ଓ କାର୍ଯ୍ୟପନ୍ଥା ସବୁଥିରେ ବିଭ୍ରାନ୍ତି । ବିଭ୍ରାନ୍ତି ପୂର୍ଣ୍ଣ ଶିକ୍ଷିତ ଅଶିକ୍ଷିତ ପ୍ରତ୍ୟେକ ସ୍ତରରେ । ଅଶିକ୍ଷିତ ସ୍ତରରେ ବିଭ୍ରାନ୍ତି ତେଲଲୁଣ ସଂସାରକୁ ନେଇ, ଆର୍ଥନୀତିକ ଦୁଃସ୍ଥିତିକୁ ନେଇ, ଶିକ୍ଷିତ ଶ୍ରେଣୀରେ ବିଭ୍ରାନ୍ତି ଅହଂବୋଧର ପ୍ରତିଷ୍ଠାକୁ ନେଇ, ମାନସିକ ଗ୍ଲାନି ଓ ସଂଘର୍ଷକୁ ନେଇ । ଏଇଥି ପାଇଁ ଶିକ୍ଷିତ ଗୋଷ୍ଠୀ ମଧ୍ୟରେ ଦେଖା ଦେଇଛି ନୈରାଶ୍ୟ, ଗ୍ଲାନି । ଉଚ୍ଚ ଶିକ୍ଷିତ ଅଫିସ ଫେରନ୍ତା ବ୍ୟକ୍ତି ଗୃହକୁ ନ ଫେରି ସିଧାସଳଖ ଯାଏ କ୍ଲବ୍ ଘରକୁ । ନାରୀ ଓ ସୁରା ସଂସ୍ପର୍ଶରେ ସେ ଜୀବନକୁ ଭୁଲେ । ଉଚ୍ଚଶିକ୍ଷିତା ନାରୀ ମଧ୍ୟ ଯାଏ କ୍ଲବ୍‌କୁ । ନୈରାଶ୍ୟଭାବ (sence of resignation) ସମସ୍ତଙ୍କୁ ଆକର୍ଷଣ କରିଛି । ଏଇଥିପାଇଁ ସମାଜରେ ବିଭ୍ରାନ୍ତି । କେହି କାହାରିକୁ ବିଶ୍ୱାସ କରୁ ନାହାଁନ୍ତି । ପିତା ପୁତ୍ରକୁ, ପୁତ୍ର ପିତାକୁ, ସ୍ୱାମୀ ସ୍ତ୍ରୀକୁ, ସ୍ତ୍ରୀ ସ୍ୱାମୀକୁ କେହି କାହାରିକୁ ବିଶ୍ୱାସ କରୁନାହାନ୍ତି । ସର୍ବତ୍ର ଅବିଶ୍ୱାସର ବାଲିଝଡ଼ । ତେଣୁ ବିଭ୍ରାନ୍ତି । ଏହି ଚିନ୍ତା ଆଜିର ସାହିତ୍ୟରେ ବାସ୍ତବ ଭାବରେ ଚିତ୍ରିତ ।

## ସିଦ୍ଧାନ୍ତରେ ବିଭ୍ରାନ୍ତି :

ସିଦ୍ଧାନ୍ତରେ ବିଭ୍ରାନ୍ତି ସମ୍ବନ୍ଧରେ ଏତିକି କୁହାଯାଇ ପାରେ ଯେ ଆଜିର ବିଭ୍ରାନ୍ତି ସୃଷ୍ଟି ହୋଇଛି ଭୟରୁ । ଏ ଭୟ ମଣିଷର ମନରେ । ଏହିହେତୁ ତାର ମାନସିକ ସଙ୍କଟ ଓ ବିଭ୍ରାନ୍ତି । ଏ ଭୟ ବ୍ୟକ୍ତି ସହିତ ବ୍ୟକ୍ତିର, ସମାଜ ବ୍ୟବସ୍ଥା

ସମ୍ପୃକ୍ତ ବ୍ୟକ୍ତିର, ପ୍ରଶାସନିକ ବ୍ୟବସ୍ଥା ସଙ୍କଟ ବ୍ୟକ୍ତିର, ସାଂସ୍କୃତିକ ଚଳଣି ସଙ୍କଟ ବ୍ୟକ୍ତିର । ବ୍ୟକ୍ତିର ଉଦ୍ଭ୍ରାନ୍ତ ସମାଜକୁ ବିଭ୍ରାନ୍ତ କରିବ । ଭୟ ସନ୍ଦେହ, ଅବିଶ୍ୱାସ, ସଙ୍କଟ ଆଜି ନୈତିକ ବିନ୍ଦୁ । ପୁଣି ଆଉ ଗୋଟିଏ ସ୍ତରରେ ଦେଖା ଦେଇଛି ଅବସାଦ ଜନିତ ନିର୍ବେଦତା ! ମୋଟ ଉପରେ ଆଜିର ବିଭ୍ରାନ୍ତ ସମାଜକୁ ପଙ୍ଗୁ କରିଦେଇଛି, ମଣିଷର ମନକୁ ସଂଶୟାଚ୍ଛନ୍ନ କରି ଦେଇଛି । ଏ ବିଭ୍ରାନ୍ତ ସମାଜର ବିଭିନ୍ନ ସ୍ତରରେ ଯେପରି ସୃଷ୍ଟି ହୋଇଛି ସେହିପରି ସୃଷ୍ଟି ହୋଇଛି ସାହିତ୍ୟରେ । ଏଣୁ ଆଜିର ସମାଜ ବିଭ୍ରାନ୍ତିର ସମାଜ, ଆଜିର ସଂସ୍କୃତି ବିଭ୍ରାନ୍ତିର ସଂସ୍କୃତି ଏବଂ ସାହିତ୍ୟ ଏହି ବିଭ୍ରାନ୍ତ ମଧ୍ୟରୁ ଚେତନା ସଂଗ୍ରହ କରି ନୂତନ ଦିଗନ୍ତର ସୂଚନା ପ୍ରଦାନ କରୁଛି ।



# ଗାନ୍ଧିଜୀ କେଉଁଠି ?

୧୯୬୯ ମସିହା ଅକ୍ଟୋବର ୨ ତାରିଖ ଠାରୁ ଗାନ୍ଧିଜୀଙ୍କର ଜନ୍ମଶତବାର୍ଷିକୀ ସମଗ୍ର ବିଶ୍ୱର ବିଭିନ୍ନ ଦେଶରେ ପାଳନ କରିବା ପାଇଁ ବିଧିବଦ୍ଧ ଭାବରେ ଯୋଜନା ହେଉଥିବାବେଳେ ଆଧୁନିକ ଯୁଦ୍ଧଧ୍ୱାନ୍ତ ଈର୍ଷା ପ୍ରଣୋଦିତ ଜଗତରେ ଗାନ୍ଧିଜୀଙ୍କର ସ୍ଥାନ କେଉଁଠି ? ଏ ପ୍ରଶ୍ନ ଆଲୋଚନା କରିବା କେତେଦୂର ଯୁକ୍ତିଯୁକ୍ତ ତାହା ପ୍ରତ୍ୟେକ ଚିନ୍ତାଶୀଳ ବ୍ୟକ୍ତି ବିବେଚନା କରିବା ଉଚିତ । କୋଟି କୋଟି ଟଙ୍କା ବ୍ୟୟ କରି ଗାନ୍ଧିଜୀଙ୍କର ଏଇ ଯେଉଁ ଶତବାର୍ଷିକୀ ପାଳନ କରାଯାଉଛନ୍ତି (ଯାହାକି ଗାନ୍ଧିଜୀ ନିଜ ଜୀବନକାଳ ମଧ୍ୟରେ ବାରମ୍ବାର ପ୍ରତିବାଦ କରୁଥିଲେ) ସେଥିରେ ପ୍ରକୃତ ପକ୍ଷରେ ଆନ୍ତରିକତା ଅଛି କି ? ଗାନ୍ଧୀବାଦ ବା ଗାନ୍ଧିଜୀଙ୍କର ଚିନ୍ତାଧାରା ଦ୍ୱାରା ଅନୁପ୍ରାଣିତ ହେବାର ଆନ୍ତରିକ ଆକାଂକ୍ଷା ଅଛି ବା ଗାନ୍ଧିଜୀଙ୍କ ନାମରେ ନିଜ ନିଜର ଗୌରବ ଅର୍ଜନ କରିବାର ପ୍ରବଳ ପିପାସା ଅଛି ? ଯେଉଁ ମାଟିରେ ଗାନ୍ଧିଜୀ ଜନ୍ମଲାଭ କରି ଜୀବନ ଉତ୍ସର୍ଗ କରିଗଲେ ସେଇ ମାଟିର ମମତାରେ ସେ ଆଜି ପୂଜିତ ବା ସେଠାରୁ ସେ ବିତାଡ଼ିତ ? ଯେଉଁ ଯେଉଁ କାରଣମାନ ପାଇଁ ଗାନ୍ଧିଜୀ ଜୀବନପଣ କରି ଅବିରତ ସଂଗ୍ରାମ କରିଗଲେ ସେହି ସେହି କାରଣମାନଙ୍କର ସମାଧାନ ପାଇଁ ଆଜି କଣ ଆନ୍ତରିକତା ପ୍ରକାଶ ପାଉଛି ନା କେବଳ ବ୍ୟକ୍ତିତନ୍ତ୍ରର ବିକାଶ ପାଇଁ ଚେଷ୍ଟା କରାଯାଉଛି ? ଗାନ୍ଧିଜୀଙ୍କର ସ୍ଥାନ କେଉଁଠି ଏହି ପ୍ରଶ୍ନ ଆଲୋଚନା କରିବାକୁ ଗଲା-ବେଳକୁ ମନ ମଧ୍ୟରେ ଏହିଭଳି ବହୁ ପ୍ରଶ୍ନବାଚୀ ଦେଖାଦିଏ ।

## ଗାନ୍ଧିଜୀଙ୍କ ଆଦର୍ଶର କେତୋଟି ଦିଗ ଓ ତାର ପରିଣତି :

ଗାନ୍ଧିଜୀଙ୍କର ଥିଲା ଅସୀମ ଧୈର୍ଯ୍ୟ ଓ ଅସୀମ ପ୍ରେମ । ସତ୍ୟ ଓ ଅହିଂସା ପ୍ରତି ଥିଲା ତାଙ୍କର ଅଗାଧ ବିଶ୍ୱାସ । ଧର୍ମପ୍ରତି ଥିଲା ତାଙ୍କର ଅସୀମ ଆସ୍ଥା । ସେ ଥିଲେ ଏକାକୀ ଯାତ୍ରୀ; ମାତ୍ର ତାଙ୍କର ଯାତ୍ରାପଥରେ ସେ ସମସ୍ତଙ୍କୁ ଆପଣାର କରି ନେଇଥିଲେ । ତାଙ୍କ ପାଖରେ ପର ଆପଣାର ଭେଦ ନ ଥିଲା । ଶତ୍ରୁ ଓ ମିତ୍ରର ତଫାତ୍ ନଥିଲା । ସମସ୍ତେ ତାଙ୍କର ଆପଣାର । ତାଙ୍କର ଭୟଙ୍କର ଶତ୍ରୁ ମଧ୍ୟ ତାଙ୍କର ବ୍ୟବହାର ଦ୍ୱାରା ତାଙ୍କ ପ୍ରତି ସହାନୁଭୂତିଶୀଳ ହୋଇ ଉଠୁଥିଲେ । Joseph J. Dokeଙ୍କ ଭାଷାରେ "Few can resist the charm

of his personality. His bitterest enemies become courteous when confronted with his beautiful courtesy." ସେ ସର୍ବଦା ହସୁଥିଲେ । ସେ ହସରେ ଥିଲା ଯାଦୁକରର ସ୍ପର୍ଶ । ସେ ହସରେ ଥିଲା ଶତ୍ରୁ-ହୃଦୟ-ବିଜୟକାରୀ ଅମୃତ ନିସ୍ୟନ୍ଦୀ ସ୍ୱର୍ଗୀୟ ଭାବର ଜାହ୍ନବୀ ଧାରା । ସେ ହସରେ ଥିଲା ବିମଳ ଜ୍ୟୋତ୍ସ୍ନାର ପ୍ଲାବନ । ସେ ଶିଶୁଭଳି ହସୁଥିଲେ ମାତ୍ର ସମସ୍ତଙ୍କୁ ସେ ଆପଣାର କରୁଥିଲେ । C. F. Andrews ତେଣୁ ଯଥାର୍ଥରେ ଲେଖିଛନ୍ତି "He laughs like a child and adores the children." ଚରମ ଦୁର୍ଦ୍ଦିନରେ ସେ ସମ୍ମୁଖୀନ ହୋଇଛନ୍ତି, ଦୁଃଖ, ଦୈନ୍ୟ ଓ ନିର୍ଯାତନାରେ ସେ ପ୍ରପୀଡ଼ିତ ହୋଇଛନ୍ତି, ତଥାପି କୋଟି କୋଟି ନିରନ୍ନ ଆର୍ତ୍ତ ନିଷ୍ପେଷିତ ଜନତାର ଦୁଃଖ ବିମୋଚନ ପାଇଁ ସେ ହସିଛନ୍ତି । ସେହି ହସ ଜେଲରେ, ବନ୍ଧୁକର ଆଗରେ, ବିଚାରାଳୟରେ, ଶାସକର ସମ୍ମୁଖରେ । ସେହି ହସ ନିକଟରେ ଶତ୍ରୁ ନତମସ୍ତକ ହେଉଥିଲା, ଆପଣାର ହେଉଥିଲା । ମାତ୍ର ଆଜି ସେ ହସ ଆଉ ନାହିଁ । ଗାନ୍ଧିଜୀଙ୍କର ନାମକୁ ଚଳକ-ଚର୍ଚ୍ଚିତ କରି ହସର କୁଟିଳତା ଭିତରେ ସେହି ମହାମାନବଙ୍କର ଆତ୍ମିକ ଚିନ୍ତାଧାରାକୁ କଣ ଏହାଦ୍ୱାରା ଅପମାନନା କରାଯାଉ ନାହିଁକି ?

ଭାରତର ମୁକ୍ତି ସଂଗ୍ରାମର ଅଧିନାୟକ ମହାମାନବ ମହାତ୍ମାଗାନ୍ଧୀ ସତ୍ୟ ଅହିଂସା ଓ ପ୍ରେମର ଥିଲେ ମୂର୍ତ୍ତିମନ୍ତ ଅବତାର । ସତ୍ୟ ହିଁ ଥିଲା ତାଙ୍କ ଜୀବନର ପରମ ବ୍ରତ । "ସତ୍ୟର ପ୍ରୟୋଗ" ପୁସ୍ତକରେ ସେ ଏହା ବର୍ଣ୍ଣନା କରିଛନ୍ତି । "ସତ୍ୟହିଁ ଭଗବାନ । ଅହିଂସା ମାଧ୍ୟମରେ ହିଁ ତାଙ୍କର ସାନ୍ନିଧ୍ୟ ଲାଭ ହୁଏ ।" Truth is God and the way to Him is Non-Violence. ସେ କହୁଥିଲେ "Non-Violence is the law of our species as Violence is the law of the brute. The spirit lies dormant in the brute and he knows no law but of physical might. The dignity of man requires obedience to a higher law; to the strength of the spirit." ଗାନ୍ଧିଜୀ ନିଜର ଚିନ୍ତା ଓ କ୍ରିୟାରେ ସତ୍ୟ ଓ ଅହିଂସାକୁ ପ୍ରୟୋଗ କରିଗଲେ । ଦେଶବାସୀଙ୍କୁ ଏହି ଭାବରେ ଉଦ୍‌ବୁଦ୍ଧ ହେବାକୁ ପ୍ରେରଣା ଦେଇ-ଗଲେ । ସେ ଥିଲେ ସରଳ ଋଷିପ୍ରତିମ ଦେବତୁଲ୍ୟ ବ୍ୟକ୍ତି । ତାଙ୍କ ମତରେ ମଣିଷହିଁ ମଣିଷ । ସେ ପଶୁ ନୁହେଁ । ପାଶବିକ ଶକ୍ତିର ସେ ଦାସ ନୁହେଁ । ତାର ଆତ୍ମଶକ୍ତି ଓ ଆତ୍ମଚୈତନ୍ୟ ଭାବ ଅଛି । ଈଶ୍ୱର ମଣିଷକୁ ଶକ୍ତି ଦେଇଛି, କ୍ଷମତା ଦେଇଛି ମାତ୍ର କ୍ଷମତାର ଅପପ୍ରୟୋଗ କରିବାର ସ୍ୱୀକୃତି ଦେଇନାହିଁ ।

Principal Jack ତେଣ୍ "The Sunday School Chronicle"ରେ ଲେଖିଛନ୍ତି "Applied Science will tell you how to make a gun, but it will not tell you when to shoot nor whom to shoot at." ମଣିଷର ଦେହ କେବଳ ଅସ୍ଥି, ମେଦ, ମାଂସ ନୁହେଁ ବା ମନ ନୁହେଁ, ତାର ଆତ୍ମା ଅଛି । "Man is not body and mind; he is also spirit." (ରାଧାକୃଷ୍ଣନ୍) । ଆତ୍ମଶକ୍ତିକୁ ଜାଗ୍ରତ କରିବା, ଧର୍ମପରାୟଣ ହେବା ଏବଂ ନୈତିକ ଗୁଣ-ଭୂଷିତ ଜୀବନଯାପନ କରିବା ହେଉଛି ଗାନ୍ଧିଜୀଙ୍କ ଆଦର୍ଶର ଗୋଟିଏ ଗୋଟିଏ ଦିଗ । ସମଗ୍ର ବିଶ୍ୱକୁ ଏକ ଭ୍ରାତୃତ୍ୱରେ ଆବଦ୍ଧ କରିବାପାଇଁ ତାଙ୍କ ଆତ୍ମାର ଥିଲା ଏକାନ୍ତ ଅଭୀପ୍ସା । ସେ ପଶୁବଳକୁ ଘୃଣା କରୁଥିଲେ । "ଅହିଂସା ନ ହେଲେ ବି କାଲି ଶାଣିତ ତରବାରି ଲଙ୍ଗଳର ଫାଳରେ ପରିଣତ ହେବ ।" ବାଇବେଲର ଏହି ବିଶ୍ୱାସକୁ ଗାନ୍ଧିଜୀ ମର୍ମେ ମର୍ମେ ଉପଲବ୍ଧି କରୁଥିଲେ । ସେ କହୁଥିଲେ "ମୁଁ କୌଣସି ନଶ୍ୱର ରାଜସିଂହାସନ ଲୋଡ଼େ ନାହିଁ । ଯେଉଁ ଦେବଲୋକରେ ଆଧ୍ୟାତ୍ମିକ ଶାନ୍ତି ମିଳିବ ସେଠାକୁ ଯିବାକୁ ମୁଁ ଚେଷ୍ଟା କରୁଛି । ମୁଁ ବିଶ୍ୱାସ କରୁଛି ଯେ ନିଜ ମାତୃଭୂମି ଓ ମାନବ ସମାଜର ନିରବଚ୍ଛିନ୍ନ ସେବା ହିଁ ସେହି ପ୍ରକାର ସାଧନାର ପୀଠ । ପ୍ରତ୍ୟେକ ପ୍ରାଣୀକୁ ମୁଁ ଭଲ ପାଇବାକୁ ଚେଷ୍ଟା କରୁଛି । ଶତ୍ରୁ ମିତ୍ର ସମସ୍ତଙ୍କ ସହିତ ମୁଁ ଶାନ୍ତିରେ ରହିବାକୁ ଚାହେଁ । ସ୍ୱଦେଶ ପ୍ରୀତି ମୋର ଅନ୍ତିମ ମୁକ୍ତି ଏବଂ ଶାନ୍ତିହିଁ ମୋର ପଥ । ଅତଏବ ମୋ ପକ୍ଷରେ ରାଜନୀତି ଧର୍ମହୀନ ହୋଇ ନ ପାରେ । ଧର୍ମ-ବର୍ଜିତ ରାଜନୀତି ହେଉଛି ମୃତ୍ୟୁ ଫାଶ । ଏହା ଆତ୍ମାର ବିନାଶ ସାଧନ କରେ । ଯେଉଁମାନେ ରାଜନୀତିରୁ ଧର୍ମକୁ ଅଲଗା ରଖିବାକୁ ଚାହାଁନ୍ତି ସେମାନେ ଧର୍ମ ବା ରାଜନୀତି କିଛି ଜାଣନ୍ତି ନାହିଁ ।" ଏହି ହେଉଛି ମହାମାନବ ମହାତ୍ମାଗାନ୍ଧୀଙ୍କର ଜୀବନର ଦର୍ଶନ । ଏହି ଭାବରେ ଉଦ୍‌ବୁଦ୍ଧ ହେବାକୁ ସେ ପ୍ରତ୍ୟେକ ଭାରତୀୟଙ୍କୁ ପ୍ରେରଣା ପ୍ରଦାନ କରିଥିଲେ । ମାତ୍ର ବିଶ୍ଳେଷଣ କଲେ ଆମକୁ ଦୁଃଖର ସହିତ ଏହି ସିଦ୍ଧାନ୍ତରେ ଉପନୀତ ହେବାକୁ ହୁଏ ଯେ ସତେ ଯେପରି ଭାରତ ମାଟିରୁ ଗାନ୍ଧୀ-ପ୍ରଦର୍ଶିତ ସତ୍ୟ-ଅହିଂସା-ଭାବ ବିଲୁପ୍ତ ହେବାକୁ ବସିଲାଣି । ରାଜନୀତିରେ ଜୁଆ ଖେଳ ଆରମ୍ଭ ହେଲାଣି । ଗାନ୍ଧିଦେଶର ଦାୟାଦ ଭାବରେ ଆମ୍ଭେମାନେ ଚଳିଲେ ହେଲେ ଏଥିପ୍ରତି କୁଣ୍ଠା ପ୍ରକାଶ କରୁନାହୁଁ । ଆମଠାରୁ ଧର୍ମ ଗଲାଣି, ନୀତି ନିୟମ ସବୁ ଟଳିଲାଣି । ଆମେ ସବୁ "ମଦପଡ଼ା; କାମ ପଡ଼ିଲେ ଗଡ଼ଗଡ଼ା ।" ରାଜନୀତିରେ ଆଜି ସଖୀ କଣ୍ଢେଇ ନାଚ । ମନ ଭିତରେ ପ୍ରଶ୍ନ ସୃଷ୍ଟି ହୁଏ ଆମର ଗତି କୁଆଡ଼କୁ ? କ୍ଷମତାର ଛଣ୍ ଲଢ଼େଇ ଭିତରେ ଆମର ଅବସ୍ଥା କଣ ହେବ ? ଯେଉଁଥିପାଇଁ ବିଶିଷ୍ଟ ସର୍ବୋଦୟ ନେତା ଶ୍ରୀଯୁକ୍ତ ଜୟପ୍ରକାଶ ନାରାୟଣ ଦୁଃଖ ପ୍ରକାଶ କରି

ଲେଖିଛନ୍ତି ଯେ କଂଗ୍ରେସ ପାର୍ଟି କେବଳ ନିଜର ପ୍ରଚାର ପାଇଁ ଗାନ୍ଧିଜୀଙ୍କ ନାମକୁ ସ୍ମରଣ କରୁଛି ମାତ୍ର; ନିଜକୁ ଗାନ୍ଧୀଦଳ କହି ଗାନ୍ଧିଜୀଙ୍କ ନିର୍ଦ୍ଦେଶକୁ ସମ୍ପୂର୍ଣ୍ଣଭାବରେ ଅବହେଳା କରୁଛି । ସେ ଦୁଃଖର ସହିତ ସ୍ୱୀକାର କଲେ ଯେ ଭାରତରେ ଏବେ ବି ଔପନିବେଶିକ ଶାସନ ଚାଲିଛି । ଅତଏବ ଆମକୁ ଏଇ ସିଦ୍ଧାନ୍ତରେ ପହଞ୍ଚିବାକୁ ହେଉଛି ଯେ ଗାନ୍ଧିଜୀଙ୍କ ନାମକୁ ଜପାମାଳି କରି ତାଙ୍କରି ନାମରେ ହରିଲୁଟ କରିବାକୁ ଯେପରି ସମସ୍ତେ ବ୍ୟଗ୍ର । ବର୍ତ୍ତମାନ କଂଗ୍ରେସର ଗୃହବିବାଦ ଏହା କଣ ଆମକୁ ଜଳଜଳ କରି ଦେଖାଇ ଦେଉନାହିଁ କି ? ଉପରୋକ୍ତ ଆଲୋଚନାରୁ ଏଇ ପ୍ରଶ୍ନ ହୁଏ ଭାରତବର୍ଷରେ ଆଉ ଗାନ୍ଧିଜୀଙ୍କର ସ୍ଥାନ ଅଛି କି ?

ପୁନଶ୍ଚ ଶିକ୍ଷାକ୍ଷେତ୍ରକୁ ବିଶ୍ଳେଷଣ କଲେ ଜଣାଯାଏ ଯେ ଗାନ୍ଧିଜୀ ଯେଉଁ ଶିକ୍ଷାର ପରିକଳ୍ପନା କରୁଥିଲେ ଏବଂ କେତେକ ସ୍ଥଳରେ ବାସ୍ତବରୂପ ଦେଇଥିଲେ ତାହାସବୁ ଲୋପ ପାଇଗଲାଣି । ଆତ୍ମ-ନିର୍ଭରଶୀଳ ଶିକ୍ଷା ପ୍ରଚଳନ ପାଇଁ ଏବଂ ଏହାକୁ ଭାରତୀୟ ପରମ୍ପରା ପ୍ରସୂତ ଭାବଧାରା ଦ୍ୱାରା ଅନୁପ୍ରାଣିତ କରାଇବା ପାଇଁ ସେ ଆପ୍ରାଣ ଚେଷ୍ଟା କରୁଥିଲେ । ମାତ୍ର ତାଙ୍କର ମୃତ୍ୟୁପରେ ଆମର ଶିକ୍ଷା ସମସ୍ୟା ଯେଉଁ ମାଧ୍ୟମକୁ ସେଇ ମାଧ୍ୟମରେ ପରିଣତ ହୋଇଛି । ପାଶ୍ଚାତ୍ୟ ଶିକ୍ଷା ଯେ କେବଳ ଆମକୁ ପରମୁଖାପେକ୍ଷୀ କରୁଛି ତାହା ନୁହେଁ; ତତ୍‌ସଙ୍ଗେ ସଙ୍ଗେ ଆମକୁ ଆତ୍ମଶକ୍ତିହୀନ କରାଇବାରେ ସାହାଯ୍ୟ କରୁଛି । ଭାଷା ସମସ୍ୟା, ଜାତୀୟ ଭାଷା ଓ ଜାତୀୟ ଶିକ୍ଷା ସମ୍ବନ୍ଧରେ ଗାନ୍ଧିଜୀ ଯାହା ଚିନ୍ତା କରିଥିଲେ ଏବଂ ବାସ୍ତବ କ୍ଷେତ୍ରରେ ରୂପାୟନ କରିବାକୁ ଚେଷ୍ଟା କରିଥିଲେ ଆଜି ସେ ସମସ୍ତ ଯେଉଁ ତିମିରେ ସେଇ ତିମିରେ ରହିବାକୁ ଲାଗିଲାଣି । ଆଜି ଆମର ସମସ୍ୟା "ମାରିନା ମୁଁ ମଲିଣି, ବଇଠା ଲଗାଇ ଦେଖନ୍ତି ମୁଁ ପୋଇ ଖାଉପରି ହେଲିଣି" ଭଳି ଅବସ୍ଥା । ସମସ୍ତେ ଗାନ୍ଧିଜୀଙ୍କର ନାମ ଉଚ୍ଚାରଣ କରୁଛନ୍ତି ମାତ୍ର କେହି ତାଙ୍କର ଆଦର୍ଶକୁ ଗ୍ରହଣ କରୁଥିଲା ଭଳି ମନେହୁଏ ନାହିଁ ।

ପୁନଶ୍ଚ ଆଉ ସେତେବେଳେ ଯେଉଁ ସମସ୍ୟାର ସମାଧାନ ପାଇଁ ଗାନ୍ଧିଜୀ ପ୍ରାଣପାତ ଉଦ୍ୟମ କରିଗଲେ ସେହି ସମସ୍ୟାମାନ ସମାଧାନ ନହୋଇ ବରଂ ଉତ୍କଟତର ରୂପ ଧାରଣ କଲାଣି । ନୂଆଖାଲିଠାରେ ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ସଂଘର୍ଷକୁ ଦୂରକରିବା ପାଇଁ ଗାନ୍ଧିଜୀ ସେତେବେଳେ କହିଥିଲେ "My longing is to be able to cement the two with my blood if necessary." ଧର୍ମନିରପେକ୍ଷତାକୁ ସେ ତାଙ୍କର ଜୀବନରେ ପରମ ବ୍ରତ କରିଥିଲେ । ମାତ୍ର ଦୁଃଖର ବିଷୟ ଯେ ସାମ୍ପ୍ରଦାୟିକ ଭାବ ଦୂର ହେବା ଦୂରେ ଥାଉ ବରଂ ଏହା ଦିନକୁ ଦିନ ଭୟଙ୍କର ରୂପ ଧାରଣ କରୁଛି । ପଶ୍ଚିମ ବଙ୍ଗ, ଓଡ଼ିଶା, ଦିଲ୍ଲୀ ଏବଂ ଏଇ କେତେଦିନ ତଳେ ଅହମଦାବାଦରେ ଏହାର ବିକଟ ବୀଭତ୍ସ ରୂପ ଦେଖିବାକୁ ମିଳିଲା ।

ଅହମଦାବାଦରେ ଯେ ମୃତ୍ୟୁସଂଖ୍ୟା ସହସ୍ରାଧିକ ଏବେ ଏହା ଜଳଜଳ ଦେଖାଗଲଣି । ଗାନ୍ଧିଜୀଙ୍କର ଏହି ଧର୍ମ ନିରପେକ୍ଷ ନୀତିକୁ ମଧ୍ୟ ଏଠି ସେଠି ହତ୍ୟା କରାଯାଉଛି । ପୁଣି ହରିଜନ ସମସ୍ୟା ମଧ୍ୟ ଏଯାଏ ଦୂର ହୋଇନାହିଁ । ଏବେ କେତେ ଦିନ ତଳେ ମାନ୍ଦ୍ରାସରେ ଜଣେ ହରିଜନକୁ ନିଆଁରେ ପୋଡ଼ିଦେବା ଯେପରି ନିନ୍ଦନୀୟ ସେହିପରି ତାହା ଗାନ୍ଧିଜୀଙ୍କର ନୀତି ପ୍ରତି ଏକ ଉପହାସ କହିଲେ ଅତ୍ୟୁକ୍ତି ହେବନାହିଁ । ଏହା ସାଙ୍ଗକୁ ପୁଣି ଭାଷା ସମସ୍ୟା । ଦେଶର ବିଭିନ୍ନ ଅଞ୍ଚଳରେ ଏହି ସମସ୍ୟା ଲାଗିରହିଛି । ମୋଟ ଉପରେ ଧର୍ମ, ଜାତି ଓ ଭାଷାକୁ ନେଇ ସମଗ୍ର ଭାରତ ବର୍ଷରେ ଯେଉଁ ହିଂସାତ୍ମକ ଆନ୍ଦୋଳନ ଦେଖାଦେଉଛି ତାହା ଦ୍ୱାରା ଜାତିର ଜନକ ମହାତ୍ମାଗାନ୍ଧୀଙ୍କୁ ଅବମାନନା କରାଯାଉ ନାହିଁ କି ? ତାଙ୍କର ଆଦର୍ଶକୁ ତିଳ ତିଳ କରି ହତ୍ୟା କରାଯାଉ ନାହିଁ କି ? ଗୋଟିଏ ହାତରେ ତୁଳସୀ ମାଳ ଧରି ଅନ୍ୟ ହାତରେ ଆମେ ହିଂସାର କୃପାଣ ଧରି ନାହୁଁ କି ?

ଗାନ୍ଧିଜୀଙ୍କର ଆଉ ଏକ ଆଦର୍ଶ; ତାହା ହେଉଛି ଗ୍ରାମର ଉନ୍ନତି । ସ୍ୱାଧୀନତା ପରେ ଆଶା କରାଯାଉଥିଲା ଯେ ଗ୍ରାମର ଅବସ୍ଥାରେ ପରିବର୍ତ୍ତନ ଆସିବ । ମାତ୍ର ସେ ଆଶା ଗୁଡ଼ୁଚିବାଜିବତ୍ ହୋଇଛି । ଗାନ୍ଧିଜୀ ଗ୍ରାମାଞ୍ଚଳରେ ଭ୍ରମଣ କରି ଗ୍ରାମର ଦୁଃସ୍ଥିତିକୁ ନିଜର ଚକ୍ଷୁ, କର୍ଣ୍ଣ, ପଦ, ଚର୍ମ, ହୃଦୟ ଓ ପ୍ରବୃତ୍ତି ଦ୍ୱାରା ହୃଦୟଙ୍ଗମ କରିଥିଲେ । ମାତ୍ର ଏବେ ମଧ୍ୟ ଗ୍ରାମଗୁଡ଼ିକ ଅବହେଳାର ବସ୍ତୁ ହୋଇଛି । Louis Fischer ଠିକ୍ ଯଥାର୍ଥରେ ଲେଖିଛନ୍ତି—"The Indian Village did not enjoy priority. The Indian people have paid for the neglect." ଏହିସବୁ ଆଲୋଚନାରୁ ଜଣାଯାଏ ଯେ ଗାନ୍ଧିଜୀଙ୍କର ସ୍ଥାନ ଯେପରି ଭାରତବର୍ଷରୁ କ୍ରମେ ବିଲୁପ୍ତ ହେବାକୁ ବସିଲଣି । ସେ ଯେପରି ଏହି ମାଟିରୁ ବିଦାୟ ନେଇ ଗଲେଣି । ତାଙ୍କର ନର ଶରୀର ଆତତାୟୀର ଗୁଳିରେ ଢଳି ହୋଇ ଧ୍ୱଂସ ହୋଇଯାଇଥିଲା ସତ; ମାତ୍ର ତାଙ୍କର ଆତ୍ମା ଏବଂ ଆଦର୍ଶ ମଧ୍ୟ କ୍ରମେ କ୍ରମେ ଏ ଦେଶର ମାଟିରୁ ବିଦାୟ ନେବାକୁ ବସିଲଣି । ନିଶାନିବାରଣ ଗାନ୍ଧିଜୀଙ୍କ ଜୀବନରେ ପରମ ବ୍ରତ ଥିଲେହେଁ ଏବଂ ଗାନ୍ଧିଜୀଙ୍କ ନାମ ନେଇ ଭାରତୀୟ ଗଣତନ୍ତ୍ର ଚାଲୁଥିଲେହେଁ ନିଶାନିବାରଣ ତ ହୋଇପାରିଲା ନାହିଁ ବରଂ ନୂତନ ଭାବରେ ଏହାକୁ ପ୍ରସ୍ତାବିତ କରାଯାଉଛି । ଗାନ୍ଧୀବାଦ ସତେ ଯେପରି ଏହି ମଦର ମାଦକତାରେ ଟଳମଳ ହୋଇଉଠୁଛି ।

ବାଇବେଲରେ ଅଛି "ହିଂସାତ୍ମକ ମନୋବୃତ୍ତି ନେଇ ବଞ୍ଚିରହିଥିବା ବ୍ୟକ୍ତି ସେହି ହିଂସାରୂପକ ଅଗ୍ନିରେ ଧ୍ୱଂସ ପାଇଯିବେ ।" ମାତ୍ର ଇତିହାସରେ ଯାହା ଦେଖାଯାଇଛି ହିଂସା ନୀତିର ସର୍ବପ୍ରଧାନ ବିରୋଧୀମାନେ ହିଂସା ରୂପକ ଅଗ୍ନିରେ

ପ୍ରାଣ ଦେଇଛନ୍ତି । ଯୀଶୁଖ୍ରୀଷ୍ଟ ଓ ଗାନ୍ଧିଜୀଙ୍କ ଜୀବନରେ ଏହାହିଁ ଘଟିଛି । ଅବଶ୍ୟ କେତେକ ଯୁକ୍ତି କରିପାରନ୍ତି ଯେ ସେମାନଙ୍କ ମୃତ୍ୟୁ ପରେ ସେମାନଙ୍କର ଭାବଧାରାର ପ୍ରଭାବ ବ୍ୟାପକ ହେଲା । ଜୁଲିଅସ୍ ସିଜରଙ୍କ ମୃତ୍ୟୁ ପରେ ତାଙ୍କର ଭାବ କୋଟି କୋଟି ଜନତାକୁ ଆକର୍ଷଣ କଲା । ସେହିପରି ମହାମାନବ ମହାତ୍ମାଗାନ୍ଧୀ ଓ ମାର୍ଟିନଲୁଥର କିଙ୍ଗ୍‌ଙ୍କ ମୃତ୍ୟୁ ପରେ ସେମାନଙ୍କର ଭାବ ବହୁ ଜନତାକୁ ଉଦ୍‌ବୁଦ୍ଧ କରିଛି । ଏହା ସତ ହୋଇପାରେ; ମାତ୍ର ବସ୍ତୁତଃ ଯାହା ଦେଖାଯାଉଛି ଗାନ୍ଧିଜୀଙ୍କ ମୃତ୍ୟୁ ପରେ ଭାରତୀୟମାନେ କିଛି ପ୍ରଭାବିତ ହୋଇଛନ୍ତି ବୋଲି ମନେହୁଏ ନାହିଁ । କେବଳ ଗାନ୍ଧୀ ପୋଷାକଧାରୀ ଆଉ ଏକ ଗୋଷ୍ଠୀ ସୃଷ୍ଟି ହେବା ଛଡ଼ା ଗାନ୍ଧିଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲା ଭଳି ବ୍ୟକ୍ତି ଭାରତରେ ନାହାନ୍ତି କହିଲେ ସତ୍ୟର ଅପଲାପ ହେବନାହିଁ । (ଅବଶ୍ୟ ବିନୋବା ଭାବେ ଏ କ୍ଷେତ୍ରରେ ବ୍ୟତିକ୍ରମ । )

## ଭାରତ ବାହାରେ ଗାନ୍ଧିଜୀ :

"Countries kill their great sons" । ସତେ ଯେପରି ପ୍ରତ୍ୟେକ ଯୁଗର ଏହା ଏକ ନ୍ୟାୟ ହୋଇଗଲାଣି । ଭାରତରେ ମହାତ୍ମାଗାନ୍ଧୀଙ୍କୁ ହତ୍ୟା କରାଗଲା । ଆମେରିକାରେ ଜନ୍ ଏଫ୍. କେନେଡ଼ି ଏବଂ ମାର୍ଟିନ ଲୁଥର କିଙ୍ଗ୍‌ଙ୍କୁ ହତ୍ୟା କରାଗଲା । ଦୁଇ ହଜାର ବର୍ଷ ତଳେ ଯୀଶୁଖ୍ରୀଷ୍ଟଙ୍କୁ ହତ୍ୟା କରାଯାଇଥିଲା । ଆଜି ପୃଥିବୀ ହିଂସାର ଦୋଳନ ମଧ୍ୟରେ ଦୋଳାୟମାନ । କେଉଁ ମୁହୂର୍ତ୍ତରେ ଧ୍ୱଂସର ତାଣ୍ଡବଲୀଳା ସୃଷ୍ଟି ହେବ, ହିଂସାର ଆଗ୍ନେୟଗିରି ଉଦ୍‌ଗୀରଣ କରିଉଠିବ, କହିହେବ ନାହିଁ । ଏବେ "Truth suffers; hate truimphs; Love is a waif." ଭାରତରେ ଗାନ୍ଧିଜୀଙ୍କ ଆଦର୍ଶକୁ ହତ୍ୟା କରାଯାଉଥିଲାବେଳେ ଏହା ଏକ ଆନନ୍ଦର କଥା ଯେ ବିଶ୍ୱର ବହୁ ଅଞ୍ଚଳରେ ଗାନ୍ଧିଜୀଙ୍କ ଚିନ୍ତାଧାରାକୁ ଅନୁଶୀଳନ କରି କାର୍ଯ୍ୟରେ ପରିଣତ କରିବାର ଉତ୍ସାହ ଦେଖାଦେଲାଣି । ଯୁଗେ ଯୁଗେ ଭାରତବର୍ଷର ମହାମାନବମାନେ ଏ ଦେଶମାଟିରୁ ବିଦାୟ ନେଇ ଅନ୍ୟ ଦେଶରେ ସମ୍ମାନିତ ହୋଇଛନ୍ତି । ଆଜି ଏକଥା ନୂଆ ନୁହେଁ । ଏହି ଦେଶରେ ବୁଦ୍ଧଦେବ ସତ୍ୟ, ଧର୍ମ, ଅହିଂସାର ବାଣୀ ପ୍ରଚାର କରିଗଲେ; ମାତ୍ର ଏ ଦେଶରୁ ଏହି ଧର୍ମ ଲୋପ ପାଇଯିବା ଉପରେ । ଅଥଚ ଜାପାନ, ତିବ୍ବତ, ଚୀନ୍, ବ୍ରହ୍ମଦେଶ ପ୍ରଭୃତିରେ ଏହି ଧର୍ମ ଏବେ ବି ବିଦ୍ୟମାନ । ଠିକ୍ ଏହିଭଳି ଅଶୋକଙ୍କ ଅବସ୍ଥା । ଗାନ୍ଧିଜୀ ମଧ୍ୟ ଏହିଭଳି ଅବସ୍ଥାର ସମ୍ମୁଖୀନ ହୋଇଛନ୍ତି । ଏ ଦେଶ ମାଟିରୁ ବିଦାୟ ନେଇ ଅନ୍ୟ ଦେଶମାନଙ୍କରେ ସେ ଆଜି ପୂଜିତ ।

ହିଂସା ପ୍ରଶୋଦିତ ପୃଥିବୀରେ ଆଜି ଶାନ୍ତି ଏକାନ୍ତ କାମ୍ୟ । ଧର୍ମ ଓ ବିଜ୍ଞାନର ସମନ୍ୱୟରେ ଶାନ୍ତି ପ୍ରତିଷ୍ଠା କରାଯାଇ ପାରିବ । ଗାନ୍ଧିଜୀଙ୍କ ମତରେ "World peace depends upon the marriage of religion and Science." ବର୍ତ୍ତମାନ ପୃଥିବୀ ଭୟଙ୍କର ଘୂର୍ଣ୍ଣି ଭିତରେ ଆନ୍ଦୋଳିତ । ସମ୍ଭବତଃ ଆଣବିକ ଯୁଦ୍ଧରେ ଏହା ଆତ୍ମହତ୍ୟା କରିପାରେ । ସମସ୍ତ ପ୍ରକାର ବୈଜ୍ଞାନିକ ଉଦ୍ଭାବନ, ଯାନ୍ତ୍ରିକ ସଭ୍ୟତାର ବିକାଶ ଓ ବିଳାସର ପ୍ରାଚୁର୍ଯ୍ୟ ସତ୍ତ୍ୱେ ବିଂଶ ଶତାବ୍ଦୀ ମାନବ ସମାଜର କଲ୍ୟାଣ ଓ ଶାନ୍ତି ପାଇଁ ପ୍ରେରଣା ଦେଇଛି । ମଣିଷ ମଣିଷ, ଦଳ ଦଳ, ଜାତି ଜାତି ଓ ଦେଶ ଦେଶ ମଧ୍ୟରେ ଶାନ୍ତି ପ୍ରତିଷ୍ଠା ପାଇଁ ଗାନ୍ଧିଜୀ ଚାହିଁଥିଲେ । ଜସ୍ତ୍ର ପରିଜସ୍ତ୍ରର ଚନ୍ଦ୍ରାଧାରରେ ଶାନ୍ତି ପ୍ରତିଷ୍ଠା ହୋଇ ନ ପାରେ । ଶାନ୍ତି କେବଳ ଭୌତିକ ସୁଖ ସମ୍ଭୋଗ ଦ୍ୱାରା ମିଳେ ନାହିଁ । ଆତ୍ମ ଶକ୍ତିର ବିକାଶରେ ଶାନ୍ତି ହିଁ ଯଥାର୍ଥରେ ମିଳେ । ସମଗ୍ର ସମାଜକୁ ନେଇ ଶାନ୍ତିର ସ୍ଥିତି । ଶାନ୍ତିର ବିଶାଳ ନଭଶ୍ଚୁମ୍ବୀ ସୌଧ ବ୍ୟକ୍ତି ଚେତନାର ଶାନ୍ତିପୂର୍ଣ୍ଣ ରୂପକ ଇଟା ଦ୍ୱାରା ନିର୍ମିତ । ଶାନ୍ତି ସୌଧର ବ୍ୟକ୍ତି ହିଁ ଭିତ୍ତିଭୂମି । ବୁଦ୍ଧି ଓ ବିବେକରେ, ହୃଦୟ ଓ ଭାବରେ, ପ୍ରବୃତ୍ତି ଓ କାରଣରେ, ଶକ୍ତି ଓ ସାମର୍ଥ୍ୟରେ, ବ୍ୟକ୍ତି ବ୍ୟକ୍ତି, ଗୋଷ୍ଠୀ ଗୋଷ୍ଠୀ ଓ ଦେଶ ଦେଶ ମଧ୍ୟରେ ଯଦି ବୋଧଶକ୍ତି ଜନିତ ଶାନ୍ତି ସ୍ଥାପିତ ହୋଇପାରେ ତେବେ ଜୀବନ ହେବ ଶାନ୍ତିମୟ, ସମାଜ ହେବ ମଙ୍ଗଳମୟ ଏବଂ ବିଶ୍ୱ ହେବ ସତ୍ୟ ଶିବ ସୁନ୍ଦରର ଗନ୍ତାଘର । ଗାନ୍ଧିଜୀଙ୍କ ମତରେ "ଭଗବାନଙ୍କ ସହିତ ବ୍ୟକ୍ତିର ଐକ୍ୟକୁ ହୃଦୟଙ୍ଗମ କରିବା ଅଭାବରୁ ବିଶ୍ୱରେ ଯୁଦ୍ଧ ସୃଷ୍ଟି ହୁଏ ।" ସେଥିପାଇଁ ସେ ସତ୍ୟ ସହିତ ଆଧ୍ୟାତ୍ମିକତାକୁ, ଅହିଂସା ସହିତ ନୈତିକତାକୁ ସମନ୍ୱୟ କରିଥିଲେ । ପ୍ରତ୍ୟେକ ଧର୍ମର ଅନ୍ତର୍ନିହିତ ବାଣୀ ହେଉଛି ସତ୍ୟ ଓ ଅହିଂସା । ପ୍ରେମ ଏହି ଦ୍ୱୟକୁ ସତେ ଯେପରି ବାନ୍ଧିରଖିଛି । ଅଣୁ ଶକ୍ତିର ବିଶ୍ୱଧ୍ୱଂସୀ କରାଳରୂପ ନିକଟରେ ସତ୍ୟ ଓ ଅହିଂସା, ନୈତିକତା ଓ ଆଧ୍ୟାତ୍ମିକତା ଜାଜ୍ୱଲ୍ୟମାନ ହୋଇ ଉଠେ । ବିଶ୍ୱବାସୀ ଗାନ୍ଧିଜୀଙ୍କର ଏହି ଆଦର୍ଶରେ ଅନୁପ୍ରାଣିତ ହେବା ଉଚିତ । ପୃଥିବୀର ବିଭିନ୍ନ ଦେଶରେ ଗାନ୍ଧିଜୀଙ୍କର ଏହି ଶାନ୍ତି-ନୀତି କ୍ରମେ ପ୍ରଭାବ ବିସ୍ତାର କରୁଥିବାର ଶୁଭ ସଙ୍କେତ ମିଳିଲାଣି ।

- ଲାଟିନ ଆମେରିକାରେ କମ୍ୟୁନିଷ୍ଟ ପାର୍ଟି ୧୯୬୪ ମସିହାଠାରୁ ସାମରିକ ଶକ୍ତିକୁ ନିନ୍ଦା କରିବା ସଙ୍ଗେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ନୀତିକୁ ଗ୍ରହଣ କରିଛି । ୧୯୬୬ ମସିହାରେ ହାଭାନାରେ ଅନୁଷ୍ଠିତ ହୋଇଥିବା ତ୍ରିଦେଶୀୟ ସମ୍ମେଳନରେ ଯୁଦ୍ଧ ପ୍ରତି ମନୋଭାବ ବଦଳିଯିବାର ଭାବ ଲକ୍ଷ୍ୟ କରାଯାଇଛି । ପ୍ରତ୍ୟେକ ସ୍ଥାୟୀ ଶାନ୍ତି ପ୍ରତିଷ୍ଠା ପାଇଁ ଆକାଂକ୍ଷିତ ହୋଇ ଉଠୁଛନ୍ତି । ଘାନାର ପୂର୍ବତନ

ପ୍ରଧାନମନ୍ତ୍ରୀ ଏନ୍‌କ୍ରୁମା ୧୯୪୯ ମସିହାଠାରୁ ୧୯୫୭ ମସିହା ପର୍ଯ୍ୟନ୍ତ ଗାନ୍ଧିଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସ୍ଥାୟୀ ଶାନ୍ତି ପ୍ରତିଷ୍ଠା ପାଇଁ କଠୋର ପରିଶ୍ରମ କରିଥିଲେ । ସେ କହୁଥିଲେ "Gandhi's principle of absolute non-violence should be observed." ଅହିଂସା ବାହିନୀର ନେତା ଭାବରେ Albert John Luthuli ୧୯୬୦ ମସିହାରେ Nobel Peace Prize ଲାଭ କରିଥିଲେ । ଗାନ୍ଧିଜୀଙ୍କର ଆଦର୍ଶ କିପରି ତାଙ୍କୁ ପ୍ରଭାବିତ କରିଥିଲା ତାଙ୍କର କାର୍ଯ୍ୟକଳାପରୁ ତାହା ଜଣାଯାଏ । ୧୯୫୭ ମସିହାରୁ ୧୯୫୭ ମସିହା ମଧ୍ୟରେ ଆମେରିକାରେ ଅହିଂସା ଅସହଯୋଗ ଆନ୍ଦୋଳନକୁ ସେମାନେ ଗ୍ରହଣ କଲେ । Montogomery, Albama ଇତ୍ୟାଦି ଅଞ୍ଚଳମାନଙ୍କରେ bus boy cutt ଭଳି ଅସହଯୋଗ ଆନ୍ଦୋଳନ କରି ସେମାନେ ସଫଳତା ଲାଭ କଲେ । ହିଂସା ପ୍ରଣୋଦିତ ତରବାରୀକୁ ସେମାନେ ଘୃଣା କଲେ । "All who take the sword will perish by the sword." ୧୯୬୩ ମସିହାରେ ଆମେରିକାରେ Bayward Ruskinଙ୍କ ନେତୃତ୍ୱରେ "March on Washington" ଦ୍ୱାରା ଅହିଂସ ଆନ୍ଦୋଳନ ସୃଷ୍ଟି ହେଲା । ନିର୍ଯ୍ୟାତିତ ନିପୀଡ଼ିତ ନିଗ୍ରୋମାନେ ନିଜନିଜର ଦାବୀ ହାସଲପାଇଁ ଅହିଂସ ମାର୍ଗରେ ପରିଚାଳିତ ହେଲେ । ଜାମ୍ବିଆର ପୂର୍ବତନ ପ୍ରଧାନମନ୍ତ୍ରୀ Kenneth Kaunda ୧୯୬୩ ମସିହାରୁ ମଧ୍ୟ ଗାନ୍ଧିଜୀଙ୍କର ଶାନ୍ତିପୂର୍ଣ୍ଣ ଅହିଂସ ମାର୍ଗକୁ ଗ୍ରହଣ କରି ନେଲେ । ୧୯୬୨ ମସିହା ଅଗଷ୍ଟ ମାସରେ ଆଲଜେରିଆରେ Wilaja ଓ Ben Bellaଙ୍କ ସୈନ୍ୟବାହିନୀ ମଧ୍ୟରେ ଗୃହଯୁଦ୍ଧ ବିବାଦ ଜନିତ ରଣ ଦୁନ୍ଦୁଭି ବାଜି ଉଠିବା ହେତୁ ସେଠାକାର Trade Union ସଂଘ ତରଫରୁ ସାଧାରଣ ଲୋକମାନେ ଶାନ୍ତି ପ୍ରତିଷ୍ଠା ପାଇଁ ଅହିଂସା ମାର୍ଗରେ ହରତାଳ କଲେ । ଫଳରେ ସମସ୍ୟାର ସମାଧାନ ହେଲା । ୧୯୬୦ ମସିହାରେ Belgium ଠାରେ ମହାତ୍ମାଗାନ୍ଧୀଙ୍କ ନାମରେ ଶାନ୍ତି ବିଶ୍ୱବିଦ୍ୟାଳୟର ଭିତ୍ତି ପ୍ରସ୍ତର ସ୍ଥାପନ କରାଗଲା । ଏ ଯୁଗର ଶ୍ରେଷ୍ଠ ଗାନ୍ଧୀବାଦୀ ନେତା ଡକ୍ଟର ମାର୍ଟିନଲୁଥର କିଙ୍ଗ୍ ଆମେରିକାରେ ଗାନ୍ଧିଜୀଙ୍କର ଆଦର୍ଶକୁ ଅକ୍ଷରେ ଅକ୍ଷରେ ପାଳନ କରି ଦେଖାଇ ଦେଇଗଲେ ଯେ ଆଧୁନିକ ଯୁଦ୍ଧ ଧ୍ୱାନ୍ତ ପୃଥିବୀରେ ଗାନ୍ଧିଙ୍କର ଆଦର୍ଶ ହିଁ ଏକମାତ୍ର କାମ୍ୟ ଏବଂ ଶାନ୍ତିର ଏକମାତ୍ର ସ୍ୱରୂପ । ବର୍ଣ୍ଣ ବିଦ୍ୱେଷ ଭାବକୁ ଦୂର କରିବା ପାଇଁ ଡକ୍ଟର କିଙ୍ଗଙ୍କ ଉଦ୍ୟମ ଯଥାର୍ଥରେ ପ୍ରଶଂସାର୍ହ । ମାତ୍ର ୩୯ ବର୍ଷ ବୟସରେ ସେ ଗାନ୍ଧିଜୀଙ୍କର ଦର୍ଶନକୁ ଅଧ୍ୟୟନ କରି ସେଥିରେ ଏପରି ଭାବରେ ପ୍ରଭାବିତ ହୋଇ ଯାଇଥିଲେ ଯେ ଗାନ୍ଧୀବାଦକୁ ଜୀବନର ଏକମାତ୍ର ପାଥେୟ କରି ନେଇ ଥିଲେ । ଗାନ୍ଧୀଙ୍କ ପରି ସେ ମଧ୍ୟ ଆତତାୟୀର

ଗୁଳିରେ ପ୍ରାଣତ୍ୟାଗ କରିଥିଲେ । ଗାନ୍ଧୀଙ୍କର ଆଦର୍ଶକୁ ଭାରତ ଆଜି ତିଳ ତିଳ କରି ଆତ୍ମହତ୍ୟା ଦେଉଥିଲା ବେଳେ ପୃଥିବୀର ଅନ୍ୟାନ୍ୟ ଦେଶ ସମୂହ ଗାନ୍ଧିଜୀଙ୍କ ଆଦର୍ଶକୁ ଏକମାତ୍ର ଆଦର୍ଶ ବୋଲି ଗ୍ରହଣ କରିବାକୁ ପ୍ରସ୍ତୁତ ହେଉଛନ୍ତି । ଗାନ୍ଧିଜୀଙ୍କ ଆଦର୍ଶ କପରି ତାଙ୍କର ଜୀବିତାବସ୍ଥାରେ ମଧ୍ୟ କ୍ରମ ବିଲୟମାନ ହେବାକୁ ବସିଥିଲା ତାର ଦୃଷ୍ଟାନ୍ତ ଗାନ୍ଧିଜୀଙ୍କର "Constructiv Programme"ର ୩୬ ପୃଷ୍ଠାରେ ଉଲ୍ଲେଖ ଅଛି । କଂଗ୍ରେସ ରାଜନୈତିକ ସ୍ୱାଧୀନତା ଲାଭକଲା ସତ ମାତ୍ର ଏହା ଅର୍ଥନୈତିକ, ସାମାଜିକ, ନୈତିକ ଓ ଆଧ୍ୟାତ୍ମିକ ସ୍ୱାଧୀନତା ଲାଭ କରିପାରିଲା ନାହିଁ । ଗାନ୍ଧିଜୀ ରାଜନୈତିକ ସ୍ୱାଧୀନତାକୁ ବିଶେଷ ଗୁରୁତ୍ୱ ଦେଉ ନଥିଲେ । ତାଙ୍କ ମତରେ ଆଧ୍ୟାତ୍ମିକ ବିକାଶ ହେଲେ, ସାମାଜିକ, ନୈତିକ ଓ ଆର୍ଥନୈତିକ ସ୍ୱାଧୀନତା ଲାଭ କଲେ ଦେଶ ବା ଜାତି ନିଶ୍ଚୟ ସ୍ୱାଧୀନ ହେବ ଏବଂ ସେହି ସ୍ୱାଧୀନତା ହେବ ଚିରଂଜୀବୀ । ଏଥିପାଇଁ ଗାନ୍ଧିଜୀ ଲେଖିଥିଲେ "The congress had won political freedom but it had yet to win economic, social and moral freedom. These freedoms are harder than the political; if only because they are constructive, less exciting and not spectacular."

ଗାନ୍ଧିଜୀ ପ୍ରକୃତରେ ଥିଲେ ଦଳିତ ଅବହେଳିତ ବାକ୍‌ଶକ୍ତିହୀନ ବ୍ୟକ୍ତିର ଭାଷା । "The voice of men who have no voice." ସେ ଥିଲେ "ଏକ୍‌ଲାଯାତ୍ରୀ" । ତାଙ୍କର ଆତ୍ମ ଶକ୍ତିରେ ବିଶ୍ୱାସ ଥିଲା ଅସୀମ । ସତ୍ୟ ଓ ଅହିଂସା ଥିଲା ତାଙ୍କର ଅନ୍ତରର ବାଣୀ । ସତ୍ୟ ହେଉଛି ତାଙ୍କର ପଥ, ଅହିଂସା ହେଉଛି ଅସ୍ତ୍ର ଏବଂ ଶାନ୍ତି ହେଉଛି ତାଙ୍କର ଅନ୍ତିମ ଲକ୍ଷ୍ୟ । ଆଜି ଆମେ ଲକ୍ଷ୍ୟଚ୍ୟୁତ ହୋଇଛୁ । ଗାନ୍ଧିଜୀଙ୍କ ଆଦର୍ଶକୁ ଭୁଲିଯିବାକୁ ବସିଲୁଣି । ଅବଶ୍ୟ ବିନୋବା ଭାବେ ଓ ଜୟପ୍ରକାଶଙ୍କ ଭଳି ନେତାମାନେ ଆଂଶିକ ସାର୍ଥକତା ଲାଭ କରିଛନ୍ତି; ମାତ୍ର ଗାନ୍ଧିଜୀଙ୍କ ଭଳି ସାର୍ବଭୌମ ସାର୍ଥକତା ଲାଭ କରିପାରି ନାହାନ୍ତି । ଏବେ "ଗାନ୍ଧୀ ସମ୍ପ୍ରଦାୟ" ସୃଷ୍ଟି କରି ଗାନ୍ଧିଜୀଙ୍କୁ ଆବଦ୍ଧ କରିବାର ଚେଷ୍ଟା ହେଉଛି । ଏହାଦ୍ୱାରା ଗାନ୍ଧିଜୀଙ୍କୁ ଉନ୍ମୁକ୍ତ ସୂର୍ଯ୍ୟାଲୋକରେ ହତ୍ୟା କରାଯାଉଛି ବୋଲି ମନେ ହେଉଛି ।

ଶେଷରେ ଏତିକି କୁହାଯାଇପାରେ ଯେ ଯେଉଁ ପବିତ୍ର ଭାରତବର୍ଷରେ ମହାତ୍ମାଗାନ୍ଧୀ ଜନ୍ମହୋଇ କୋଟି କୋଟି ଜନତାର ଦୁଃଖ ଦୂର କରିବାପାଇଁ ପ୍ରାଣ ବିସର୍ଜନ କରିଗଲେ ସେହି ଦେଶରେ ଆଜି ଗାନ୍ଧିଜୀଙ୍କର ସ୍ଥାନ କେଉଁଠି ? ଆଜି ଏ

ଦେଶରେ କେତେଜଣ ସାର୍ଥକ ଗାନ୍ଧିବାଦୀ ଅଛନ୍ତି ? ସେହି ଗାନ୍ଧିବାଦୀମାନଙ୍କର କେତେ ପରିମାଣରେ ଆନ୍ତରିକତା ଅଛି ? ଦରିଦ୍ର ନିପୀଡ଼ିତ ଅବହେଳିତ ଜନତାର ବିକାଶ ପାଇଁ କଣ କରାଯାଇଛି ? ସର୍ବୋଦୟ କେବଳ ଦର୍ଶନ ହୋଇ ରହିଛି ନା ବାସ୍ତବ କ୍ଷେତ୍ରରେ ଏହା ରୂପାୟିତ ହୋଇଛି ? ଭାରତମାତା ତାର ସନ୍ତାନକୁ ଏ ଦେଶରୁ ବୁଦ୍ଧଦେବଙ୍କ ଭଳି ବିଦାୟ ଦେଇ ଦାରିଦ୍ର୍ୟ ନିପୀଡ଼ିତା ହୋଇଛି ନା ନାହିଁ ? ଏଇ କେତୋଟି ପ୍ରଶ୍ନ ସୁଧୀ ସମାଜ ଉପରେ ଛାଡ଼ିଦେଇ ମୁଁ ମୋର ପ୍ରବନ୍ଧକୁ ଶେଷ କରୁଛି ।



# ଓଡ଼ିଶାରେ ବୋଇତ ବନ୍ଦାଣ ଓ ଏହାର ତାତ୍ପର୍ଯ୍ୟ

କୌଣସି ଦେଶର ସମୃଦ୍ଧି ନିର୍ଭର କରେ ତାର ଆର୍ଥିକ ସ୍ୱଚ୍ଛଳତା ଓ ରାଜନୈତିକ ସ୍ଥିରତା ଉପରେ । ଅର୍ଥନୀତି ସୁଦୃଢ଼ ଥିଲେ ଆପେ ଆପେ ଅନ୍ୟାନ୍ୟ ଆନୁଷଙ୍ଗିକ ଅବସ୍ଥାଗୁଡ଼ିକ ଠିକ୍ ହୋଇଯାଏ । ଦେଶର ଅର୍ଥନୀତିକୁ ଠିକଣା ବାଟରେ ନେବାପାଇଁ ଶାସନତନ୍ତ୍ର ଉଦ୍ୟମ କରେ । ଶାସନ ତନ୍ତ୍ର ସ୍ୱେଚ୍ଛାଚାରିତାକୁ ପ୍ରଶ୍ରୟ ଦେଇଦେଲେ ଅର୍ଥନୀତି ଭୁଶୁଡ଼ି ପଡ଼େ ଓ ସେହି କାରଣରୁ ଦେଶର ଜାତୀୟ ଚରିତ୍ର ଅବକ୍ଷୟ ହୋଇଯାଏ । ସଂସ୍କୃତିର ବିକାଶ ହୁଏ ନାହିଁ । ତେଣୁ ଦେଖାଯାଏ ଯେ ଅର୍ଥନୀତି ସବୁକିଛିର ମୂଳ । ଶିକ୍ଷା, ସଂସ୍କୃତି ଧର୍ମ, ସାହିତ୍ୟ ଯାହାକିଛି ମାନବ ଚେତନାର ସର୍ବୋତ୍ତମ ଅଭିବ୍ୟକ୍ତି ତାହାର ମୂଳ ହେଉଛି ଅର୍ଥନୀତି । ଏହି ଅର୍ଥନୀତି ବସ୍ତୁବାଦ ନୁହେଁ । ଏହା ଏକ ପୂର୍ଣ୍ଣ ଚେତନା । ଦେଶକୁ ଓ ଜାତିକୁ ଏହା ଏକ ଶୃଙ୍ଖଳିତ ମାର୍ଗରେ ନେବାକୁ ପ୍ରେରଣା ଦିଏ । ଦେଶ ଅନ୍ତର୍ଗତ ସବୁ ମଣିଷମାନଙ୍କ ଭିତରେ ଏହା ଭରିଦିଏ ଆତ୍ମବିଶ୍ୱାସ ଓ ସ୍ୱାବଲମ୍ବନଶୀଳତା । ରାଷ୍ଟ୍ରଶକ୍ତି ଓ ଜନସାଧାରଣ ହୋଇଯାଆନ୍ତି ପରସ୍ପରର ପରିପୂରକ । ଅର୍ଥନୀତିକୁ ସୁଦୃଢ଼ କରିବାରେ ବାଣିଜ୍ୟ ବ୍ୟବସାୟ ଏକ ଅପରିହାର୍ଯ୍ୟ ଅଙ୍ଗ । ଏହି ବାଣିଜ୍ୟ ନିଜ ଦେଶ ଭିତରେ ହୋଇପାରେ ଓ ବାହାର ଦେଶ ସହିତ ମଧ୍ୟ ହୋଇପାରେ । ନିଜ ଦେଶରେ ଉତ୍ପାଦିତ ପଦାର୍ଥମାନଙ୍କୁ ବାହାର ଦେଶରେ ବିକ୍ରୟ କରି ଅର୍ଥ ରୋଜଗାର ହୋଇଥାଏ । ବ୍ୟକ୍ତିବିଶେଷ ବାଣିଜ୍ୟ କରି ସମୃଦ୍ଧ ହେବା ସଙ୍ଗେ ସଙ୍ଗେ ରାଷ୍ଟ୍ର ମଧ୍ୟ ସମୃଦ୍ଧ ହୁଏ । ଦେଖାଯାଇଛି ଯେ ଯେଉଁ ଦେଶ ବାଣିଜ୍ୟରେ ଦକ୍ଷ ସେହି ଦେଶର ଅର୍ଥନୀତି ସ୍ୱଚ୍ଛଳ ଓ ସେହିଦେଶର କଳା, ସଂସ୍କୃତି, ସାହିତ୍ୟ, ଭାସ୍କର୍ଯ୍ୟ ସବୁକିଛି ମଧ୍ୟ ହୁଏ ଉନ୍ନତ । ଆମ ଓଡ଼ିଶା ଅତୀତରେ ଅର୍ଥନୀତିକୁ ଠିକ୍ ଭାବରେ ଅନୁଶୀଳନ କରିଥିଲା । ବାଣିଜ୍ୟ ଥିଲା ଓଡ଼ିଶାର ଏକ ଜାତୀୟ ପ୍ରବୃତ୍ତି । ଓଡ଼ିଶାର ଲୋକେ ନାନାବିଧ ପଦାର୍ଥ ଉତ୍ପାଦନ କରୁଥିଲେ । ଦେଶର ଚାହିଦା ପୂରଣ କରିବା ସଙ୍ଗେ ବାହାର ଦେଶକୁ ସେହି ପଦାର୍ଥମାନ ନେଇ ବାଣିଜ୍ୟ କରୁଥିଲେ । ଏହା ଫଳରେ ଓଡ଼ିଶା ରାଜନୀତି, ପ୍ରଶାସନ, ସଂସ୍କୃତି, କଳା, ଭାସ୍କର୍ଯ୍ୟ ଓ ଅର୍ଥନୀତି ଦୃଷ୍ଟିରୁ ଉନ୍ନତି ଲାଭ କରିଥିଲା । ଏହି କାରଣରୁ କୁହାଯାଉଥିଲା ଯେ ଉତ୍କଳ ପରି ଦେଶ ସମଗ୍ର ପୃଥିବୀରେ ବିରଳ ଥିଲା 'ଉତ୍କଳସ୍ୟ ସମ ଦେଶ/ଦେଶ ନାସ୍ତି ମହୀତଳେ ।'

ଅତୀତରେ କଳିଙ୍ଗ, କଙ୍ଗୋଦ, କୋଶଳ ଓ ଉତ୍କଳ ପ୍ରତ୍ୟେକ ସ୍ୱତନ୍ତ୍ର ଥିଲେ । ଓଡ଼ିଶା ନାମ ନ ଥିଲା । କାଳକ୍ରମେ କଳିଙ୍ଗ, କଙ୍ଗୋଦ, କୋଶଳ ଓ ଉତ୍କଳ ମିଶି ସକଳ ଉତ୍କଳ ହେଲା । ସୋମବଂଶ ଶାସନ କାଳରେ ଉତ୍କଳ ନାମ ଧାରଣ କରି ଗଙ୍ଗବଂଶ ଓ ସୂର୍ଯ୍ୟବଂଶ ଶାସନ ବେଳକୁ ଏହା ଓଡ଼ିଶା ନାମ ଧାରଣ କଲା । ପଞ୍ଚଦଶ ଶତାବ୍ଦୀବେଳକୁ ବୃହତ୍ତର ଓଡ଼ିଶା ପ୍ରତିଷ୍ଠା ଲାଭ କଲା । ଏ ସମୟକୁ ଓଡ଼ିଶାର କଳା ଓ ସ୍ଥାପତ୍ୟ ଏକ ଚରମ ସୀମାରେ ପହଞ୍ଚି ସାରିଥିଲା । ଗୋଟିଏ କଥା ଲକ୍ଷ୍ୟ କରାଯାଏ ଯେ ପ୍ରାୟ ଷଷ୍ଠ/ସପ୍ତମ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶାର ଇତିହାସ ବଡ଼ ଅସ୍ପଷ୍ଟ । ଧାରାବାହିକ ଭାବରେ ପୂର୍ଣ୍ଣାଙ୍ଗ ଇତିହାସ ମିଳେ ନାହିଁ । ଶୈଳୋଦ୍‌ଭବ, ଭୌମକର, ସୋମ, ଗଙ୍ଗ, ସୂର୍ଯ୍ୟ ଓ ଭୋଇ ବଂଶ ଦେଇ ଆମେ ଓଡ଼ିଶାର ଏକ କ୍ରମ ପ୍ରବାହୀ ଇତିହାସ ଦେଖୁ । ୧୫୬୮ ଖ୍ରୀ: ଅ:ରେ ମୁକୁନ୍ଦଦେବଙ୍କ ମୃତ୍ୟୁ ପରେ ଓଡ଼ିଶାର ସ୍ୱାଧୀନତା ଲୋପ ପାଇଗଲା । ବଙ୍ଗର ଆଫଗାନ ମୁସଲମାନ ଓଡ଼ିଶାକୁ କିଛି କାଳ ଶାସନ କଲେ । ତତ୍ପରେ ଆକବରଙ୍କ ସମୟରେ ଓଡ଼ିଶା ହୋଇଗଲା ମୋଗଲ ଶାସନାଧୀନ । ସମଗ୍ର ଓଡ଼ିଶାର ଗଜପତି-କେନ୍ଦ୍ର ଭୂଷୁଡ଼ି ପଡ଼ିଲା ଓ କିଛି କାଳ ବଙ୍ଗ ହେଲା ଓଡ଼ିଶା-ଶାସନର କେନ୍ଦ୍ର । ତତ୍‌ପରେ ମୋଗଲ ଶାସନ ସମୟରୁ ଦିଲ୍ଲୀ ହୋଇଗଲା ଓଡ଼ିଶା-ଶାସନ କେନ୍ଦ୍ର । ମୋଗଲମାନଙ୍କ ପରେ ମରହଟ୍ଟାମାନେ ଓଡ଼ିଶାକୁ ଶାସନ କଲେ ଓ ଶେଷରେ ୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶାକୁ ଅଧିକାର କରିନେଲେ । ମୋଟାମୋଟି ଭାବରେ ୧୫୬୮ ରୁ ୧୯୪୭ ମସିହା ପର୍ଯ୍ୟନ୍ତ ପ୍ରାୟ ଚାରିଶହ ବର୍ଷ ଧରି ଓଡ଼ିଶା ବିଭିନ୍ନ ବହିରାଗତ ଶାସନ ଅଧୀନରେ ରହିଲା । ଗଜପତି-କେନ୍ଦ୍ରଟି ଭୂଷୁଡ଼ି ପଡ଼ିବାରୁ ଓଡ଼ିଶାର ବିଭିନ୍ନ ରାଜ୍ୟର ରାଜାମାନେ ନିଜ ନିଜକୁ ସ୍ୱାଧୀନ ମନେ କଲେ । ଓଡ଼ିଶାର ଜାତୀୟ ସଂହତି ଲୋପ ପାଇଲା । ଏକ ଅବକ୍ଷୟୀ ସାମନ୍ତବାଦ ମୁଣ୍ଡଟେକି ଉଠିଲା । ଦିଲ୍ଲୀ ଦରବାରରେ ଓଡ଼ିଶାର ରାଜମାନେ କର ଦେଇ ନିଜ ନିଜର କ୍ଷୁଦ୍ର ପରିବେଶରେ ବିଳାସୀ ହୋଇ ରହିଲେ । ତେଣୁ ଯେଉଁ ନୌବାଣିଜ୍ୟ ଶୈଳୋଦ୍‌ଭବ ଶାସନ କାଳରୁ ସୂର୍ଯ୍ୟବଂଶ ଓ ଚାଲୁକ୍ୟ ବଂଶ ଶେଷ ପର୍ଯ୍ୟନ୍ତ ଦୀର୍ଘ ଏକ ହଜାର ବର୍ଷରୁ ଊର୍ଦ୍ଧ୍ୱ କାଳ ଧରି ଅଖଣ୍ଡ ପ୍ରଭାବ ବିସ୍ତାର କରି ଆସିଥିଲା ତାହା କ୍ରମେ ହ୍ରାସ ପାଇଗଲା । ଯାହା କିଛି ଥିଲା ତାହା ଇଂରେଜ ଶାସନ କାଳରେ ଊନବିଂଶ ଶତାବ୍ଦୀର ମଧ୍ୟ ଭାଗ ପରେ ପରେ ସମ୍ପୂର୍ଣ୍ଣ ବିଲୟ ହୋଇଗଲା । ନା ରହିଲା ବୋଇତ, ନା ଜାହାଜାତି ବ୍ୟବହାୟୁ, ନା ଉତ୍କଳର ଲକ୍ଷ୍ମୀ ! ଫକୀରମୋହନଙ୍କ 'ଆତ୍ମଜୀବନୀ', କମଳାପ୍ରସାଦ ଚୌଧୁରୀ ଓ 'କାଳିକା ପ୍ରସାଦ ଚୌଧୁରୀ' ଗଳ୍ପରୁ ଓଡ଼ିଶାର ନୌବାଣିଜ୍ୟର କରୁଣ ଅବସାନର ପରିଚୟ ଆମେ ପାଇଥାଉ ।

ଇତିହାସରୁ ପ୍ରମାଣ ମିଳେ ଯେ ଅଶୋକ ଯେତେବେଳେ କଳିଙ୍ଗ ବିଜୟ କଲେ (୨୬୧ ଖ୍ରୀ. ପୂ.) ସେ ସମୟକୁ କଳିଙ୍ଗ ନୌବାଣିଜ୍ୟରେ ସମୃଦ୍ଧି ଲାଭ କରି ସାରିଥିଲା । ସମସ୍ତ ଭାରତବର୍ଷରେ କଳିଙ୍ଗ ହିଁ ସମୁଦ୍ର ପଥରେ ବିଭିନ୍ନ ଦେଶ ଓ ଦ୍ୱୀପମାନଙ୍କ ସହିତ ନୌବାଣିଜ୍ୟ ସମ୍ପର୍କ ସ୍ଥାପନ କରିଥିଲା । ଖାରବେଳଙ୍କ ସମୟରେ ମଗଧ ବିରୋଧରେ ଦୁଇ ଦୁଇଥର ଅଭିଯାନ କରାଯାଇଥିଲା ଓ ଯେଉଁ ମଗଧ ଆଫଗାନିସ୍ଥାନ, ବେଲୁଚିସ୍ଥାନ, କାଶ୍ମୀର ଓ ନେପାଳରେ ଆଧିପତ୍ୟ ବିସ୍ତାର କରିଥିଲା, ତାହାକୁ ପରାସ୍ତ କରିଥିଲା । ଏଥିରୁ ଜଣାଯାଏ ଯେ କଳିଙ୍ଗ ସାମରିକ ଶକ୍ତି ଓ ଧନଧାନ୍ୟରେ ବଳିଷ୍ଠ ଥିଲା । ବୁଦ୍ଧଙ୍କ ସମୟରୁ ଭାରତ ଓ ଏସିଆ ମହାଦେଶର ବିଭିନ୍ନ ରାଷ୍ଟ୍ର ତଥା ଦ୍ୱୀପ ସହିତ ଯେଉଁ ବାଣିଜ୍ୟିକ ସମ୍ପର୍କ ଗଢ଼ି ଉଠିଥିଲା ତାହା କଳିଙ୍ଗ ଦ୍ୱାରା ହିଁ ବିଶେଷ ଭାବରେ ସମ୍ଭବ ହୋଇଥିଲା । କଳିଙ୍ଗର ଦୁଇଜଣ ବଣିକ ବୁଦ୍ଧଗୟାଠାରେ ବୁଦ୍ଧଦେବଙ୍କୁ ସାକ୍ଷାତ କରିଥିବା ଓ ବୁଦ୍ଧଙ୍କଠାରୁ ଉପଦେଶ ଗ୍ରହଣ କରିଥିବା ବିବରଣୀ ଇତିହାସରୁ ମିଳିଥାଏ । ବୌଦ୍ଧ ଜାତକ କାହାଣୀ ଓ ଚାଣକ୍ୟଙ୍କ ଅର୍ଥଶାସ୍ତ୍ରରୁ ଭାରତର ସାମୁଦ୍ରିକ ନୌବାଣିଜ୍ୟର ପରିଚୟ ମିଳେ । କଳିଙ୍ଗର ଲୋକେ ନୌବାଣିଜ୍ୟରେ ସମଗ୍ର ଭାରତବର୍ଷରେ ସର୍ବପ୍ରାଚୀନ ଜାତି । ସିଂହଳ, ବର୍ମା, ମାଳୟ ଦ୍ୱୀପପୁଞ୍ଜ, ଶ୍ୟାମ, ଜାଭା, କାମ୍ବୁଜ, ସୁମାତ୍ରା, ବୋର୍ଣ୍ଣିଓ, ବାଲି ଇତ୍ୟାଦି ବିଭିନ୍ନ ଦ୍ୱୀପ ଓ ରାଷ୍ଟ୍ରକୁ ଯାଇ କଳିଙ୍ଗର ଲୋକେ ବାଣିଜ୍ୟ କରୁଥିଲେ । କଳିଙ୍ଗରେ ଲୋକେ ବର୍ମାରେ ବାଣିଜ୍ୟ କରୁ କରୁ କାଳକ୍ରମେ ସେଠାରେ ବସବାସ କଲେ । କଳିଙ୍ଗର ସଂସ୍କୃତିକୁ ସେଠାରେ ପ୍ରଚାର କଲେ । ଏବେ ମଧ୍ୟ ସେଠାରେ କଳିଙ୍ଗରାଷ୍ଟ୍ର ବିଦ୍ୟମାନ । ବ୍ରହ୍ମଦେଶର ଆଚାର, ବିଚାର, ଧର୍ମ ସହିତ କଳିଙ୍ଗର ଆଚାର, ବିଚାର, ଧର୍ମ ଓ ସଂସ୍କୃତି ମିଶି ଏକ ନୂତନ ପରମ୍ପରା ସୃଷ୍ଟି କରିଛି । କଳିଙ୍ଗ ଉପକୂଳରେ ଶ୍ରୀକ୍ଷେତ୍ର ପୁରୀ ଏକ ପବିତ୍ର ସ୍ଥାନ । ଏହା ଚୀନ ଧର୍ମଯାତ୍ରୀଙ୍କ ଉକ୍ତିରେ ସି-ଲି-ଚ-ତା-ଲୋ (si li-cha-ta-lo) ହୋଇଯାଇଅଛି । ପେଗୁର ପ୍ରାଚୀନ ନାମ ଉଷା (ussa) । ଏହା 'ଉତ୍ର' ଅଥବା 'ଓଡ୍ରଶା' ଶବ୍ଦରୁ ହୋଇଥିବା ସମ୍ଭବ । ବର୍ମାର ଲୋକଙ୍କୁ ତେଲିଙ୍ଗ କୁହାଯାଏ । ଏହା ହିଁ କଳିଙ୍ଗ ଶବ୍ଦରୁ ହୋଇଥିବା ମଧ୍ୟ ବିଶ୍ୱାସ କରାଯାଏ । ବର୍ମାର ସାଂସ୍କୃତିକ ପରମ୍ପରାକୁ ବିଚାର କଲେ ଜଣାଯାଏ ତାହା କଳିଙ୍ଗର ସଂସ୍କୃତି ସହିତ ନିବିଡ଼ ଭାବରେ ସମ୍ପୃକ୍ତ । ଶୈଳେନ୍ଦ୍ରଙ୍କ ଶାସନ କାଳରେ ଦକ୍ଷିଣ-ପୂର୍ବ ଏସିଆର ଦ୍ୱୀପପୁଞ୍ଜ ସହିତ ଘନିଷ୍ଠ ସମ୍ପର୍କ ସ୍ଥାପିତ ହୋଇଥିଲା । ଏହି ସମୟରେ (୮ମ ଶତାବ୍ଦୀ) ମାଳୟ ଦ୍ୱୀପକୁ ସୁବର୍ଣ୍ଣ ଦ୍ୱୀପ କୁହାଯାଉଥିଲା । ସପ୍ତମ ଶତାବ୍ଦୀରେ ଶୈଳୋଦ୍ଭବ ବଂଶର ରାଜତ୍ୱ ସମୟରେ ମାଳେସିଆ ମଧ୍ୟ କଳିଙ୍ଗ ନାମରେ ଅଭିହିତ ହେଲା । ଚୀନ୍‌ର ଲୋକେ ଏହାକୁ ହୋଲିଙ୍ଗ୍ କହୁଥିଲେ । ଏହା କଳିଙ୍ଗ ଶବ୍ଦର ଅପଭ୍ରଂଶ । ପୁନଶ୍ଚ

ଜାଙ୍କ ଓ ମାଲୟକୁ 'କ୍ଳିଙ୍ଗ୍' ବୁଝାଯାଏ । ଏହା ମଧ୍ୟ ସେହି କଳିଙ୍ଗର ନାମାନ୍ତର । ଶୈଳେନ୍ଦ୍ରଙ୍କ ରାଜତ୍ୱ ସମୟରେ ଚୀନ ସହିତ ଓଡ଼ିଶାର ନିବିଡ଼ ସମ୍ପର୍କ ରହିଥିଲା । ଗୋଟିଏ କଥା ଦେଖାଯାଏ ଯେ କଳିଙ୍ଗର ଯେଉଁ ଯେଉଁ ଦେଶ ଓ ଦ୍ୱୀପପୁଞ୍ଜ ସହିତ ବାଣିଜ୍ୟିକ ସମ୍ପର୍କ ଗଢ଼ି ଉଠିଥିଲା ସେଠାରେ କଳିଙ୍ଗର ସାମାଜିକ ଓ ସାଂସ୍କୃତିକ ଭାବଧାରାର ପ୍ରଭାବ ବହୁ ଭାବରେ ପରିଲକ୍ଷିତ ହେଲା । କଳିଙ୍ଗରେ ଲୋକେ ବାଣିଜ୍ୟ କରୁଥିଲେ ମାତ୍ର କୌଣସି ଦ୍ୱୀପକୁ ଅଧିକାର କରି ନ ଥିଲେ । ଏକ ଉଦାରମୈତ୍ରୀ ଧର୍ମରେ ସମସ୍ତଙ୍କୁ ଆପଣାର କରି ନେଇଥିଲେ ଓ ଏହାଦ୍ୱାରା ଏକ ନୂତନ କଳିଙ୍ଗ-ସଂସ୍କୃତି ବିସ୍ତାର ଲାଭ କରିପାରିଥିଲେ ।

•

କଳିଙ୍ଗରୁ ସାଧବମାନେ ବୋଇତରେ ନାନାବିଧ ପଦାର୍ଥ ନେଇ ଭାଦ୍ରବ ମାସରେ (ଅଗଷ୍ଟ/ସେପ୍‌ଟେମ୍ବର) ସମୁଦ୍ର ପଥରେ ନାନା ଦ୍ୱୀପକୁ ଯାଉଥିଲେ । କାର୍ତ୍ତିକ ମାସ (ଅକ୍ଟୋବର/ନଭେମ୍ବର) ବେଳକୁ ଫେରି ଆସୁଥିଲେ । ଏବେ କାର୍ତ୍ତିକ ପୂର୍ଣ୍ଣିମା ଦିନ ଓଡ଼ିଶାର ଲୋକେ ପ୍ରତ୍ୟୁଷରେ ନଦୀରେ ସ୍ନାନ କରି କଦଳୀ ପଟୁଆରେ ଡଙ୍ଗା କରି ଭସାନ୍ତି ଓ କହନ୍ତି—'ଆ କା ମା ବଇ / ପାନଗୁଆ ଦେଇ / ପାନଗୁଆ ତୋର/ବର୍ଷକ ଧର୍ମ ମୋର' । ଭାଦ୍ରବ ମାସରେ ଖୁଦୁରୁକୁଣୀ ଓଷା ମଧ୍ୟ ଅତୀତ ଓଡ଼ିଶାର ନୌବାଣିଜ୍ୟର ପରିଚୟ ଦିଏ । 'ତଣା ମଙ୍ଗଳବାର ଓଷା' କଥା ମଧ୍ୟ ନୌବାଣିଜ୍ୟର ଅନ୍ୟ ଏକ ଚିତ୍ର ବହନ କରିଥାଏ । ଓଡ଼ିଶାରେ ବୋଇତାଳୁ ବା ବୋଇତି କଖାରୁ ପ୍ରଚଳନରୁ ଜଣାଯାଏ ଯେ ଏହା କୌଣସି ଦ୍ୱୀପରୁ ସାଧବ-ମାନଙ୍କ ବୋଇତରେ ଆସିଥିଲା । ନବମ ଓ ଦଶମ ଶତାବ୍ଦୀରେ ଆରବ ଓ ପାର୍ଶୀ ଲେଖକମାନେ ମଧ୍ୟ ଓଡ଼ିଶାର ନୌବାଣିଜ୍ୟ କଥା ଉଲ୍ଲେଖ କରିଅଛନ୍ତି । ଖୁରଦାଧ ବିହ୍, ଇବନ ରୁସତା ଓ ଅନ୍ୟମାନେ ମଧ୍ୟ ଓଡ଼ିଶାର ଭୌମ ରାଜାଙ୍କ ସମ୍ପର୍କରେ ଲେଖିଅଛନ୍ତି । ଓଡ଼ିଶାରୁ ସୂକ୍ଷ୍ମ ସୂତାବସ୍ତ୍ର, ବିଭିନ୍ନ ତାରକସି ବସ୍ତ୍ର, ମାଟିରେ ନିର୍ମିତ ବିଭିନ୍ନ ପଦାର୍ଥ ଇତ୍ୟାଦି ବାଣିଜ୍ୟ ପାଇଁ ବୋଇତରେ ନିଆଯାଉଥିଲା । ତୃତୀୟ ଶତାବ୍ଦୀରେ ସିଂହଳର 'ଧାତୁବଂଶ' ଗ୍ରନ୍ଥରୁ ଜଣାଯାଏ ଯେ ଉଜ୍ଜୟିନୀର ରାଜକୁମାର ଦନ୍ତକୁମାର ଓଡ଼ିଶାର ରାଜା ଗୁହଶିବଙ୍କ କନ୍ୟାକୁ ବିବାହ କରିଥିଲେ । ସେ ବୁଦ୍ଧଙ୍କର ଗୋଟିଏ ଦାନ୍ତକୁ ଉପହାର ସ୍ୱରୂପ ପାଇଥିଲେ । ଏହାକୁ ସେ ସିଂହଳକୁ ନେଇଥିଲେ । ସେଠାରେ ଏକ ସ୍ତୁପରେ ଏହା ପୂଜା ହେଉଅଛି । ୭୯୫ ଖ୍ରୀ. ଅ.ରେ ଚୀନ ସମ୍ରାଟ ତେ-ସଙ୍ଗ (Te-tsong) ଓଡ଼ିଆ ରାଜାଙ୍କ ଠାରୁ ଗଣ୍ଡବ୍ୟୂହ ନାମକ ଏକ ବୌଦ୍ଧ ଗ୍ରନ୍ଥ ଉପହାର ସ୍ୱରୂପ ପାଇଥିଲେ । ଏହିପରି ଦେଖିବାକୁ ଗଲେ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରୁ ଅଷ୍ଟମ/ନବମ ଶତାବ୍ଦୀ ପର୍ଯ୍ୟନ୍ତ କଳିଙ୍ଗ/ଉତ୍କଳ

କଙ୍ଗୋଦର ଲୋକେ ବିଭିନ୍ନ ଦ୍ୱୀପପୁଞ୍ଜକୁ ଯାଇ କେବଳ ବାଣିଜ୍ୟ କାରବାର କରୁ ନ ଥିଲେ, ଏ ଦେଶର ଧର୍ମ/ସଂସ୍କୃତି/କଳାକୁ ମଧ୍ୟ ସେସବୁ ଅଞ୍ଚଳରେ ପ୍ରତିଷ୍ଠା ଦେଉଥିଲେ । ଫଳରେ ବୃହତ୍ତର ଓଡ଼ିଶାର ଏକ ଔପନିବେଶିକ ସଂସ୍କୃତି ସେସବୁ ଅଞ୍ଚଳରେ ଗଢ଼ି ଉଠିଥିଲା । ଓଡ଼ିଶାର ସଂସ୍କୃତି ମୈତ୍ରୀଧର୍ମ ଅନୁପ୍ରେରିତ ହୋଇ-ଥିବାରୁ କୌଣସି ଅଞ୍ଚଳରେ ଓଡ଼ିଶାର ଲୋକେ କ୍ଷମତା ବିସ୍ତାର କରି ଶାସନ କରୁ ନ ଥିଲେ । ଓଡ଼ିଶାର ବିଶ୍ୱାସ ମାନବ-ସଂସ୍କୃତିରେ । ସବୁ ମଣିଷଙ୍କୁ ଆପଣାର ମନେ କରି ସେମାନଙ୍କ ସଂସ୍କୃତି ସହିତ ନିଜର ସଂସ୍କୃତିକୁ ମିଶାଇ ଦେଉଥିଲେ । ଏହାଦ୍ୱାରା ଓଡ଼ିଶାର ଭୌଗୋଳିକ ସୀମାକୁ ଅତିକ୍ରମ କରି ଓଡ଼ିଶାର ସଂସ୍କୃତି ବିଶ୍ୱ ପରିକ୍ରମା କରିଯାଇଛି । ୧୫୬୮ ଖ୍ରୀଷ୍ଟାବ୍ଦ ପରେ ପରେ ଓଡ଼ିଶାର ଭାଗ୍ୟ ବିପର୍ଯ୍ୟୟ ଘଟିଯାଇଛି । ସ୍ୱାଧୀନତା ଲୋପ ପାଇଛି । ଐଶ୍ୱର୍ଯ୍ୟ ହ୍ରାସ ପାଇଛି । ସଂକୀର୍ଣ୍ଣତା ଜାତୀୟ ଜୀବନକୁ ପକ୍ଷାଘାତ ରୋଗଗ୍ରସ୍ତ କରିଦେଇଛି । ଯେଉଁ ପ୍ରସାରିତ ଦୃଷ୍ଟିଭଙ୍ଗୀ ଦେଇ ଓଡ଼ିଆ ସଂସ୍କୃତିର ଉନ୍ମେଷ ଘଟିଥିଲା ତାହା ଆଉ ନାହିଁ ।

ବୋଇତ—ଓଡ଼ିଆ ଜାତିର ଥିଲା ଆତ୍ମା । ସେହି ଆତ୍ମା ସମଗ୍ର ଓଡ଼ିଆ ଜାତିକୁ ଐକ୍ୟ ମନ୍ତ୍ରରେ ଉଦ୍‌ବୁଦ୍ଧ କରିଥିଲା । ଆଜି ସେହି ଆତ୍ମା ନାହିଁ; ଅଛି ସ୍ମୃତି । ଏତିକି ହିଁ ଆଜିର ସାନ୍ତ୍ୱନା । ବୋଇତ ପାଇଁ ହିଁ ଓଡ଼ିଶାର ପ୍ରତ୍ୟେକ ନଦୀମୁହାଣ ଏକଦା ଘନ ଜନବସତିରେ ପରିପୂର୍ଣ୍ଣ ହୋଇଥିଲା । ପ୍ରତ୍ୟେକ ନଦୀ ମୁହାଣ ପାଖରେ ବା ନଦୀ ଉପତ୍ୟକାରେ ଗଢ଼ି ଉଠିଥିଲା ଶାକ୍ତ ମନ୍ଦିର । ବାଣିଜ୍ୟ ଓ ଧର୍ମ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ହୋଇ ରହିଥିଲା । ଆଜି ମଧ୍ୟ ଅତୀତର ଚେଲିତାଲୋ, ତାମ୍ରଲିପ୍ତି ବନ୍ଦର ମନେପକାଇ ଦିଏ ବୋଇତ-ସଂସ୍କୃତିକୁ । ଆଜି ମଧ୍ୟ ସୁବର୍ଣ୍ଣରେଖା, ବଳଙ୍ଗ, ବୈତରଣୀ, ବ୍ରାହ୍ମଣୀ, ମହାନଦୀ, ଚନ୍ଦ୍ରପ୍ରଭା ଋଷିକୂଲ୍ୟା ଇତ୍ୟାଦି ନଦୀ ଉପତ୍ୟକା ସେଦିନର ବୋଇତ-ବିଭବକୁ ମନ ଭିତରେ ଜଗାଇ ଦିଏ । ଆଜି ମଧ୍ୟ ଚିଲିକା ଅତୀତର ସମୃଦ୍ଧ ବାଣିଜ୍ୟର ଇତିହାସ ସୂଚାଇ ଦିଏ । ସାରଳା ଦାସଙ୍କ ମହାଭାରତ, ବଳରାମ ଦାସଙ୍କ ଦାଣ୍ଡି ରାମାୟଣ, ଅଚ୍ୟୁତାନନ୍ଦ ଦାସଙ୍କ କୈବର୍ତ୍ତ ଗୀତା, ଉପେନ୍ଦ୍ରଭଞ୍ଜଙ୍କ ଲାବଣ୍ୟବତୀ, ଦୀନକୃଷ୍ଣ ଦାସଙ୍କ ରସକଲ୍ଲୋଳ ପ୍ରଭୃତି ଗ୍ରନ୍ଥଗୁଡ଼ିକ ସେଦିନର ବୋଇତ-ସଂସ୍କୃତି ସମ୍ପର୍କରେ ସୂଚନା ଦେଇଥାଆନ୍ତି । ଆଧୁନିକ ଯୁଗରେ ମଧ୍ୟ ଉତ୍କଳର ନୌବାଣିଜ୍ୟ ଓ ବୋଇତ-ସଭ୍ୟତାକୁ ନେଇ ଅନେକ ଗଳ୍ପ, ଉପନ୍ୟାସ ନାଟକ ଓ କବିତା ରଚିତ ହୋଇଛି । ଏସବୁ ଅତୀତର ଅମୂଲ୍ୟ ସ୍ମୃତିକୁ ବହନ କରି ରହିଛନ୍ତି । ଅଥଚ ଆଧୁନିକ ଓଡ଼ିଶାରେ ବୋଇତ-ସଂସ୍କୃତିର ପୁନଃପ୍ରତିଷ୍ଠା ପାଇଁ ଉଦ୍ୟମ ହେଉନାହିଁ ? ଏହାର ଅର୍ଥ ନୁହେଁ ଯେ ପୁଣିଥରେ ବୋଇତ ତିଆରି କରାଯାଇ ବାଣିଜ୍ୟ କରାଯିବ । ଏହାର ଅର୍ଥ ଓଡ଼ିଶାର ଆର୍ଥନୀତିକ

ସ୍ୱଚ୍ଛଳତା ପାଇଁ ବାଣିଜ୍ୟିକ ମନୋଭାବ ବୃଦ୍ଧି କରାଯିବା ଓ ନୂତନ ବୈଜ୍ଞାନିକ ପଦ୍ଧତିରେ ଅର୍ଥନୀତିର ବିକାଶ କରିବା । ଜାତୀୟ ଐକ୍ୟ, ସଂସ୍କୃତି ଓ ସ୍ୱାଭିମାନ ପ୍ରତିଷ୍ଠା କରି ଓଡ଼ିଶାର ସର୍ବାଙ୍ଗୀନ ବିକାଶ କରିବା ଏହି ବୋଇତ-ବନ୍ଦାଣ-ଉତ୍ସବର ଯେ ମହାନ୍ ଲକ୍ଷ୍ୟ; ଏହାକୁ ଉପଲବ୍ଧି କରିବା ଏବଂ ସେହି ଅନୁସାରେ କାର୍ଯ୍ୟ କରିବାହିଁ ଆଜି ପ୍ରତ୍ୟେକ ଓଡ଼ିଶାବାସୀଙ୍କର ଧ୍ୟେୟ ହେବା ଉଚିତ ।



## —ଏଇ ଲେଖକଙ୍କ ପ୍ରକାଶିତ ପୁସ୍ତକ—

ଓଡ଼ିଆ କ୍ଷୁଦ୍ରଗଳ୍ପର ଇତିହାସ (୧ମ ଖଣ୍ଡ)
ଓଡ଼ିଆ କ୍ଷୁଦ୍ରଗଳ୍ପର ଇତିହାସ (୨ୟ ଖଣ୍ଡ)
ଓଡ଼ିଆ ପ୍ରାଚୀନ ସାହିତ୍ୟ
ଦୃଷ୍ଟି ଓ ଦିଗନ୍ତ
ସମାଲୋଚନା : ପାଞ୍ଚଜନ୍ୟ
ଓଡ଼ିଆ ଗଳ୍ପ : ଗତି ଓ ପ୍ରକୃତି
ଗଣକବି ସାହିତ୍ୟ ସମୀକ୍ଷା
ସମାଲୋଚନା : ସ୍ୱର ଓ ସ୍ୱାକ୍ଷର
ସାହିତ୍ୟ-ସମ୍ବାଦ
ଓଡ଼ିଆ ସାହିତ୍ୟରେ ରାଧାନାଥ ଓ ସତ୍ୟବାଦୀ ଯୁଗ
ଓଡ଼ିଆ ସାହିତ୍ୟର ଇତିହାସ (୧ମ ଖଣ୍ଡ)
ଓଡ଼ିଆ କାବ୍ୟ କବିତାର ଧାରା ଓ ଧରା (୧ମ ଖଣ୍ଡ)
ସମାଲୋଚନା : ମଧୁପର୍କ
କଳା ସାହିତ୍ୟ ଓ ସଂସ୍କୃତି
ଏକା ଏକା ନକ୍ଷତ୍ର (ଗଳ୍ପ)
ଶେଷ ଶୃଙ୍ଗାର (ଗଳ୍ପ)
ସମୟର ଲିପି (କବିତା)
ଆଜ ଦେଖିଲ୍ଲରେ (ରମ୍ୟରଚନା)
ନାଗର ମୁହଁ (ରମ୍ୟରଚନା)
ଇଚ୍ଛନ୍ତି ଦାମ୍ଭିକେ (ରମ୍ୟରଚନା)

* * *